# କାଳିଦାସ ଗ୍ରନ୍ଥାବଳୀ

ତୃତୀୟ ଭାଗ

ଅନୁବାଦ ଓ ସଂପାଦନା :

ଡକ୍ଟର ଧନେଶ୍ୱର ମହାପାତ୍ର

# କାଳିଦାସ ଗ୍ରନ୍ଥାବଳୀ

## ତୃତୀୟ ଭାଗ

# ଅଭିଜ୍ଞାନଶାକୁନ୍ତଳମ୍

ଅନୁବାଦ ଓ ସଂପାଦନା :

**ଅଧ୍ୟାପକ ଡକ୍ଟର ଧନେଶ୍ୱର ମହାପାତ୍ର**

ଏମ୍. ଏ. ( ଓଡ଼ିଆ ), ଏମ୍. ଏ. ( ସଂସ୍କୃତ ), ପିଏଚ୍. ଡି. ( ଭାଷାତତ୍ତ୍ୱ )

ସାହିତ୍ୟାଗ୍ରର୍ଯ୍ୟ, ବି. ଇଡ଼ି. , କୋବିଦ ॥

ପ୍ରକାଶିକା

**ଶ୍ରୀମତୀ ଜୀବନକୁମାରୀ ମହାପାତ୍ର**

କଲ୍ୟାଣ ନଗର, କଟକ—୩

---

Published with the financial assistance from the Ministry of Education and Social welfare, Government of India.

# KALIDASA GRANTHAVALI

## PART-III

# ABHIJNANA SHAKUNTALAM

*Translator and Editor*

**Dr. Dhaneswar Mahapatra**

M. A. ( Oriya ), M. A. ( Sanskrit )

Ph. D. ( Linguistics ), Sahityacharya, B. Ed., Kovid

*Publisher*

**Srimati Jivan Kumari Mahapatra**

Kalyan nagar, Cuttack-3

ORISSA

1983

*Printed at :*

*Kalyan Press,*

Kalyan nagar, Cuttack-3

ORISSA

*Price :* **Rupees** 40 00 **Only**

ମୋର ପ୍ରତିକୂଳ ହେଲେ ଯେତେ ମୋର ସାଥୀ
ରଚିଲେ ଅବଜ୍ଞା ନିନ୍ଦା ଅପମାନ ଯେତେ,
ଦେଲୁ ମା ସାନ୍ତ୍ୱନା ମୋତେ ସାହସ ଶକତି
ଗୋ ସୁରଭାରତୀ ତୋର ଚରଣେ ନମସ୍ତେ ।

ଉଦରର ଆର୍ତ୍ତନାଦ କୁଟୁମ୍ବଙ୍କ ଦୁଃଖ
ବ୍ୟାଧିର ବେଦନା ବ୍ୟଥା ହାହାକାର ଯେତେ,
ସବୁର ଭିତରେ ମା ଗୋ ଦେଖିଛି ତୋ ମୁଖ
ଗୋ ସୁରଭାରତୀ ତୋର ଚରଣେ ନମସ୍ତେ ।

ନାହିଁ ମୋ ଶୋଚନା ନାହିଁ କାମନା ବାସନା
ଗୀତାଧର୍ମ ଅନୁପମ ଶିଖାଇଛୁ ମୋତେ,
ଗାଉଛି ମୁଁ ଗାଉଥିବି ତୋହରି ବନ୍ଦନା
ଗୋ ସୁରଭାରତୀ ତୋର ଚରଣେ ନମସ୍ତେ ।



# ପାତ୍ରପାତ୍ରୀଗଣ

| | |
|---|---|
| ସୂତ୍ରଧାର | ନାଟକ ପରିଚାଳକ |
| ଦୁଷ୍ୟନ୍ତ | ନାୟକ |
| ମାଧବ୍ୟ | ବିଦୂଷକ |
| ସର୍ବଦମନ | ଶକୁନ୍ତଳାଙ୍କ ଶିଶୁପୁତ୍ର |
| ସୋମରାତ | ପୁରୋହିତ |
| ଶ୍ୟାଳ | ନଗରପାଳ |
| ସୂଚକ, ଜାନୁକ | ରକ୍ଷୀଦ୍ୱୟ |
| ରୈବତକ, କରଭକ, କଞ୍ଚୁକୀ | ଦ୍ୱାରପାଳ, ଭୃତ୍ୟ |
| ବୈତାଳିକଦ୍ୱୟ | ସ୍ତୁତିପାଠକ |
| କଣ୍ୱ | ଶକୁନ୍ତଳାଙ୍କ ପାଳକ ପିତା |
| ବୈଖାନସ, ଶାର୍ଙ୍ଗରବ, ଶାରଦ୍ୱତ, ହାରୀତ, ଗୌତମ | କଣ୍ୱାଶ୍ରମବାସୀଗଣ |
| ମାତଳି | ଇନ୍ଦ୍ରଙ୍କ ସାରଥି |
| କଶ୍ୟପ | ଇନ୍ଦ୍ରଙ୍କ ପିତା, ମହର୍ଷି |
| ନଟୀ | ନାଟକପରିଚାଳନାରେ ସାହାଯ୍ୟକାରିଣୀ |
| ଶକୁନ୍ତଳା | ନାୟିକା |
| ଅନସୂୟା, ପ୍ରିୟମ୍ବଦା | ଶକୁନ୍ତଳାଙ୍କ ସଖୀଦ୍ୱୟ |
| ଗୌତମୀ | କଣ୍ୱାଶ୍ରମବାସିନୀ-ବୃଦ୍ଧା ତପସ୍ୱିନୀ |
| ଚତୁରିକା, ପରଭୃତିକା, ମଧୁକରିକା, ପ୍ରତିହାରୀ, ଯବନୀଗଣ | ରାଜାଙ୍କ ସେବିକାଗଣ |
| ସାନୁମତୀ | ମେନକାଙ୍କ ସଖୀ, ଜନୈକ ଅପ୍ସରା |
| ଅଦିତି | କଶ୍ୟପଙ୍କ ପତ୍ନୀ, ଇନ୍ଦ୍ରଙ୍କ ଜନନୀ |



# ଭୂମିକା

ପ୍ରବର୍ତ୍ତତାଂ ପ୍ରକୃତିହିତାୟ ପାର୍ଥିବଃ
ସରସ୍ୱତୀ ଶ୍ରୁତିମହତୀ ମହୀୟତାମ୍ ।
ମମାପି ଚ କ୍ଷପୟତୁ ନୀଳଲୋହିତଃ
ପୁନର୍ଭବଂ ପରିଗତଶକ୍ତିରାତ୍ମଭୂଃ ।।

( ରାଜା ପ୍ରଜାମାନଙ୍କର ହିତ ସାଧନରେ ବ୍ରତୀ ହୁଅନ୍ତୁ ; ମହୀୟସୀ ବାଣୀ,ଯହିଁରେ କି ବେଦ ପ୍ରକଟିତ, ମହିମାମଣ୍ଡିତ ହୋଇ ରହୁ ; ଶକ୍ତିସଂଯୁତ ସ୍ୱୟମ୍ଭୂ ଶିବ ମୋର ପୁନର୍ଜନ୍ମବନ୍ଧନ ଖଣ୍ଡନ କରନ୍ତୁ । )

ଅଭିଜ୍ଞାନଶାକୁନ୍ତଳ ନାଟକର ଶେଷରେ ଏଇ ଯେଉଁ ମଙ୍ଗଳବାକ୍ୟ (ଭରତ ବାକ୍ୟ), ଏଥିରୁ ମହାକବି କାଳିଦାସଂକର ଚିନ୍ତାଧାରା ପରିସ୍ଫୁଟ । ମନୁଷ୍ୟ ସମାଜର କାମନା ସୁଖଶାନ୍ତି ଏବଂ ତାହା ସମ୍ଭବ ହୁଏ, ଯଦି ରାଜା ପ୍ରଜାମାନଙ୍କର ହିତରେ ବ୍ରତୀ ହୁଅନ୍ତି । ରାଜତନ୍ତ୍ର ହେଉ ବା ପ୍ରଜାତନ୍ତ୍ର ହେଉ,ଯଥାର୍ଥ ଶାସନ ଜନସାଧାରଣଙ୍କୁ ସୁଖ ଶାନ୍ତି ପ୍ରଦାନ କରେ । ପ୍ରାଚୀନ କବିମାନେ ଯେ କେବଳ ଧନସମ୍ପଦ ଲୋଭରେ ରାଜାମାନଙ୍କର ପ୍ରଶସ୍ତି ଗାନ କରୁଥିଲେ, ତାହା ନୁହେଁ । ସେମାନେ ଉପଲବ୍ଧି କରିଥିଲେ ଯେ, ରାଜା ଅର୍ଥାତ୍ ରାଜାର ସୁଶାସନ ହିଁ ଜନଗଣଙ୍କର ଶାରୀରିକ, ମାନସିକ, ଆତ୍ମିକ, ସର୍ବବିଧ ସୁଖଶାନ୍ତିର ମୂଳ କାରଣ । ଏକମାତ୍ର ସୂର୍ଯ୍ୟର ଅନୁପସ୍ଥିତିରେ ଯେପରି ସମଗ୍ର ଜଗତ ଅନ୍ଧକାରରେ ଆଚ୍ଛନ୍ନ ହୁଏ, ସେହିପରି ସୁଶାସକର ଅଭାବରେ ଜନସମାଜ ଦୁଃଖଦୁର୍ଦ୍ଦଶାରେ ଘାରି ହୁଅନ୍ତି । କବିମାନେ ଅସତ୍ୟଦର୍ଶୀ ନୁହଁନ୍ତି । କାଳିଦାସ ଯଥାର୍ଥରେ କହିଛନ୍ତି—

ପ୍ରଜାନାଂ ବିନୟାଧାନାଦ୍ ରକ୍ଷଣାଦ୍ ଭରଣାଦପି ।
ସ ପିତା ପିତରସ୍ତେଷାଂ କେବଳଂ ଜନ୍ମହେତବଃ ।।

( ରଘୁବଂଶ ୧-୨୪ )

( ଦିଲୀପ ପ୍ରଜାମାନଙ୍କର ବିନୟର ଅର୍ଥାତ୍ ଶିକ୍ଷାସଂସ୍କୃତିର ବ୍ୟବସ୍ଥା କରି ଏବଂ ରକ୍ଷଣ ତଥା ପୋଷଣ କରି ସେମାନଙ୍କର ପିତା ଥିଲେ । ପ୍ରକୃତ ପିତାମାନେ କେବଳ ସେମାନଙ୍କର ଜନ୍ମର କାରଣ ଥିଲେ । )

ସଂସାରରେ ମୃତ୍ୟୁ ଅନିବାର୍ଯ୍ୟ । କ୍ରୂର କାଳ କେତେବେଳେ ପିତାମାତାଙ୍କ କୋଳରୁ ପୁତ୍ରକନ୍ୟାଙ୍କୁ ଛଡ଼ାଇ ନେଉଛି ତ ପୁତ୍ର-କନ୍ୟାଙ୍କ ପାଖରୁ ପିତାମାତାଙ୍କୁ ଛଡାଇ ନେଉଛି । ପ୍ରାକୃତିକ ଉତ୍ପାତବିତ୍ପାତରେ କେତେ ଧନଜୀବନ ନଷ୍ଟ ହେଉଛି । ତେବେ, ପୋଷଣକାରୀ ମୃତ୍ୟୁମୁଖରେ ପଡ଼ିଲେ ପୋଷ୍ୟ କଅଣ ଅନାଥ ହୋଇଯିବ ? ଅର୍ଦ୍ଧ-ଉଲଗ୍ନ ଅବସ୍ଥାରେ ରସ୍ତାଘାଟରେ ଭିକ ମାଗି ବୁଲିବ ? ନା, ରଜା ହିଁ ତାର ପିତାମାତା, ରଜା ହିଁ ତାର ଆତ୍ମୀୟ ସ୍ୱଜନ । ନିଜେ ଦୁଷ୍ୟନ୍ତ ଏହା ଘୋଷଣା କରଇଛନ୍ତି—

ଯେନ ଯେନ ବିୟୁଜ୍ୟନ୍ତେ ପ୍ରଜାଃ ସ୍ନିଗ୍ଧେନ ବନ୍ଧୁନା ।
ସ ସ ପାପାଦୃତେ ତାସାଂ ଦୁଷ୍ୟନ୍ତ ଇତି ଘୁଷ୍ୟତାମ୍ ।।

( ଅଭିଜ୍ଞାନ ଶାକୁନ୍ତଳ—୬ / ୨୩ )

( ପ୍ରଜାମାନେ ନିଜର ଯେଉଁ ଯେଉଁ ପ୍ରିୟଜନଙ୍କୁ ହରାଇବେ, ଦୁଷ୍ୟନ୍ତ ସେମାନଙ୍କର ସେହି ସେହି ପ୍ରିୟଜନ ଅଟନ୍ତି, କିନ୍ତୁ ପାପୀମାନଙ୍କର ନୁହଁନ୍ତି । )

ପର୍ବତ ଯେପରି ପୃଥିବୀଧାରଣର ସ୍ତମ୍ଭ, ସୁଶାସକ ସେହିପରି ସଂସାର-ରକ୍ଷଣର ସ୍ତମ୍ଭ । ସୁଶାସନରେ ହିଁ ସରସ୍ୱତୀଙ୍କର (ବିଦ୍ୟାର) ଆଦର ବଢ଼େ । "ରଜା ପ୍ରଜାମାନଙ୍କର ହିତସାଧନରେ ବ୍ରତୀ ହୁଅନ୍ତୁ" କହିବାର ଠିକ୍ ପରେ "ବାଣୀ ମହିମାମଣ୍ଡିତ ହୋଇ ରହୁ" କହିବାର ତାତ୍ପର୍ଯ୍ୟ ହେଉଛି, ସୌରାଜ୍ୟର ପ୍ରଥମ ଲକ୍ଷଣ ବିଦ୍ୟାର ଆଦର । ଧନସମ୍ପଦ ଯଦିଓ ଆବଶ୍ୟକ, ତଥାପି ସୌରାଜ୍ୟରେ ବିଦ୍ୟାର ସ୍ଥାନ ପ୍ରଥମ । ଧନପ୍ରଧାନ ସଂସ୍କୃତି ଅପେକ୍ଷା ବିଦ୍ୟାପ୍ରଧାନ ସଂସ୍କୃତି ମହତ୍ତର, ଦୀର୍ଘକାଳସ୍ଥାୟୀ ଓ ଅଧିକ ସୁଖଶାନ୍ତିପ୍ରଦ । ତେଣୁ ସୌରାଜ୍ୟରେ ବିଦ୍ୱାନ୍ ଆଗେ ପୂଜା ପାଆନ୍ତି ।

ଜଗଦ୍‌ବାସୀଙ୍କ ପାଇଁ ସୌରାଜ୍ୟ ଓ ବିଦ୍ୟା ( ବିଦ୍ୟାଲଭ୍ୟ ଧନସମ୍ପଦ ମଧ୍ୟ ) ଆଶା କରିବା ପରେ କାଳିଦାସ ନିଜ ପାଇଁ କଅଣ ଆଶା

କରିଛନ୍ତି ? ସେ ଆଶା କରିଛନ୍ତି ପୁନର୍ଜନ୍ମବନ୍ଧନରୁ ମୁକ୍ତି । କିଛି କାଳ ଜଗତ ମଧ୍ୟରେ ଜୀବନଯାପନ କଲା ପରେ ଏବଂ କାଳର (ସମୟର) ସର୍ବାଧିପତ୍ୟ ଲୀଳାକୁ ହୃଦୟଙ୍ଗମ କଲା ପରେ ବିଜ୍ଞ ବ୍ୟକ୍ତିର ଅନ୍ତଗମ୍ଭୀରେ ନିଜର ବୋଲି କୌଣସି ଭାବନା ରହେ ନାହିଁ । ସେ କେବଳ ଶରୀର ରକ୍ଷା ପାଇଁ ବା 'ଲୋକ ସଂଗ୍ରହ' ( ସଂସାରଚକ୍ରଗ୍ୱଳନା ) ଉଦ୍ଦେଶ୍ୟରେ କାର୍ଯ୍ୟ କରେ, କିନ୍ତୁ ସେଥିରେ ତା'ର ଆସକ୍ତି ବା ଅନୁରକ୍ତି ନ ଥାଏ । ଜନ୍ମ ପରେ ମୃତ୍ୟୁ, ମୃତ୍ୟୁ ପରେ ଜନ୍ମ , ଜନ୍ମ ପରେ ମୃତ୍ୟୁ..............ଏହା ହିଁ ପ୍ରାଣୀର ବନ୍ଧନ ବୋଲି ସେ ଅନୁଭବ କରେ ଏବଂ ଏଥିରୁ ମୁକ୍ତି କାମନା କରେ । ଏହା ହିଁ କାମନାବିହୀନ କାମନା । ଏଥିରୁ ଜଣାପଡେ, କାଳିଦାସ ପ୍ରୌଢ ବୟସରେ 'ଅଭିଜ୍ଞାନଶାକୁନ୍ତଳ' ରଚନା କରିଥିବେ । ମେଘଦୂତ,କୁମାରସମ୍ଭବ ଓ ଋତୁ-ସଂହାର ତାଙ୍କର ପତିହୃଦୟର ରଚନା ; ଅଭିଜ୍ଞାନଶାକୁନ୍ତଳ ତାଙ୍କର ପିତୃ-ହୃଦୟର ରଚନା ।

କନ୍ୟାର ପିତାମାତା ହୋଇଥିବା ବ୍ୟକ୍ତିମାନେ ଅଭିଜ୍ଞାନଶାକୁନ୍ତଳ ପଢି ବା ନାଟ୍ୟରୂପେ ଦେଖି ଅଶ୍ରୁମୋଚନ ନ କରି ରହିପାରନ୍ତି ନାହିଁ । ଭାରତୀୟ ପରିବାରରେ ଝିଅଟିଏ ପିତାମାତାଙ୍କ କୋଳରେ, ସାଙ୍ଗସାଥୀଙ୍କ ମେଳରେ, କେତେ ଶ୍ରଦ୍ଧାରେ, କେତେ ଆଦରରେ ବଢିଥାଏ । ତାକୁ ଯିବାକୁ ପଡେ ପତିଗୃହକୁ, ଏକ ସମ୍ପୂର୍ଣ୍ଣ ଅପରିଚିତ ପରିବେଶକୁ, ଅପରିଚିତ ଲୋକ-ମାନଙ୍କର ମେଳକୁ । ସେ ବିଦାୟ ନେଲାବେଳେ କେବଳ ପିତାମାତା,ଭାଇଭଉଣୀ, ଆତ୍ମୀୟସ୍ୱଜନ ବା ସାଙ୍ଗସାଥୀମାନେ କାନ୍ଦନ୍ତି ନାହିଁ, ପ୍ରତିବେଶୀ, ଏପରିକି ବାଟ ଗଲା ଲୋକ ମଧ୍ୟ ଶୋକରେ ଅଧୀର ହୋଇ ପଡନ୍ତି । ଏହି କାରୁଣ୍ୟମୟ ଦୃଶ୍ୟ ଅଭିଜ୍ଞାନଶାକୁନ୍ତଳରେ ଅଙ୍କିତ ହୋଇଛି । ଶକୁନ୍ତଳା ଥିଲେ କଣ୍ୱଙ୍କର ପାଳିତା କନ୍ୟା । ତଥାପି ତାହାକୁ ବିଦାୟ ଦେଲାବେଳେ କଣ୍ୱ ଶୋକାଭିଭୂତ ହୋଇ କହିଛନ୍ତି —

" ବତ୍ସେ, ତୁ କୁଟୀର ଆଗରେ ଯେଉଁ ପୂଜାଶସ୍ୟମାନ ପକାଇ-ଥିଲୁ, ସେଥିରୁ ଗଛସବୁ ଉଠିଛି । ଯେ ପର୍ଯ୍ୟନ୍ତ ତାହା ମୋ ଦୃଷ୍ଟି ପଥରେ ପଡୁଥିବ, ସେ ପର୍ଯ୍ୟନ୍ତ କିପରି ମୋର ଶୋକ-ଉପଶମ ହେବ ? "

( ଅ.ଶା. ୪–୨୧ )

ଝିଅଟି ଯେଉଁଠି ଜନ୍ମଲାଭ କରିଥାଏ, ଯେଉଁଠି ଲାଳିତପାଳିତ ହୋଇ-ଥାଏ, ସେହି ସ୍ଥାନକୁ ଛାଡ଼ି ଗଲାବେଳେ ତାର ମନ କି ଆକୁଳ ନ ହୁଏ ! ଅବଶ୍ୟ, ଭବିଷ୍ୟତର ସ୍ୱପ୍ନରାଜ୍ୟର ସୋହାଗ ତାର ଧୈର୍ଯ୍ୟର ଅବଲମ୍ବନ ସ୍ୱରୂପ ଥାଏ,କିନ୍ତୁ ଜନ୍ମମାଟିର ମାୟାମମତା ତାକୁ ଆଗକୁ ପାଦ ବଢ଼ାଇବାକୁ ଦିଏ ନାହିଁ । ଘରର, ଗାଆଁର, ଗାଆଁ ଚାରିପାଖର ପରିବେଶ—ବୃକ୍ଷ,ଲତା, ପୁଷ୍କରିଣୀ, ନଦୀ, ଶସ୍ୟ କ୍ଷେତ୍ର, ତୋଟା, ପଡ଼ିଆ, ଦେବାଳୟ,ବିଦ୍ୟାଳୟ, ଅତୀତର ସାଙ୍ଗ,ସାଥୀ, ନାଚ, ଗୀତ, ଝୁଲଣ, ଖେଳ, କୌତୁକ—ସବୁ ତାର ସ୍ମୃତିପଥାରୂଢ଼ ହୁଏ, ସମସ୍ତଙ୍କୁ ସେ ଅନ୍ତରାତ୍ମାରେ ଆଲିଙ୍ଗନ କରୁଥାଏ, ସମସ୍ତଙ୍କଠାରୁ ବିଦାୟ ମାଗି ଯାଉଥାଏ । ଶକୁନ୍ତଳା ମଧ୍ୟ ଏହିପରି ତପୋ-ବନର ବୃକ୍ଷଲତାମାନଙ୍କ ଠାରୁ, ମୃଗଶାବକଠାରୁ ବିଦାୟ ମାଗି ଯାଇଛନ୍ତି । ପିତାଙ୍କୁ ବାରମ୍ବାର କୁଣ୍ଢାଇ ଧରି, ସଖୀମାନଙ୍କୁ ଆଲିଙ୍ଗନ କରି, ତପୋବନକୁ କରୁଣ ଦୃଷ୍ଟିରେ ଚାହିଁ ସେ ଶୋକ ବିହ୍ୱଳା ହୋଇ ପଡ଼ିଛନ୍ତି । ଝିଅ ବିଦା ହେବାର ଏ ମାର୍ମିକ ଦୃଶ୍ୟ ଅଙ୍କନ କରି କାଳିଦାସ ଚିରଦିନ ପାଇଁ ଝିଅ-ମାନଙ୍କ ପ୍ରତି ଦରଦ, ଅନୁକମ୍ପା ଓ ଶ୍ରଦ୍ଧା ଜଣାଇଛନ୍ତି ।

ଅଭିଜ୍ଞାନଶାକୁନ୍ତଳର ଯାହା ଘଟଣା, ସେଥିରେ କାହାକୁ ଦୋଷ ଦେବାର ବା କାହାକୁ ନିନ୍ଦା କରିବାର ନାହିଁ । ତପୋବନରେ ଦୁଷ୍ୟନ୍ତ ଓ ଶକୁନ୍ତଳାଙ୍କର ପରସ୍ପର ସାକ୍ଷାତ ହୁଏ ଏବଂ ସେହି ପ୍ରଥମ ସାକ୍ଷାତରେ ହିଁ ପରସ୍ପର ହୃଦୟରେ ପ୍ରଣୟ ଅଙ୍କୁର ଉଦ୍‌ଗତ ହୁଏ । ବୟସ୍କ ଲୋକର ଦୃଷ୍ଟି-କୋଣରୁ କୁହାଯାଇ ପାରେ, ଦାମ୍ପତ୍ୟ ସୂତ୍ରରେ ଆବଦ୍ଧ ହେବା ପୂର୍ବରୁ ନିଜର ଗୁରୁଜନ, ଆତ୍ମୀୟସ୍ୱଜନମାନଙ୍କୁ ପଚାରିବା ବା ସେମାନଙ୍କର ଅନୁମତି ନେବା ଉଭୟଙ୍କ ପକ୍ଷରେ, ବିଶେଷତଃ ଶକୁନ୍ତଳାଂକ ପକ୍ଷରେ ଉଚିତ ଥିଲା । ରାଜନବରରେ ଦୁଷ୍ୟନ୍ତଂକ ଦ୍ୱାରା ଶକୁନ୍ତଳା ପ୍ରତ୍ୟାଖ୍ୟାତ ହେଉଥିଲାବେଳେ ଶାର୍ଙ୍ଗରବ ଶକୁନ୍ତଳାଙ୍କୁ ଏହି କଥା ମଧ୍ୟ କହି ଦେଇଛନ୍ତି—"ଚାପଲ୍ୟକୁ ବାଧା ନ ଦେଲେ ତାହା ଏହିପରି ଦୁଃଖ ଦେଇଥାଏ ।" ତରୁଣ ତରୁଣୀ-ମାନେ ପରସ୍ପର ପ୍ରତି ଆକୃଷ୍ଟ ହୋଇ, ଗୁରୁଜନ ବା ଆତ୍ମୀୟସ୍ୱଜନଙ୍କୁ ନ ପଚାରି ପ୍ରଣୟସମ୍ପର୍କ ସ୍ଥାପନ କରିପକାନ୍ତି । ତାହା ସେମାନଙ୍କର 'ଚପଳତା' ଛଡା ଅନ୍ୟ କିଛି ନୁହେଁ । ଅବଶ୍ୟ, ଏଭଳି ଚପଳ ପ୍ରଣୟ କେତେକ ସ୍ଥଳରେ

ଚିରସୁନ୍ଦର ହୋଇ ରହେ, କିନ୍ତୁ କେତେକ ସ୍ଥଳରେ ତାହା ପରିଣତି-ଦୁଃଖକର ମଧ୍ୟ ହୋଇଥାଏ । ସୌଭାଗ୍ୟକୁ, ଦୁଷ୍ୟନ୍ତ ଥିଲେ ସତ୍ ପାତ୍ର ଏବଂ ଶକୁନ୍ତଳା ଥିଲେ ସତ୍ ପାତ୍ରୀ । ଉଭୟଙ୍କ ପ୍ରଣୟରେ ଯେଉଁ ଦୁଃଖଦ ମ୍ଳାନି ଘଟିଥିଲା, ତାହାର କାରଣ ଥିଲା ଦୁର୍ବାସାଂକ ଅଭିଶାପ । ଅଭିଶାପ ଅପସରିଯାଆନ୍ତେ ତାହା ପୁଣି ନିଜର ସ୍ୱଚ୍ଛ ରୂପ ଧାରଣ କରିଥିଲା ।

କିନ୍ତୁ ଶକୁନ୍ତଳା କାହିଁକି ଅଭିଶାପ ପାଇଲେ ? କାହିଁକି ତାଙ୍କୁ କଠୋର ପ୍ରତ୍ୟାଖ୍ୟାନ ଦୁଃଖ-ସହ୍ୟ କରିବାକୁ ପଡ଼ିଲା ? କୁହାଯାଇପାରେ, ସେ ନିଜେ ହିଁ ନିଜ ଦୁଃଖର କାରଣ ହେଲେ । ଏକେ ତ ସେ ଦୁଷ୍ୟନ୍ତଙ୍କ ସହିତ ପ୍ରଣୟ ସମ୍ବନ୍ଧ ସ୍ଥାପନ କରିବାରେ ଗୁରୁଜନମାନଙ୍କର ଅନୁମତି ନେଇ-ନ ଥିଲେ, ଦ୍ୱିତୀୟରେ ସେ ସ୍ୱାମୀବିଚ୍ଛେଦରେ ଏପରି ଭବାବିଷ୍ଟ ରହିଲେ ଯେ, ପୂଜ୍ୟ ଦୁର୍ବାସା ମହର୍ଷି ଆଶ୍ରମରେ ଆସି ପହଞ୍ଚି ବାରମ୍ବାର ନିଜର ଉପସ୍ଥିତି ଜଣାଇଲେ ମଧ୍ୟ ତାହା ସେ ଶୁଣି ପାରିଲେ ନାହିଁ । ସେତେବେଳେ ସେ ଥିଲେ 'ଶୂନ୍ୟହୃଦୟା' । ଆବେଗ ଓ ଚିନ୍ତା ତାଙ୍କୁ ସମ୍ପୂର୍ଣ୍ଣ ଆୟତ୍ତ କରି ରଖିଥିଲା । ଫଳରେ, ସେ ବାହାର ଦୁନିଆଁକୁ ଭୁଲି ଯାଇଥିଲେ । କିନ୍ତୁ ଏଭଳି ଭବାବିଷ୍ଟ ହେବା କାହାରି ପକ୍ଷରେ ଉଚିତ ନୁହେଁ । ହେଲେ, ତାହାର ଦୁଃଖମୟ ଫଳ ଭୋଗିବାକୁ ହିଁ ପଡ଼େ । ମଣିଷ ଯେତେ ଦୁଃଖ ଭୋଗ କରେ, ପ୍ରାୟ ସମସ୍ତର ମୂଳ ଆବେଗପ୍ରବଣତା । କେହି କ୍ରୋଧର ବଶବର୍ତ୍ତୀ ହୋଇ କାହାକୁ କଟୁ ଦିପଦ ଶୁଣାଇ ଦିଏ ଯେ, ସାରା ଜୀବନ ତା' ସହିତ ମିତ୍ରତାର ସମ୍ପର୍କ ଛିନ୍ନ ହୋଇଯାଏ । କେହି ଲୋଭର ବଶବର୍ତ୍ତୀ ହୋଇ ଉତ୍କୋଚ ଗ୍ରହଣ କରେ ବା ବିଭିନ୍ନ ଅସତ୍ ଉପାୟରେ ଧନ ପଛରେ ଧାଏଁ ଯେ ସର୍ବଦା ଅଶାନ୍ତି, ଦୁଶ୍ଚିନ୍ତାରେ ଘାରି ହୁଏ । କାମର ବଶବର୍ତ୍ତୀ ହୋଇ ପ୍ରିୟ ପ୍ରିୟାକୁ ବା ପ୍ରିୟା ପ୍ରିୟକୁ ଏପରି ଭବିହୁଅନ୍ତି ଯେ, ଅନ୍ୟାନ୍ୟ କର୍ତ୍ତବ୍ୟ କର୍ମ କଥା ଭୁଲିଯାଆନ୍ତି । ଏହିପରି ଆବେଗଗୁଡ଼ିକ ଜୀବନକୁ ସେମାନଙ୍କର ଲୀଳାଗୃହ କରିବାକୁ ଚାହାଁନ୍ତି । କିନ୍ତୁ ସେମାନଙ୍କ ଆଧିପତ୍ୟକୁ ସ୍ୱୀକାର ନ କରିବାରେ ହିଁ ମନୁଷ୍ୟର ବୈଶିଷ୍ଟ୍ୟ ନିହିତ । ନିଜ ପ୍ରିୟତମଙ୍କ ଚିନ୍ତାରେ ନିବିଷ୍ଟ ରହିବା ଯଦିଓ ଶକୁନ୍ତଳାଙ୍କ ପକ୍ଷରେ ଅନୁଚିତ ନ ଥିଲା, ତଥାପି ଅନ୍ୟାନ୍ୟ କଥା ଭୁଲିଯିବା ମଧ୍ୟ ଉଚିତ ନ ଥିଲା । କେବଳ ଏକ ବ୍ୟକ୍ତି ପ୍ରତି ଅନୁରକ୍ତ ହୋଇ ଅନ୍ୟମାନଙ୍କୁ ଭୁଲିଗଲେ ଏହିପରି ଫଳ ମିଳେ ।

କେତେକ ପୌରାଣିକ ଆଖ୍ୟାନରେ ଦୁର୍ବାସାଙ୍କୁ କ୍ଷଣକୋପୀ ଋଷିରୂପେ ଚିତ୍ରଣ କରାଯାଇଛି । ଶକୁନ୍ତଳା ଜାଣି ଶୁଣି ତାଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କରି ନ ଥିଲେ, କି ଅଜାଣାରେ ମଧ୍ୟ ଅବଜ୍ଞା ପ୍ରଦର୍ଶନ କରି ନ ଥିଲେ । ଦୁର୍ବାସା ନିଜର ସିଦ୍ଧିଶକ୍ତିରେ ବୋଧହୁଏ ଜାଣି ପାରିଥିବେ ଯେ, ଶକୁନ୍ତଳା ତା'ର ସ୍ୱାମୀଂକ ଭାବନାରେ ନିବିଷ୍ଟା ; ତେଣୁ ତାଂକୁ ଅଭିଶାପ ଦେଇଥିଲେ—
" ତୁ ଯାହାକୁ ସ୍ମରଣ କରୁଛୁ , ସେ ତୋତେ ସ୍ମରଣ କରିବ ନାହିଁ । "
ସେ ମଧ୍ୟ ଜାଣି ପାରିଥିବେ ଯେ, ଆଶ୍ରମରେ ତାଙ୍କର ଉପସ୍ଥିତି ବିଷୟ ଶକୁନ୍ତଳା ଆଦୌ ଜାଣି ନଥିଲା , କି ତାଙ୍କର ସ୍ୱର ତା'ର କର୍ଣ୍ଣକୁହରରେ ଆଦୌ ପ୍ରବେଶ କରି ନଥିଲା । ତାଂକ ପ୍ରତି ତାର ଆଦୌ ଅବଜ୍ଞା-ମନୋଭାବ ନ ଥିଲା, ତେଣୁ ସେ ଯେ ସମ୍ପୂର୍ଣ୍ଣ ନିରପରାଧା ଥିଲା,ଏହା ନିଶ୍ଚିତ । କୀଟ,ପତଙ୍ଗଟି ପ୍ରତି ମଧ୍ୟ ଶକୁନ୍ତଳାର ଅବଜ୍ଞା-ମନୋଭାବ ନ ଥିଲା, ଦୁର୍ବାସାଂକ ଭଳି ମହର୍ଷିଂକ ପ୍ରତି ବା କିପରି ଅବଜ୍ଞା-ମନୋଭାବ ରହଂତା ? ତଥାପି, ଦୁର୍ବାସା ତା'ର ମନୋଭାବ, ବା ସେ କି ଅବସ୍ଥାରେ ଥିଲା, ତାହା ବୁଝିଲେ ନାହିଁ ଏବଂ ନିଷ୍ଠୁର ଅଭିଶାପ ଦେଇ ଚାଲିଗଲେ । ଦୁର୍ବାସା ଯେ ଭୁଲ୍ ବା ଅମାନବିକ କାର୍ଯ୍ୟଟାଏ କଲେ, ତାହା ମଧ୍ୟ କୁହାଯାଇ-ନ ପାରେ । କାରଣ, ଯେ କୌଣସି ଅବସ୍ଥାରେ ମଧ୍ୟ ସମ୍ମାନନୀୟଙ୍କୁ ସମ୍ମାନିତ ନ କରିବା ଅପରାଧ । ଏହିପରି, ସଂସାରଚକ୍ରରେ, ନିଜ ଅଜ୍ଞାତରେ, ନିଜର ବିନା ଅପରାଧରେ ମଧ୍ୟ, କେତେବେଳେ ଅନ୍ୟର ରୋଷର ପାତ୍ର ହେବାକୁ ପଡେ । ଏହାହିଁ ଦୁର୍ଭାଗ୍ୟ ବା ଦୁର୍ଯୋଗ । ଅବଶ୍ୟ, ସହୃଦୟଙ୍କ ବିଚାରରେ କୁହାଯାଇ ପାରେ, ଅଳ୍ପବୟସ୍କା ଝିଅଟି ପ୍ରତି ଦୁର୍ବାସାଂକର ଏତେ ନିର୍ଦ୍ଦୟ ହେବା ଉଚିତ୍ ନଥିଲା । କିନ୍ତୁ କଅଣ କରାଯିବ ? ଦୁର୍ଯୋଗ ଘଟିବାକୁ ହିଁ ଥିଲା ।

ଦୁର୍ଯୋଗ କଅଣ ସେତିକିରେ ସରିଲା ? ଦୁର୍ବାସା ଅଭିଶାପ-ଅବସାନର ଯେଉଁ ଉପାୟଟି କହିଗଲେ, ତାହା ମଧ୍ୟ ଦୁର୍ଯୋଗଗ୍ରସ୍ତ ହୋଇଗଲା । ସଖୀଦ୍ୱୟ ଦୁର୍ବାସାଙ୍କ ଅଭିଶାପ ବିଷୟ ଶକୁନ୍ତଳାଙ୍କୁ ଆଦୌ ଜଣାଇଲେ ନାହିଁ । ସେମାନଙ୍କର ଧାରଣା ହେଲା ଯେ , ଶକୁନ୍ତଳା ଅତ୍ୟନ୍ତ କୋମଳହୃଦୟା, ଶାପ ବିଷୟ ଜାଣିଲେ ହୁଏ ତ ସେ ଚିନ୍ତିତ, ଉଦ୍‌ବିଗ୍ନ ହୋଇ ପଡ଼ିବ । ଏଇଠି ସଖୀଦ୍ୱୟ ଗଭୀର ଭାବରେ ଚିନ୍ତା କରି ପାରିଲେ ନାହିଁ । ସେମାନେ ଥିଲେ

ପିଲ,ଗଭୀର ଚିଂତା ବା କିପରି କରିପାରି ଥାଆନ୍ତେ ? ଶକୁଂତଳା ଯଦି ଶାପ-ବିଷୟ ଜାଣିଥାଂତେ, ତେବେ ଦୁଷ୍ୟଂତଙ୍କ ମୁଦିଟିକୁ ସାବଧାନତା ସହକାରେ ରଖିଥାଂତେ । ତୃତୀୟ ଦୁର୍ଯୋଗ ଘଟିଲା ଶକ୍ରାବତାର-ଶଚୀତୀର୍ଥରେ । ସେଠାରେ ସ୍ନାନ କଲାବେଳେ ଶକୁଂତଳାଙ୍କ ହାତରୁ ଅଜାଣତରେ ମୁଦିଟି ପାଣିରେ ପଡ଼ିଗଲା । ଫଳରେ, ସେ ରଜାଙ୍କୁ ତାଙ୍କର ପ୍ରଣୟ ଚିହ୍ନ ସ୍ୱରୂପ ମୁଦିଟି ଦେଖାଇ ପାରିଲେ ନାହିଁ । ଏହିପରି,ଶକୁଂତଳାଙ୍କ ଭଗ୍ୟରେ ଦୁର୍ଯୋଗ ଧାଡ଼ି ବାନ୍ଧି ଆସିଥିଲା ।

ଶକୁଂତଳାଙ୍କୁ ପ୍ରତ୍ୟାଖ୍ୟାନ କରିବାରେ ଦୁଷ୍ୟଂତଙ୍କର ତିଳେମାତ୍ର ଦୋଷ ନଥିଲା । ଯେହେତୁ , ଦୁର୍ବାସାଂକ ଅଭିଶାପ ତାଂକର ସ୍ମୃତିକୁ ଆଚ୍ଛନ୍ନ କରି ରଖିଥିଲା । ମୁଦ୍ରିକାଦର୍ଶନରେ ଯେତେବେଳେ ବିସ୍ମୃତି ପରଦା ଅପସରି-ଗଲା, ତାଂକର ଅନୁତାପର ସୀମା ରହିଲା ନାହିଁ । ଶକୁଂତଳାଙ୍କ ବିନା ଜଗତ ତାଙ୍କୁ ଶୂନ୍ୟ ଦିଶିଲା, ଆନନ୍ଦ-ଉତ୍ସବ ସବୁ ବିଷ ବୋଧ ହେଲା । ଆଶ୍ରମରେ ପ୍ରଥମ ଦର୍ଶନ ବେଳେ ଶକୁଂତଳାଙ୍କର ଦୈହିକ ସୌନ୍ଦର୍ଯ୍ୟ ଯଦିଓ ତାଂକର ଆକର୍ଷଣର କାରଣ ଥିଲା, ଶାପ-ଅବସାନରେ ତାହା ଆଉ ଦେହନିଷ୍ଠ ନ ରହି ଆତ୍ମାନିଷ୍ଠ ହୋଇଗଲା । ଭଗ୍ୟକ୍ରମେ କଶ୍ୟପଂକ ଆଶ୍ରମରେ ସେ ଯେତେବେଳେ ଶକୁଂତଳାଙ୍କୁ ଦେଖିବାକୁ ପାଇଲେ, ତାଂକ ପାଦତଳେ ଲୋଟିଯିବାକୁ କୁଣ୍ଠାବୋଧ କଲେ ନାହିଁ । ଏଇଠି ମହା-କବିଙ୍କ ଚିଂତାଧାର ସହିତ ପରିଚିତ ହେବା ଦରକାର । କୌଣସି ପୁରୁଷ ଯେତେ ଦୋଷ କଲେ ମଧ୍ୟ ସ୍ତ୍ରୀର ପାଦତଳେ ପଡ଼ିବାକୁ କୁଣ୍ଠିତ ହୁଏ । କାରଣ, ତା'ର ଏକ ଧାରଣା ଥାଏ ଯେ, ସ୍ତ୍ରୀର ମର୍ଯ୍ୟାଦା ତାର ମର୍ଯ୍ୟାଦା-ଠାରୁ ନିମ୍ନ । ଏହି ଧାରଣାର ବଶବର୍ତ୍ତୀ ହୋଇ ବହୁ ସୁଯୋଗ୍ୟ ବ୍ୟକ୍ତି ମଧ୍ୟ ନିଜ ପତ୍ନୀ ନିକଟରେ ମୁଣ୍ଡ ନୁଆଁନ୍ତି ନାହିଁ । କିନ୍ତୁ ଦୁଷ୍ୟଂତ ଥିଲେ ରଜାଧିରଜ । ସୁନ୍ଦରୀ ସ୍ତ୍ରୀ ତାଙ୍କୁ ଅଭବ ନ ଥିଲେ । ତଥାପି ସେ ଶକୁଂତଳା-ଙ୍କର ପାଦତଳେ ପଡ଼ିଲେ । କାରଣ,ସେ ଉପଲବ୍ଧି କଲେ ଯେ,ଶକୁନ୍ତଳାଙ୍କୁ ପ୍ରତ୍ୟାଖ୍ୟାନ କରି ସେ ଅପରାଧ କରିଛନ୍ତି, ଯଦିଓ ସେ ପ୍ରକୃତରେ ଅପରାଧୀ ନ ଥିଲେ । ଏପରି ଚିତ୍ରଣର ମୂଳରେ କାଳିଦାସଙ୍କର ଉଦାର ଭବନା ନିହିତ । ପତିପତ୍ନୀଙ୍କ ମଧ୍ୟରେ କେହି ବଡ଼ ନୁହଁନ୍ତି କି କେହି ସାନ

ନୁହଁନ୍ତି, କେହି ଦେବତା ନୁହଁନ୍ତି, କି କେହି ଦାସୀ ନୁହଁନ୍ତି, ଏହି ଭବନା ହିଁ ଦାମ୍ପତ୍ୟଜୀବନର ମାଧୁର୍ଯ୍ୟ ।

ଦାମ୍ପତ୍ୟଜୀବନ ଆହୁରି ମଧୁମୟ ହୁଏ, ଆହୁରି ସାର୍ଥକସୁନ୍ଦର ହୁଏ, ଯେତେବେଳେ ସନ୍ତାନଟିଏ ଦମ୍ପତିଙ୍କର କୋଳ ମଣ୍ଡନ କରେ । ସନ୍ତାନର ଜନକ ଜନନୀ ହେଲେ ଦମ୍ପତି କ୍ରମେ ଦୈହିକ ପ୍ରେମରୁ ଆତ୍ମିକ ପ୍ରେମକୁ ଅଗ୍ରସର ହୁଅନ୍ତି । ଗୃହସ୍ଥାଶ୍ରମର ଲକ୍ଷ୍ୟ ସନ୍ତାନ (ପ୍ରଜାୟୈ ଗୃହମେଧିନାମ୍ ––ରଘୁବଂଶ ୨ / ୭ ) । ତେଣୁ କାଳିଦାସ ତାଙ୍କର କାବ୍ୟ ନାଟକମାନଙ୍କରେ·ସନ୍ତାନ ବାତ୍ସଲ୍ୟର ମନୋଜ୍ଞ ଚିତ୍ରମାନ ଦେଇଛନ୍ତି । ରଘୁଙ୍କ ଶୈଶବ ବର୍ଣ୍ଣନାରେ––

" ସେହି ଶିଶୁ ଯେତେବେଳେ ଧାତ୍ରୀର କଥାକୁ ଉଚ୍ଚାରଣ କଲା, ତାହାର ଅଙ୍ଗୁଳି ଧରି ଚାଲିଲା ଏବଂ ପ୍ରଣାମ ଶିଖି ଗୁରୁଜନମାନଙ୍କୁ ପ୍ରଣାମ କଲା, ସେ ସମସ୍ତ ଦେଖି ରାଜା ଅତ୍ୟନ୍ତ ଆନନ୍ଦ ଲାଭ କଲେ । "

" ରାଜା ପୁତ୍ରକୁ କୋଳରେ ଧରିଲା ବେଳେ ତା'ର ଶରୀରସ୍ପର୍ଶ ତାଙ୍କ ଦେହରେ ସତେ ଯେପରି ଅମୃତ ବୋଳି ଦେଲା । ଚକ୍ଷୁପ୍ରାନ୍ତକୁ ମୁଦ୍ରିତ କରି ସେ ବହୁଦିନରୁ ଆକାଂକ୍ଷିତ ପୁତ୍ରସ୍ପର୍ଶ ସୁଖର ରସ ଆସ୍ୱାଦନ କଲେ । " ( ରଘୁବଂଶ ୩ । ୨୫,୨୬ )

ଶିଶୁ ସର୍ବଦମନକୁ ଦେଖି ଦୁଷ୍ୟଂତଙ୍କ ଭବନାରେ––

" ଶିଶୁମାନେ ବିନା କାରଣରେ ହସୁଥାଆନ୍ତି, ସେମାନଙ୍କର ଦଂତଗୁଡ଼ିକ ଫୁଲକଢି ପରି ଶୋଭପାଉଥାଏ, ସେମାନେ ଅସ୍ପଷ୍ଟ ମଧୁର କଥାମାନ କହୁଥାଆନ୍ତି ଏବଂ କୋଳରେ ବସିବାକୁ ଚାହୁଁଥାଆନ୍ତି । ଏପରି ଶିଶୁପୁତ୍ରମାନଙ୍କ ଅଙ୍ଗଧୂଳିରେ ଯେଉଁମାନଙ୍କର ଅଙ୍ଗ ମଳିନ ହୁଏ, ସେମାନଙ୍କର ଜୀବନ ଧନ୍ୟ । " ( ଅଭିଜ୍ଞାନ ଶାକୁଂତଳ––୭ । ୧୭ )

ଜୀବନର ମହିମା, ଜୀବନର ବୈଭବ,ଜୀବନର ଛନ୍ଦ କାଳିଦାସଙ୍କ କବିତ୍ୱର ବୈଶିଷ୍ଟ୍ୟ । କିନ୍ତୁ ସେସବୁଥିରେ ଛନ୍ଦି ନ ହୋଇ ଯିବାକୁ ସେ

ଅପ୍ରତ୍ୟକ୍ଷ ଭାବରେ ଚିଂତା-ଉଦ୍ରେକକାରୀ ସୂଚନାମାନ ଦେଇଛନ୍ତି । ଉଦାହରଣ ସ୍ୱରୂପ, ଶାର୍ଙ୍ଗରବ ଶାରଦ୍ୱତ ମୁନିଶିଷ୍ୟଦ୍ୱୟ ନଗରରେ ପ୍ରବେଶ କରି ନିଜର ଅନୁଭୂତି ପ୍ରକାଶ କରିଛନ୍ତି––

"ସ୍ନାନ କରିଥିବା ବ୍ୟକ୍ତି ତୈଳ ଲଗାଇଥିବା ବ୍ୟକ୍ତିକୁ, ପବିତ୍ର ବ୍ୟକ୍ତି ଅପବିତ୍ରକୁ, ଜାଗ୍ରତ ବ୍ୟକ୍ତି ନିଦ୍ରିତକୁ ଏବଂ ସ୍ୱଚ୍ଛନ୍ଦବିହାରୀ ବ୍ୟକ୍ତି ଆବଦ୍ଧକୁ ଦେଖି ଯେଉଁଳି ବୋଧ କରେ, ମୁଁ ଏହି ସଂସାରାସକ୍ତ ବ୍ୟକ୍ତିମାନଙ୍କୁ ଦେଖି ସେହିଭଳି ବୋଧ କରୁଛି ।" ( ଅ. ଶା. ୫ । ୧୧ )

ନଗରର କୋଳାହଳ, ରାଜଚକ୍ର, ଚିଂତାଶୀଳ ବ୍ୟକ୍ତିମାନଙ୍କ ପକ୍ଷରେ ପ୍ରୀତିପ୍ରଦ ନୁହେଁ । ତେଣୁ, ପ୍ରାଚୀନ ଯୁଗରେ ମୁନିଋଷିମାନେ ଅରଣ୍ୟରେ ବାସ କରୁଥିଲେ । ରାଜା ମହାରାଜାମାନେ ମଧ୍ୟ ବାର୍ଦ୍ଧକ୍ୟରେ ପୁତ୍ରଉପରେ ରାଜ୍ୟ ଭାର ନ୍ୟସ୍ତ କରି ଅରଣ୍ୟରେ ବୃକ୍ଷମୂଳକୁ ଗୃହ ରୂପେ ଗ୍ରହଣ କରୁଥିଲେ । ମହାରାଜ ଦିଲୀପ ପୁତ୍ରର ( ରଘୁଙ୍କର ) ଅନୁରୋଧରେ ଯଦିଓ ଅରଣ୍ୟକୁ ଯାଇ ନ ଥିଲେ, ତଥାପି ନଗରର ଉପାଂତରେ, କୋଳାହଳଶୂନ୍ୟ ପରିବେଶରେ ବାନପ୍ରସ୍ଥ ଜୀବନ ଯାପନ କରିଥିଲେ । ଏକ ସମୟରେ ରଘୁଙ୍କର ଅଭ୍ୟୁଦୟ ଆଡକୁ ଗତି ଏବଂ ଦିଲୀପଙ୍କର ସନ୍ନ୍ୟାସ ( ସର୍ବତ୍ୟାଗ ) ଆଡ଼କୁ ଗତି ରଘୁବଂଶରେ ଯେପରି ବର୍ଣ୍ଣନା କରଯାଇଛି, ବିଶ୍ୱସାହିତ୍ୟରେ ତାହାର ପଟାନ୍ତର ନାହିଁ ।

କାଳିଦାସଙ୍କ ସାହିତ୍ୟରେ ଅଙ୍କିତ ଅରଣ୍ୟ,ଆଶ୍ରମ ଓ ତପୋବନର ଚିତ୍ର ଯଥାର୍ଥ ଭାରତୀୟ ସଂସ୍କୃତିର ନିଦର୍ଶନ । ଅଭିଜ୍ଞାନଶାକୁନ୍ତଳରେ ଦୁଇଟି ଆଶ୍ରମର ଦୃଶ୍ୟ ରହିଛି–ମହର୍ଷି କଣ୍ୱଙ୍କ ଆଶ୍ରମ ଓ ମହର୍ଷି କଶ୍ୟପଙ୍କ ଆଶ୍ରମ । ଆଶ୍ରମଜୀବନର ଯେତୋଟି ବିଭବ କାଳିଦାସଙ୍କ କାବ୍ୟନାଟକରେ ରହିଛି, ତାହା ମାନବାତ୍ମାର ଉତ୍କର୍ଷର ପରିଚୟ ଦିଏ ; ଶକୁନ୍ତଳା ବୃକ୍ଷଲତାମାନଙ୍କୁ ଭାଇଭଉଣୀ ଭଳି ସମ୍ବୋଧନ କରିଛନ୍ତି, ପତିଗୃହକୁ ଗଲାବେଳେ ସେମାନଙ୍କୁ ଆଲିଙ୍ଗନ କରି ବିଦାୟ ନେଇଛନ୍ତି,ମହର୍ଷି କଣ୍ୱ ମଧ୍ୟ ସେମାନଙ୍କୁ ସମ୍ବୋଧନ କରି ଶକୁନ୍ତଳାର ପତିଗୃହଯାତ୍ରା ବିଷୟ ଜଣାଇଛନ୍ତି, ସେମାନେ ପତ୍ରମୋଚନ ଛଳରେ ଅଶ୍ରୁ-ମୋଚନ କରିଛନ୍ତି, ମୃଗମୃଗୀମାନେ ତୃଣଗ୍ରାସ ଛାଡ଼ିଦେଇଛନ୍ତି––ଏ ସବୁର

ବର୍ଣ୍ଣନାରେ ମାନବାତ୍ମାର ଯେଉଁ ସ୍ୱରୂପ ପ୍ରକଟିତ, ତାହା ହୁଏ ତ ଆଧୁନିକ ମନୁଷ୍ୟ ଉପଲବ୍‌ଧି କରିପାରିବ ନାହିଁ । କାରଣ, ଜଗତ ସହିତ ତାଦାତ୍ମ୍ୟ-ଭାବନା ଆଧୁନିକ ମଣିଷର କ୍ରମଶଃ ହ୍ରାସ ପାଉଛି ।

ଦୁଷ୍ୟଂତଙ୍କ ଚରିତ୍ରକୁ କବି ମହନୀୟ କରି ତୋଳିଛନ୍ତି । ପ୍ରଣୟିନୀଙ୍କୁ ଝୁରି ଝୁରି ଦୁଷ୍ୟଂତ ବେଦନାବିହ୍ୱଳ ହୋଇପଡ଼ିଛନ୍ତି ସତ, କିନ୍ତୁ ମାଧବ୍ୟ ( ବିଦୂଷକ ) ଯେତେବେଳେ ଅଦୃଶ୍ୟ ସତ୍ତାଦ୍ୱାରା ଆକ୍ରାନ୍ତ ହୋଇ ଚିତ୍କାର କଲେ, ସେତେବେଳେ ସେ ସହସା ବୀରୋଚିତ ତେଜୋବୀର୍ଯ୍ୟରେ ଉଗ୍ର ରୂପ ଧାରଣ କରିଛନ୍ତି । ବୀର ପୁରୁଷମାନଙ୍କର ଏହାହିଁ ଲକ୍ଷଣ । ସେମାନେ ପତ୍ନୀଠାରେ ଯେତିକି କୋମଳ, ଶତ୍ରୁଠାରେ ସେତିକି କଠୋର । ତପୋବନରେ ଶକୁନ୍ତଳାଙ୍କ ସହିତ ଆସନ୍ନ ମିଳନକୁ ବିଘ୍ନିତ କରି କବି ଦୁଷ୍ୟନ୍ତଙ୍କର ପ୍ରଣୟ ଅପେକ୍ଷା ପୌରୁଷ ଦିଗଟିକୁ ଅଧିକ ଉଜ୍ଜ୍ୱଳ କରିଛନ୍ତି । ଦୁଷ୍ୟନ୍ତ ଥିଲେ ଯେମିତି ଶୂର, ସେମିତି ସୁଶାସକ । ରାଜକାର୍ଯ୍ୟ କରି ଶ୍ରାଂତକ୍ଳାଂତ ହେଲେହେଁ ସେ, କୌଣସି ବିଦ୍ୱାନ୍‌ ସଜ୍ଜନ ଉପସ୍ଥିତ ହେଲେ, ସଙ୍ଗେ ସଙ୍ଗେ ତାଙ୍କୁ ସାକ୍ଷାତ୍‌ କରିବାର ଏବଂ ତାଙ୍କର ପୂଜା, ଅଭ୍ୟର୍ଥନାର ବ୍ୟବସ୍ଥା କରୁଥିଲେ । ମୂଲ୍ୟବୋଧ ପ୍ରତିଷ୍ଠାର ଏହା ହିଁ ନିଦାନ । ସାଧାରଣ ଲୋକେ ବିଦ୍ୱାନ୍ ସଜ୍ଜନମାନଙ୍କୁ କାହିଁକି ସମ୍ମାନ ଦିଅଂତେ ? ସେମାନଙ୍କ ଦୃଷ୍ଟିରେ ଯାହା ସୁଖ, ସ୍ୱାଛନ୍ଦ୍ୟ ଓ ଆନନ୍ଦ, ସେଇଥିରେ ତ ସେମାନେ ବିଭୋର । ବିଦ୍ୱାନ୍ ସଜ୍ଜନ ଯେ ପୂଜନୀୟ, ଏ ଧାରଣା ସେମାନଙ୍କର ଆସେ ରାଜା ବା ଶାସକଙ୍କର ଆଚରଣରୁ । ଦୁଷ୍ୟନ୍ତ ଥିଲେ ଆଚରଣଶୀଳ ରାଜା । ମୁନିଋଷି-ମାନେ ତାଙ୍କୁ କିଛି କହିବାକୁ ଇଚ୍ଛା କଲେ ସେ 'ଆଦେଶ ଦିଅନ୍ତୁ' ବୋଲି କହୁଥିଲେ । ଏଭଳି ବିନୟ ପୌରୁଷ-ସମ୍ପନ୍ନ ପୁରୁଷମାନଙ୍କର ହିଁ ଲକ୍ଷଣ ।

କଞ୍ଚୁକୀଙ୍କ ଉକ୍ତିରେ 'ଲୋକତନ୍ତ୍ରାଧିକାର' ଶବ୍ଦଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ରାଜା ମୁହୂର୍ତ୍ତେମାତ୍ର ହେଲା ଧର୍ମାସନରୁ ( ସିଂହାସନରୁ ) ଉଠି-ଆସିଛନ୍ତି ଏବଂ ଶ୍ରାନ୍ତକ୍ଳାନ୍ତ ହୋଇ ଟିକିଏ ବିଶ୍ରାମ ନେଉଛନ୍ତି, ତାଙ୍କୁ ପୁଣି କିପରି ମୁନିମାନଙ୍କ ଆଗମନ ବିଷୟ ଜଣାଇ ଅଧିକ କ୍ଳାନ୍ତ କରିବେ, ଏହା ଭାବି ଭାବି କଞ୍ଚୁକୀ ମନକୁ ମନ ସିଦ୍ଧାନ୍ତ ଗ୍ରହଣ କରିଛନ୍ତି—

" ଅଥବା ଅବିଶ୍ରମୋଽୟଂ ଲୋକତନ୍ତ୍ରାଧିକାରଃ " ( ଲୋକତନ୍ତ୍ର-ଅଧିକାରରେ ବିଶ୍ରାମ ବା କାହିଁ ? ) ( ୫ମ ଅଙ୍କ—୧୧୭ ପୃଷ୍ଠା ) ଏହି 'ଲୋକତନ୍ତ୍ର'ର ସ୍ୱରୂପ କଅଣ ଥିଲା, ତାହା ଐତିହାସିକମାନଙ୍କର ଅନୁସନ୍ଧେୟ । ଯେଉଁ କବି ଓ ପଣ୍ଡିତମାନେ ରାଜତନ୍ତ୍ରର ରାଜାମାନଙ୍କ ଦରବାରରେ ଆସନ ଲାଭ କରୁଥିଲେ, ସେଇମାନଙ୍କୁ 'ଦରବାରୀ' କବି, ପଣ୍ଡିତ କୁହାଯାଇ ପାରେ । କାରଣ, ସେମାନଙ୍କ କବିତ୍ୱ ବା ପାଣ୍ଡିତ୍ୟର ଲକ୍ଷ୍ୟ ଥିଲା ରାଜାଙ୍କୁ ଖୁସି କରିବା । କାଳିଦାସ ଯଦି ବା କୌଣସି ରାଜାଙ୍କ ଦରବାରରେ ଆସନ ଲାଭ କରିଥିବେ, ସେହି ରାଜା 'ଲୋକତନ୍ତ୍ର'ର ରାଜା ହୋଇଥିବେ ।

ଦୁଷ୍ୟନ୍ତଙ୍କର ସୁଶାସନ ପ୍ରସଙ୍ଗରେ ଦୁଇଟି କଥା ମନରେ ଖଟକା ସୃଷ୍ଟି କରେ । ପ୍ରଥମଟି ହେଉଛି ଦୁଷ୍ୟନ୍ତଙ୍କର ଜଣେ ଶାଳକ ନଗରପାଳ ଥିଲେ ଏବଂ ଦ୍ୱିତୀୟଟି ହେଉଛି, ଉକ୍ତ ନଗରପାଳ ଓ ତାଙ୍କର ଅଧସ୍ତନ କର୍ମଚାରୀ (ରକ୍ଷୀ) ଦ୍ୱୟ ଏକ ଧୀବରଠାରୁ ଉତ୍କୋଚ ନେଇଥିଲେ । ( ଷଷ୍ଠ ଅଙ୍କ—ବିଷ୍କମ୍ଭକ—୧ ) ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ରାଜା ବା କେହି କ୍ଷମତାସୀନ ବ୍ୟକ୍ତି ନିଜର ଆତ୍ମୀୟସ୍ୱଜନଙ୍କୁ କିଛି ସୁବିଧାସୁଯୋଗ ଦେବା କାଳେ କାଳେ ଦେଖାଯାଇଛି । ଏହାକୁ କେହି ସମ୍ପୂର୍ଣ୍ଣ ପରିହାର କରିଛନ୍ତି ବା କରିପାରିବେ ବୋଲି କୁହାଯାଇ ନ ପାରେ । ଦ୍ୱିତୀୟ କଥାଟି ହେଉଛି, ଦୁଷ୍ୟନ୍ତଙ୍କ ଭଳି ସୁଶାସକଙ୍କ ରାଜତ୍ୱରେ ମଧ୍ୟ ଉତ୍କୋଚ ନେବା ( ସୁମନୋମୂଲ୍ୟଂ ) ଥିଲା । ମଣିଷ ଯେତେବେଳେ ନିଜକୁ ଦାସ ମନେକରେ, ସେତେବେଳେ ଉତ୍କୋଚ ଗ୍ରହଣ କରେ । ଅବଶ୍ୟ, ଯେ କାର୍ଯ୍ୟଟି କରିଦେଇ ପାଞ୍ଚ ଦଶ ଟଙ୍କା ବା ମିଠେଇ କିଛି ନିଏ, ତାହା ତାର ପାରିତୋଷିକ ଗ୍ରହଣ ମାତ୍ର । ସେ ଯାହା ହେଉ, କେତେକ ଦାସଙ୍କର ଏହି ଦାସୋଚିତ ଦୁର୍ବଳତା ବୋଧ ହୁଏ କାଳେ କାଳେ ରହିବ ।

ଐତିହାସିକ ଦୃଷ୍ଟିରୁ ଅଭିଜ୍ଞାନ ଶାକୁନ୍ତଳର ଆଉ ଗୋଟିଏ ବିଷୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତାହା ହେଉଛି, 'ଯବନୀ'ମାନେ ମହାରାଜା ଦୁଷ୍ୟଂତଙ୍କର ଦେହରକ୍ଷୀ ଥିଲେ । " ଏଷ ବାଣାସନହସ୍ତାଭି ର୍ଯବନୀଭି ର୍ବନପୁଷ୍ପମାଳାଧାରିଣୀଭିଃ ପରିବୃତଃ ଇତ ଏବାଗଚ୍ଛତି ପ୍ରିୟବୟସ୍ୟଃ । "

( ହେଇ ତ, ପ୍ରିୟ ବନ୍ଧୁ ଏଣିକି ଆସୁଛନ୍ତି । ଯବନୀମାନେ ହାତରେ ଧନୁ ଧରି, ବନଫୁଲର ମାଳ ପିନ୍ଧି, ତାଙ୍କୁ ପରିବେଷ୍ଟନ କରିଛନ୍ତି । )

( ପୃଷ୍ଠା ୩୬–୩୭ )

ଦୁଃଖାଭିଭୂତ ଦୁଷ୍ୟଂତଙ୍କୁ ଉତ୍ତେଜିତ କରିବା ଉଦ୍ଦେଶ୍ୟରେ ମାତଳି ଯେତେବେଳେ ଅଦୃଶ୍ୟ ଭବରେ ବିଦୂଷକ ମାଧବ୍ୟଙ୍କୁ ଆକ୍ରମିତ କରିଛନ୍ତି, ଏବଂ ମାଧବ୍ୟ 'ରକ୍ଷା କର, ରକ୍ଷା କର' ବୋଲି ଚିତ୍କାର କରିଛନ୍ତି, ସେତେବେଳେ ଦୁଷ୍ୟନ୍ତ 'ଧନୁ ଦିଅ' ବୋଲି କହନ୍ତେ ଜଣେ 'ଯବନୀ' ତାଙ୍କ ହସ୍ତକୁ ହସ୍ତତ୍ରାଣ ସହିତେ ଧନୁ ବଢାଇ ଦେଇଛନ୍ତି । ( ୧୮୮–୧୮୯ ପୃଷ୍ଠା ) କାଳିଦାସ ଯେଉଁ ରଜାଙ୍କ ପୃଷ୍ଠପୋଷକତା ଲଭ କରିଥିଲେ, ସମ୍ଭବତଃ ସେ 'ଯବନ' ଜାତିଙ୍କ ସହିତ ସଂପୃକ୍ତ ଥିଲେ । 'ଯବନୀ' ଶବ୍ଦ କେଉଁ ଜାତିର ସ୍ତ୍ରୀଙ୍କୁ ବୁଝାଉଥିଲା ଏବଂ ସେମାନେ କିପରି ହିନ୍ଦୁ ରଜାଙ୍କର ଦେହରକ୍ଷୀ ଭଳି ଗୁରୁତ୍ୱପୂର୍ଣ୍ଣ ପଦରେ ନିଯୁକ୍ତ ହୋଇଥିଲେ, ତାହା ଐତିହାସିକମାନଙ୍କର ଅନୁସନ୍ଧେୟ ।

ଅଭିଜ୍ଞାନ ଶାକୁନ୍ତଳରୁ ତଦାନୀନ୍ତନ ନାଟ୍ୟକଳାର ଉତ୍କର୍ଷ ସୂଚିତ ହୁଏ । " ତତଃ ପ୍ରବିଶତି ଆସନସ୍ଥୋ ରଜା " ( ତା'ପରେ ଆସନସ୍ଥ ରଜାଙ୍କର ପ୍ରବେଶ ) ' ପ୍ରବିଶତଃ କୁସୁମାବଚୟଂ ନାଟୟନ୍ତ୍ୟୌ ସଖ୍ୟୌ ' ( ଫୁଲତୋଳା ଅଭିନୟରେ ସଖୀଦ୍ୱୟଙ୍କର ପ୍ରବେଶ ) ଏଭଳି ନିର୍ଦ୍ଦେଶନାଗୁଡ଼ିକରୁ ମନେହୁଏ,ସେତେବେଳେ କୌଣସି ପ୍ରକାର ଘୂର୍ଣ୍ଣାୟମାନ ରଂଗମଞ୍ଚ ଥିଲା । ତାହା ନ ହୋଇଥିଲେ ଆସନରେ ବସିଥିବା ରଜା ବା ତପୋବନରେ ଫୁଲ ତୋଳୁଥିବା ସଖୀଦ୍ୱୟ ପ୍ରବେଶ କରନ୍ତେ କିପରି ? ଅପ୍ସରା ସାନୁମତୀ ଯେପରି ଭବରେ ପଶ୍ଚାତାପବିକ୍ଷୁବ୍ଧ ଦୁଷ୍ୟଂତଙ୍କର ଆଳାପ ଶୁଣିଛନ୍ତି ଏବଂ ନିଜେ ସ୍ୱଗତ ଉକ୍ତି ପ୍ରକାଶ କରିଛନ୍ତି, ସେଭଳି ଦୃଶ୍ୟ ଦେଖାଇବା ଗତିଶୀଳ ରଙ୍ଗମଞ୍ଚ ବିନା ସମ୍ଭବ ହେବ କିପରି ? (ଷଷ୍ଠ ଅଙ୍କ) ସେହିପରି, ରଥାରୂଢ ରଜାଙ୍କର ମୃଗ ପଛରେ ଧାବନ ଏବଂ ସାରଥି ସହିତ ସଂଳାପ ଗତିଶୀଳ ରଙ୍ଗମଞ୍ଚର ସୂଚନା ଦିଏ । ଅଭିଜ୍ଞାନଶାକୁନ୍ତଳ ଯେ କେବଳ ପଠନ ଉଦ୍ଦେଶ୍ୟରେ ଲିଖିତ ହୋଇଥିଲା, ଏହା କହିବା ଠିକ୍

ହେବନାହିଁ । କାରଣ, ପ୍ରସ୍ତାବନାରେ ସୂତ୍ରଧାର ଓ ନଟୀଙ୍କର ସଂଳାପରୁ ଏହାର 'ପ୍ରୟୋଗ' ଅର୍ଥାତ୍ ଅଭିନୀତ ହେବା ଉଦ୍ଦେଶ୍ୟ ସୁସ୍ପଷ୍ଟ ।

ନାଟକମାତ୍ରେ କାବ୍ୟଧର୍ମୀ, ତାହା ପ୍ରାଚୀନ ନାଟକ ହେଉ ବା ଆଧୁନିକ ନାଟକ ହେଉ । ସଂଳାପ, ଚରିତ୍ର, କଥାବସ୍ତୁ ପ୍ରଭୃତି ଦୃଷ୍ଟିରୁ କୌଣସି ନାଟକ ସମ୍ପୂର୍ଣ୍ଣ ବାସ୍ତବ ନୁହେଁ । ଦୈନନ୍ଦିନ ଜୀବନରେ ଲୋକେ ଯାହା କହନ୍ତି ଏବଂ ଯେପରି କହନ୍ତି, ନାଟ୍ୟରେ ଠିକ୍ ତାହା ଏବଂ ସେପରି କହନ୍ତିନାହିଁ । ସେମାନଙ୍କ ଭାଷା ତଥା ଭାବରେ କିଛି କଳ୍ପନା ରହେ । ନାଟକର ଭାଷା ନାଟ୍ୟକାରର ହିଁ ଭାଷା, ପ୍ରକୃତ ଚରିତ୍ରଙ୍କର ନୁହେଁ ; ନାଟକରେ ଉପସ୍ଥାପିତ ଯେତେ ଭାବ,ସେସମସ୍ତ ନାଟ୍ୟକାରର ହିଁ ଭାବ ; ନାଟକର କଥାବସ୍ତୁ ନାଟ୍ୟକାରର ହିଁ ନିଜ ସୃଷ୍ଟି । ଲୋକେ ବାସ୍ତବର ପ୍ରତିରୂପରୁ ଯେଉଁ ଆନନ୍ଦ ପାଆନ୍ତି, ବାସ୍ତବରୁ ସେହି ଆନନ୍ଦ ପାଆନ୍ତିନାହିଁ । ଚିତ୍ରରେ ଅଙ୍କିତ ସୂର୍ଯ୍ୟାସ୍ତର ଦୃଶ୍ୟ ଦେଖି ଯେପରି ମୁଗ୍ଧ ହୁଅନ୍ତି, ବାସ୍ତବ ସୂର୍ଯ୍ୟାସ୍ତର ଦୃଶ୍ୟ ଦେଖି ସେପରି ମୁଗ୍ଧ ହୁଅନ୍ତି ନାହିଁ । ନାଟ୍ୟରେ କୌଣସି ଦୃଶ୍ୟ ଯେପରି ଆନନ୍ଦ ଦିଏ, ବାସ୍ତବ ଦୃଶ୍ୟ ସେପରି ଆନନ୍ଦ ଦିଏନାହିଁ । ଯାହା ଅନୁକୃତି ବା ପ୍ରତିରୂପ, ସେଥିରେ କଳ୍ପନା ଅବଶ୍ୟମ୍ଭାବୀ । ପୂର୍ବକାଳ ନାଟକରେ ଯେ ପାତ୍ରପାତ୍ରୀମାନେ ଗୀତରେ କଥାବାର୍ତ୍ତା କରୁଥିଲେ, ସ୍ୱଗତ ଭାବରେ ବା ଶୂନ୍ୟକୁ ଚାହିଁ କଥାବାର୍ତ୍ତା କରୁଥିଲେ, ବା ବର୍ତ୍ତମାନ ନାଟକରେ ମଧ୍ୟ ଗୀତ, ବାଦ୍ୟ ଓ ନୃତ୍ୟ ପ୍ରଭୃତିର ବ୍ୟବସ୍ଥା ଅଛି, ଏ ସବୁ କବିତ୍ୱସୁଲଭ କଳ୍ପନାର ବିଭିନ୍ନ ଦିଗ ମାତ୍ର । ତେଣୁ ନାଟକକୁ ଦୃଶ୍ୟକାବ୍ୟ କୁହାଯାଏ । ଅଭିଜ୍ଞାନଶାକୁନ୍ତଳରେ ନାଟକତ୍ୱ ଓ କାବ୍ୟତ୍ୱ, ଉଭୟର ମଧୁର ସମନ୍ୱୟ ଘଟିଛି । ଏଭଳି ସମନ୍ୱୟ ଆଜି ପର୍ଯ୍ୟନ୍ତ ଭାରତୀୟ ନାଟକର ଆଦର୍ଶ ହୋଇ ରହିଛି ।

'ବିଷ୍କମ୍ଭକ' ନାଟକର କଥାବସ୍ତୁକୁ ଗତିଶୀଳ କରାଇବାର ଏକ କୌଶଳ । କଥାବସ୍ତୁର ସମସ୍ତ ଘଟଣା ପ୍ରତ୍ୟକ୍ଷ ଭାବରେ ରଙ୍ଗମଞ୍ଚ ଉପରେ ଦର୍ଶାଇବା ସମ୍ଭବ ହୁଏନାହିଁ, କିମ୍ବା ଦର୍ଶାଇବାକୁ ହେଲେ ବହୁ ସମୟ ଆବଶ୍ୟକ ହୁଏ । ତେଣୁ କୌଣସି ସଂପୃକ୍ତ ପାତ୍ରପାତ୍ରୀଙ୍କ ଆଳାପ ଛଳରେ ଗତ ଘଟଣା କିମ୍ବା ଭବିଷ୍ୟତରେ ଘଟିବାକୁ ଥିବା ଘଟଣା ବ୍ୟକ୍ତ ବା ସୂଚିତ କରି ଦିଆହୁଏ । ଫଳରେ, ଦର୍ଶକମାନେ ଘଟଣାଧାରା ଜାଣି-

ପାରନ୍ତି । ଏହି ପ୍ରୟୋଗ ନିମ୍ନ ଶ୍ରେଣୀର ପାତ୍ରପାତ୍ରୀଙ୍କ ଦ୍ୱାରା ସମ୍ପାଦିତ ହେଲେ 'ପ୍ରବେଶକ' କୁହାଯାଏ । ନାଟ୍ୟକଳାର ଏହିପରି ବିଭିନ୍ନ ପ୍ରୟୋଗ-କୌଶଳ ସଂସ୍କୃତ ଅଳଙ୍କାରଶାସ୍ତ୍ରମାନଂକରେ ଆଲୋଚିତ ହୋଇଛି ।

ସଂସ୍କୃତ ନାଟକରେ ନାରୀମାନଂକର ଏବଂ ନିମ୍ନ ଶ୍ରେଣୀର ପାତ୍ରପାତ୍ରୀମାନଂକର ଭାଷା ପ୍ରାକୃତ । 'ପ୍ରାକୃତର' ର ଅର୍ଥ ପ୍ରକୃତି ( ଜନ-ସାଧାରଣ ) ଙ୍କର ଭାଷା ଅର୍ଥାତ୍ କଥିତ ଭାଷା । ସଂସ୍କୃତ ଥିଲା ଲେଖାପଢ଼ାର ଭାଷା । ଏକଦା ସଂସ୍କୃତ ମଧ୍ୟ କଥିତ ଭାଷା ଥିଲା । ତାହା ପାଣିନି ପ୍ରମୁଖ ବ୍ୟାକରଣକାରମାନଙ୍କ ବ୍ୟାକରଣ ନିୟମରେ ଆବଦ୍ଧ ହୋଇ ଏକରୂପ ହୋଇ ରହିଲା । କିନ୍ତୁ ଲୋକମାନଂକ ମୁଖର ଭାଷା ବଦଳିବାରେ ଲାଗିଲା । କ୍ରମେ ପରିବର୍ତ୍ତିତ କଥିତ ଭାଷାରେ ସାହିତ୍ୟ ପ୍ରକାଶ ପାଇଲା । ସଂସ୍କୃତ ନାଟକରେ ମଧ୍ୟ କଥିତ ଭାଷା ସ୍ଥାନ ଲାଭ କଲା । କିନ୍ତୁ କଥିତ ଭାଷା ( ପ୍ରାକୃତ ) କ୍ରମଶଃ ପରିବର୍ତ୍ତିତ ହେବା ଫଳରେ ଏବଂ ସଂସ୍କୃତ ସର୍ବଦା ଏକରୂପ ରହିବା ଫଳରେ ପ୍ରାକୃତ ଓ ସଂସ୍କୃତ ମଧ୍ୟରେ ବ୍ୟବଧାନ ବୃଦ୍ଧି ପାଇଲା । ତେଣୁ ସଂସ୍କୃତ ନାଟକରେ ପ୍ରାକୃତସଂଳାପର ପାଖେ ପାଖେ ତାହାର ସଂସ୍କୃତ ଅନୁବାଦ ଦିଆଯିବାର ପଦ୍ଧତି ପ୍ରଚଳିତ ହେଲା । କ୍ରମେ ପଦ୍ଧତି ଏପରି ହୋଇଗଲା ଯେ, କବି-ନାଟ୍ୟକାରମାନେ ପ୍ରାକୃତରେ ସଂଳାପ ଦେବାକୁ ଯାଇ ଆଗେ ସଂସ୍କୃତରେ ସଂଳାପ ରଚନା କଲେ ଏବଂ ତାହାର ପ୍ରାକୃତ ରୂପାଂତର ମାତ୍ର ଦେଲେ । ଫଳରେ ପ୍ରାକୃତ ଭାଷା/ଶୈଳୀ ସଂସ୍କୃତ ଭାଷା/ଶୈଳୀର ଛଦ୍ମରୂପ ହୋଇଗଲା । ସେ ଯାହା ହେଉ, ସଂସ୍କୃତ କବି ନାଟ୍ୟକାରମାନେ ଯେ ଲୋକମୁଖର ଭାଷାର ଗତିଶୀଳତା ହୃଦୟଙ୍ଗମ କରି ଆଗେ ସଂସ୍କୃତ ନାଟକରେ ତାହାକୁ ସ୍ଥାନ ଦେଲେ, ଏହା ସେମାନଙ୍କର କମ୍ ପ୍ରଶସ୍ତ ମନୋଭବର ପରିଚାୟକ ନୁହେଁ ।

ଅଭିଜ୍ଞାନଶାକୁନ୍ତଳ ପରି ଉଚ୍ଚ କୋଟୀର ନାଟକ ବିରଳ । ଏଥିରେ ମନୁଷ୍ୟକୁ ଚିନ୍ତାଶୀଳ, ମନନଶୀଳ କଲା ଭଳି ବହୁ ଉପାଦାନ ରହିଛି । ମନୁଷ୍ୟର ହୃଦୟବତ୍ତା—ସ୍ନେହ, ପ୍ରେମ, ଅନୁକମ୍ପା, ଅନୁତାପର ଏହା ଉତ୍କୃଷ୍ଟ ନିଦର୍ଶନ । ହିଂସା, ଦ୍ୱେଷ, ଛଳ, ଚତୁରତା, ଏଥିରେ ନାହିଁ, ଜଣକର ସ୍ୱାର୍ଥପରତାରୁ ଆଉ ଜଣକର ଦୁଃଖଭୋଗ ନାହିଁ । ଏଥିରେ ଦୁଃଖର

କାରଣ ହେଉଛି ଦୈବ ବା ଦୁର୍ଭାଗ୍ୟ, ଯାହା କି ମନୁଷ୍ୟର ଆୟତ୍ତାଧୀନ ନୁହେଁ ।

ପରମେଶ୍ୱରଙ୍କ ଅପାର କରୁଣାରୁ ମୋ ପରି ନିଃସ୍ୱ, ରୋଗଗ୍ରସ୍ତ ଓ ପରାଧୀନବୃତ୍ତି ବ୍ୟକ୍ତି କାଳିଦାସ ଗ୍ରନ୍ଥାବଳୀର ତୃତୀୟ ଭାଗ ପ୍ରକାଶ କରିବାକୁ ସମର୍ଥ ହୋଇଛି । ପ୍ରଥମ ଓ ଦ୍ୱିତୀୟ ଭାଗରେ ମୂଳ ରଚନା ଯେପରି ଦେବନାଗରୀ ଓ ଓଡ଼ିଆ, ଉଭୟ ଲିପିରେ ଦିଆଯାଇଛି, ଏଥିରେ ସେପରି ହୋଇପାରିନାହିଁ । କାରଣ, ସଂସ୍କୃତ ନାଟକରେ କେତେକ ଚରିତ୍ରଙ୍କର ଭାଷା ପ୍ରାକୃତ ଏବଂ ସେମାନଙ୍କର ପ୍ରାକୃତସଂଳାପ ପାଖେ-ପାଖେ ସଂସ୍କୃତ ରୂପାନ୍ତର ଦିଆଯାଇ ଥାଏ । କୌଣସି ଚରିତ୍ରର ସଂଳାପକୁ ପ୍ରାକୃତ ଓ ସଂସ୍କୃତରେ ଦେବନାଗରୀ ଲିପିରେ ଦେଇ, ପୁଣି ସେହି ପ୍ରାକୃତ ଓ ସଂସ୍କୃତ ସଂଳାପକୁ ଓଡ଼ିଆ ଲିପିରେ ଦେଇଥିଲେ ପୁସ୍ତକର ବାମ ପାଖ ପୃଷ୍ଠା ଓ ଡାହାଣ ପାଖ ପୃଷ୍ଠାମାନଙ୍କ ମଧ୍ୟରେ ସ୍ଥାନସାମ୍ୟ ରହି ନ ଥାନ୍ତା । ଦେବ-ନାଗରୀ ଲିପି ହିଁ ସଂସ୍କୃତର ସ୍ୱାଭାବିକ ଲିପି । ମହାକବି କାଳିଦାସଙ୍କ ରଚନା ମାଧ୍ୟମରେ ଓଡିଶାର ପାଠକ ପାଠିକାମାନେ ଦେବନାଗରୀ ଲିପି ସହିତ ପରିଚିତ ହୁଅନ୍ତୁ, ଏହି ଉଦ୍ଦେଶ୍ୟରେ ହିଁ ମୂଳ ରଚନାକୁ କେବଳ ଓଡ଼ିଆ ଲିପିରେ ନ ଦେଇ, କେବଳ ଦେବନାଗରୀ ଲିପିରେ ଦେବାର ଉଦ୍ୟମ କରାହୋଇଛି ।

ଭାରତ ସରକାରଙ୍କ ଶିକ୍ଷା ଓ ସମାଜ ମଙ୍ଗଳ ବିଭାଗ ଏହି ଗ୍ରନ୍ଥର ପ୍ରକାଶନ ଦିଗରେ ଆର୍ଥିକ ସହାୟତା ପ୍ରଦାନ କରିଛନ୍ତି । ତେଣୁ ମୁଁ ଭାରତ ସରକାରଙ୍କୁ ବିନମ୍ର ଭାବରେ କୃତଜ୍ଞତା ଜ୍ଞାପନ କରୁଛି । ।। ଇତି ।।

ବିନୀତ

**ଧନେଶ୍ୱର ମହାପାତ୍ର**

ତା ୨୬ । ୧ । ୮୩ ଖ୍ରୀ

ସାଧାରଣତନ୍ତ୍ର ଦିବସ

# अभिज्ञानशाकुन्तलम्

या सृष्टिः स्रष्टुराद्या, वहति विधिहुतं या हविर्, या च होत्री,
ये द्वे कालं विधत्तः, श्रुतिविषयगुणा या स्थिता व्याप्य विश्वम् ।
यामाहुः सर्वबीजप्रकृतिरिति, यया प्राणिनः प्राणवन्तः,
प्रत्यक्षाभिः प्रपन्नस्तनुभिरवतु वस्ताभिरष्टाभिरीशः ॥ १ ॥

( नान्द्यन्ते )

॥ अथ प्रस्तावना ॥

( प्रविशति सूत्रधारः )

सूत्र०—(नेपथ्याभिमुखमवलोक्य) आर्ये ! यदि नेपथ्यविधानमवसितम्, इत आगम्यताम् ।

नटी—(प्रविश्य) अज्ज ! इयं म्हि । ( आर्ये । इयमस्मि । )

सूत्र०—आर्ये । अभिरुपभूयिष्ठा परिषदियम् । अत्र खलु कालिदास-कथितवस्तुना अभिज्ञानशाकुन्तल-नामधेयेन नवेन नाटके-नोपस्थातव्यमस्माभिः । तत् प्रतिपात्रम् आधीयतां यत्नः ।

नटी— सुविहिदप्पओअदाए अज्जस्स ण किं वि परिहाइस्सदि ।
( सुविहितप्रयोगतया आर्यस्य न किमपि परिहास्यते । )

सूत्र०—आर्ये कथयामि ते भूतार्थम् ,—

आ परितोषाद् विदुषां न साधु मन्ये प्रयोगविज्ञानम् ।
बलवदपि शिक्षितानामात्मन्यप्रत्यय चेतः ॥ २ ॥

नटी—अज्ज ! एवं णेदं । दाणिं अणंतरकरणिज्जं आणवेदु अज्जो ।
( आर्य ! एवं न्विदम् । अनन्तरकरणीयम् इदानीमार्य आज्ञापयतु । )

# ଅଭିଜ୍ଞାନ ଶାକୁନ୍ତଳ

ସୃଷ୍ଟିକରତାଙ୍କ ଯାହା ପ୍ରଥମ ସୃଜନ, ( ଜଳ )
କରନ୍ତି ଯେ ଯଥାବିଧି ଆହୁତି ବହନ, ( ଅଗ୍ନି )
ଯଜ୍ଞ ସଂପାଦନ ଯେହୁ କରନ୍ତି ଆବର, ( ଯଜମାନ )
ଯେ ବେନି ବିଦିତ ବିଧାୟକ ସମୟର, ( ସୂର୍ଯ୍ୟ ଓ ଚନ୍ଦ୍ର )
ଗୁଣ ଯାହାର ଅଟଇ ଶ୍ରବଣବିଷୟ
ବିଦ୍ୟମାନ ଯେହୁ ବ୍ୟାପି ବ୍ରହ୍ମାଣ୍ଡନିଚୟ, ( ଆକାଶ )
ସର୍ବବୀଜ ଉପାଦାନ ଯାଠାରେ ନିହିତ, ( ବସୁଧା )
ଅଖିଳ ଜୀବ ଯା' ଯୋଗେ ରହନ୍ତି ଜୀବିତ, (ପବନ·)
ନୟନଗୋଚର ଏହି ଅଷ୍ଟ ରୂପଧାରୀ,
ରଖନ୍ତୁ ତୁମ୍ଭମାନଙ୍କୁ ଈଶ ଭୟହାରୀ । ୧ ।

( ନାନ୍ଦୀଗାନ )

। ପ୍ରସ୍ତାବନା ଆରମ୍ଭ ।

( ସୂତ୍ରଧାରଙ୍କର ପ୍ରବେଶ )

ସୂତ୍ରଧାର— ( ନେପଥ୍ୟ ଆଡକୁ ଦୃଷ୍ଟି ଦେଇ ) ପ୍ରିୟେ, ଯଦି ବେଶରଚନା ସରିଲଣି, ତେବେ ଏଣିକି ଆସ ।

ନଟୀ— (ପ୍ରବେଶ କରି) ଆର୍ଯ୍ୟପୁତ୍ର, ଏଇ ମୁଁ ଆସିଲି ।

ସୂତ୍ରଧାର— ଆର୍ଯ୍ୟେ, ଏହି ସଭରେ ମହାନ୍ ବିଦ୍ୱାନ୍‌ମାନେ ଉପସ୍ଥିତ ଅଛନ୍ତି । ଆଜି ଆମ୍ଭେମାନେ ଏଠାରେ କାଳିଦାସଙ୍କ ରଚିତ 'ଅଭିଜ୍ଞାନ ଶାକୁନ୍ତଳ' ନାମକ ନୂତନ ନାଟକ ଉପସ୍ଥାପନ କରିବା । ଏଥି ନିମନ୍ତେ ପ୍ରତ୍ୟେକ ପାତ୍ରଙ୍କ ଉପରେ ଦୃଷ୍ଟି ଦିଅ ।

ନଟୀ— ଆପଣ ସୁନ୍ଦର ରୂପେ ସମସ୍ତ ଆୟୋଜନ କରିଛନ୍ତି । ତେଣୁ ଏଥିରେ ଉପହାସର କିଛି ସମ୍ଭାବନା ନାହିଁ ।

ସୂତ୍ରଧାର— ତଥାପି ମୁଁ ଏକ ସତ୍ୟକଥା କହୁଛି—
ବିଦ୍ୱାନ୍‌ମାନଙ୍କର ଯେପର୍ଯ୍ୟନ୍ତ ସନ୍ତୋଷ ଜାତ ନ ହୋଇଛି,
ସେପର୍ଯ୍ୟନ୍ତ ଅଭିନୟ-କଳାକୁ ମୁଁ ସଫଳ ମନେ କରେ ନାହିଁ ।
ସୁଶିକ୍ଷିତ ବ୍ୟକ୍ତିମାନେ ମଧ୍ୟ ନିଜ ଉପରେ ବିଶ୍ୱାସ ସ୍ଥାପନ
କରିପାରନ୍ତି ନାହିଁ । ୨ ।

ନଟୀ— ତା ଠିକ୍ । ତେବେ ବର୍ତ୍ତମାନ କଅଣ କରିବାକୁ ହେବ, ଆଜ୍ଞା ଦିଅନ୍ତୁ ।

सूत्र०—किमन्यद् अस्याः परिषदः श्रुतिप्रसादनतः ।
ननु इममेव तावत्, अचिरप्रवृत्तम् उपभोगक्षमं ग्रीष्मसमय-मधिकृत्य गीयताम् । संप्रति हि—

सुभगसलिलावगाहाः पाटलसंसर्गिसुरभिवनवाताः ।
प्रच्छायसुलभनिद्रा दिवसाः परिणामरमणीयाः ॥ ३ ॥

नटी—तह । ( तथा । ) ( गायति )

ईसीसिचुंविआइं भमरेहिं सुउमारकेसरसिहाइं ।
ओदंसयंति दअमाणा पमदाओ सिरीषकुसुमाइं ॥४॥
( ईषदीषच्चुम्बितानि भ्रमरैः सुकुमारकेसरशिखानि ।
अवतंसयन्ति दयमानाः प्रमदाः शिरीषकुसुमानि ॥ )

सूत्र०—आर्ये ! साधु गीतम् । अहो रागलिखितचित्तवृत्तिः, आलिखित इव सर्वतो रङ्गः । तत् इदानीं कतमं प्रयोगमाश्रित्य एनमाराधयाम ?

नटी—णं अज्जमिस्सेहिं पढमं जेव्व आणत्तं अहिण्णाणसाउंदलं णाम अपुव्वं णाडअं पओए अहिकरीअदु त्ति । ( नन्वार्यमिश्रैः प्रथममेवाज्ञप्तम् अभिज्ञानशाकुन्तलं नाम अपूर्वं नाटकं प्रयोगे अधिक्रियतामिति । )

सूत्र०—आर्ये ! सम्यगनुबोधितोऽस्मि । ननु अस्मिन् क्षणे विस्मृतं खलु मया । ( नेपथ्याभिमुखमवलोक्य )

तवास्मि गीतरागेण हारिणा प्रसभं हृतः ।
एष राजेव दुष्यन्तः सारङ्गेणातिरंहसा ॥ ५ ॥

( निष्क्रान्तौ )

॥ इति प्रस्तावना ॥

— × —

ସୂତ୍ରଧାର— ବର୍ତ୍ତମାନ ଏହି ସଭାର ଶ୍ରବଣରଞ୍ଜନ କରିବା ବ୍ୟତୀତ ଆଉ ପ୍ରିୟ କାର୍ଯ୍ୟ କଅଣ ଅଛି ? ଅଳ୍ପଦିନ ହେଲା ତ ଉପଭୋଗ୍ୟ ଗ୍ରୀଷ୍ମ ଋତୁ ଆରମ୍ଭ ହୋଇଛି ।

ଏହି ଋତୁରେ ଜଳରେ ସ୍ନାନ କରିବା ଅତ୍ୟନ୍ତ ଆନନ୍ଦଦାୟକ । ବନର ବାୟୁ ପାଟଳପୁଷ୍ପର ସୌରଭରେ ସୁଗନ୍ଧିତ ହୋଇ ଉଠେ; ଛାଇରେ ଟିକିଏ ବସିଗଲେ ସଙ୍ଗେସଙ୍ଗେ ନିଦ ଲାଗିଆସେ ଏବଂ ସନ୍ଧ୍ୟା ସମୟ ଆରାମ ଦାନ କରେ । ୩ । ତାହେଲେ ଏଇ ଗ୍ରୀଷ୍ମ ଋତୁର ଅବଲମ୍ବନରେ ଗୀତଟିଏ ଗାଅ ।

ନଟୀ— ଆଚ୍ଛା ହେଉ, ( ଗାଇଲେ ) ।

କେଡେ ମନୋରମ ଶିରୀଷ କୁସୁମ
ସୁକୁମାର ତା'ର କେଶର
ଗୁଣୁ ଗୁଣୁ ସ୍ୱନେ ଅଳି ମୋଦ ମନେ
ସଧୀରେ ଚୁମ୍ବଇ ଅଧର,
ଯୁବତୀ, ଯତନେ ତା ତୋଳି ନିଅନ୍ତି,
ସୁକୋମଳ ଦଳ ଭଜିଯିବ ବୋଲି
ସଦୟେ ଭୂଷଣ କରନ୍ତି ।

ସୂତ୍ରଧାର— ପ୍ରିୟେ, ବେଶ୍ ଗାଇଛ । ରଙ୍ଗଭୂମିରେ ଉପସ୍ଥିତ ଥିବା ଦର୍ଶକ-ମଣ୍ଡଳିଙ୍କର ଚିତ୍ତବୃତ୍ତି ତୁମ ଗୀତର ମୂର୍ଚ୍ଛନାରେ ଏପରି ମଜ୍ଜିଯାଇଛି ଯେ, ସେମାନେ ଚିତ୍ରପ୍ରତିମା ଭଳି ଦିଶୁଛନ୍ତି । ତେବେ ବର୍ତ୍ତମାନ ଏହି ସଭାର ମନୋରଞ୍ଜନ ନିମନ୍ତେ କଅଣ କରିବା ?

ନଟୀ— ବର୍ତ୍ତମାନ ପରା ଆପଣ ଅଭିଜ୍ଞାନଶାକୁନ୍ତଳ ନାମକ ନୂତନ ନାଟକ ଅଭିନୟ କରିବାପାଇଁ ଆଦେଶ ଦେଇଥିଲେ ?

ସୂତ୍ର— ହଁ, ହଁ, ଠିକ୍ ମନେ ପକାଇଦେଲ । ଏଇକ୍ଷଣେ ମୁଁ ଭୁଲିଯାଇଥିଲି । କାରଣ ( ଅନ୍ତରାଳକୁ ଚାହିଁ )
ଏଇ ବେଗବାନ୍ ମୃଗଟି ରାଜା ଦୁଷ୍ୟନ୍ତଙ୍କୁ ଯେପରି ଆକୃଷ୍ଟ କରି ନେଇ-ଆସୁଛି, ମୁଁ ସେହିପରି ତୁମ ଗୀତର ମାଧୁର୍ଯ୍ୟରେ ଆକୃଷ୍ଟ ହୋଇଯାଇଥିଲି । ୫ ।

(ଉଭୟଙ୍କର ପ୍ରସ୍ଥାନ)

[ ପ୍ରସ୍ତାବନା ଶେଷ ]

—o—

# प्रथमोऽङ्कः

( ततः प्रविशति मृगानुसारी सशरचापहस्तो राजा रथेन सूतश्च )

सूतः—(राजानं मृगं चावलोक्य) आयुष्मन् !

कृष्णसारे ददच्चक्षुस्त्वयि चाधिज्यकार्मुके ।
मृगानुसारिणं साक्षात् पश्यामीव पिनाकिनम् ॥ ६ ॥

राजा—सूत ! दूरममुना सारङ्गेण वयमाकृष्टाः । अयं पुनरिदानीमपि—

ग्रीवाभङ्गाभिरामं मुहुरनुपतति स्यन्दने बद्धदृष्टिः
पश्चार्धेन प्रविष्टः शरपतनभयाद् भूयसा पूर्वकायम् ।
दर्भैरर्धावलीढैः श्रमविवृतमुखभ्रंशिभिः कीर्णवर्त्मा
पश्योदग्रप्लुतत्वाद् वियति बहुतरं स्तोकमुर्व्यां प्रयाति ॥ ७ ॥

तदेष कथमनुपतत एव प्रयत्नप्रेक्षणीयः संवृत्तः ?

सूतः—आयुष्मन् ! उद्घातिनी भूमिरिति मया रश्मिसंयमनाद् रथस्य मन्दीकृतो वेगः । तेन मृग एष विप्रकृष्टान्तरः संवृत्तः । संप्रति समदेशवर्तिनस्ते न दुरासदो भविष्यति ।

राजा—तेन हि मुच्यन्तामभीषवः ।

सूतः—यदाज्ञापयत्यायुष्मान् ( रथवेगं निरूप्य ) आयुष्मन् ! पश्य पश्य,—

मुक्तेषु रश्मिषु निरायतपूर्वकाया
निष्कम्पचामरशिखा निभृतोर्ध्वकर्णाः ।
आत्मोद्धतैरपि रजोभिरलङ्घनीया
धावन्त्यमी मृगजवाक्षमयेव रथ्याः ॥ ८ ॥

# ପ୍ରଥମ ଅଙ୍କ

( ହାତରେ ଧନୁର୍ବାଣ ଧରି ରଥ ଉପରେ ବସି ମୃଗ ପଛରେ ଧାଉଁଥିବା ରଜାଙ୍କର ପ୍ରବେଶ । ସାରଥି ରଥ ଚଳାଉଥିଲେ । )

ସାରଥି– ( ରଜାଙ୍କ ଆଡ଼େ ଏବଂ ମୃଗ ଆଡେ ଚାହିଁ ) ଆୟୁଷ୍ମନ୍ ! ଧନୁରେ ଗୁଣ ଚଢ଼ାଇ ଆପଣ ମୃଗ ପଛରେ ଧାବମାନ । ମୃଗ ପ୍ରତି ଏବଂ ଆପଣଙ୍କ ପ୍ରତି ଦୃଷ୍ଟି ଦେଇ ମୋର ବୋଧ ହେଉଛି, ସତେ ଯେପରି ସ୍ୱୟଂ ପିନାକୀ ମୃଗର ଅନୁଧାବନ କରୁଛନ୍ତି ! ୬ ।

ରଜା– ସାରଥି ! ଏହି ମୃଗ ମୋତେ ବହୁ ଦୂର ଘେନି ଆସିଲଣି । ବର୍ତ୍ତମାନ ମଧ୍ୟ—

ଏ ବାରମ୍ବାର ସୁନ୍ଦର ଭାବେ ଗ୍ରୀବା ବଙ୍କାଇ ପଶ୍ଚାଦ୍‌ଧାବିତ ରଥ ଆଡ଼କୁ ଚାହୁଁଛି ଏବଂ ପୁଣି ଜୋର୍‌ରେ ଧାଇଁବାକୁ ଲାଗୁଛି । ଶର ପଡ଼ିବା ଭୟରେ ଏହାର ଦେହର ପଛଭାଗ ଆଗଭାଗରେ ପଶିଗଲା ପରି ଜଣା ପଡୁଛି । ପରିଶ୍ରମ ହେତୁ ମୃଗର ମୁହଁ ଖୋଲା ରହିଛି ଏବଂ ସେଥିରୁ ଅର୍ଦ୍ଧଚର୍ବିତ କୁଶ ବାଟରେ ପଡ଼ି ପଡ଼ି ଯାଉଛି । ଦେଖ, ଅତ୍ୟନ୍ତ କ୍ଷିପ୍ର ଲମ୍ଫ ଦେଇ ଧାଉଁଥିବା ଯୋଗୁ ଏ ଅଧିକ କ୍ଷଣ ଶୂନ୍ୟରେ ଏବଂ ଅଳ୍ପକ୍ଷଣ ଭୂ-ପୃଷ୍ଠରେ ଯାଉଛି । ୭ ।

ଆରେ ! ମୁଁ ଏହାର ପଛରେ ଗୋଡାଉ ଗୋଡାଉ ଏ ଏତେ ଦୂରକୁ ଚାଲିଗଲାଣି ଯେ ବଡ କଷ୍ଟରେ ଦେଖା ପଡୁଛି !

ସାରଥି– ଆୟୁଷ୍ମନ୍ ! ଏ ପର୍ଯ୍ୟନ୍ତ ଭୂମି ଉଚ୍ଚ ନୀଚ ଥିବା ହେତୁ ମୁଁ ଅଶ୍ୱମାନଙ୍କ ଲଗାମ ଟାଣି ରଥର ଗତି ହ୍ରାସ କରି ଦେଇଥିଲି । ତେଣୁ ଏ ମୃଗ ଏତେ ଦୂର ଆଗକୁ ଚାଲିଗଲା । ବର୍ତ୍ତମାନ ସମତଳ ଭୂମି ପଡିଲାଣି, ଆଉ ବଞ୍ଚାଇ ଯିବ ନାହିଁ ।

ରଜା– ତାହା ହେଲେ ଅଶ୍ୱମାନଙ୍କର ଲଗାମ ଶିଥିଳ କରିଦିଅ ।

ସାରଥି– ଯଥାଜ୍ଞା ଆୟୁଷ୍ମନ୍ । ( ରଥର ବେଗ ଦେଖାଇ ) ଦେଖନ୍ତୁ ମହାରଜ, ଲଗାମ ଶିଥିଳ କରିଦିଅନ୍ତେ ଅଶ୍ୱମାନେ କିପରି ଶରୀରର ଅଗ୍ରଭାଗକୁ ପ୍ରସାରିତ କରି ଦଉଡ଼ିବାରେ ଲାଗିଛନ୍ତି । ସେମାନଙ୍କ ମସ୍ତକରେ ଥିବା ଚାମରଶିଖା ସ୍ଥିର ଭଳି ରହିଛି । ଆଉ ମଧ୍ୟ ନିଜର ପଦକ୍ଷେପରୁ ଉଠୁଥିବା ଧୂଳି ସେମାନଙ୍କୁ ସ୍ପର୍ଶ କରିପାରୁନାହିଁ । ମୃଗର କ୍ଷିପ୍ର ଗତିରେ ସତେ ଯେପରି ସେମାନେ ଈର୍ଷାପରାୟଣ ହୋଇ ଧାଇଁବାରେ ଲାଗିଛନ୍ତି । ୮ ।

राजा—( सहर्षम् ) सत्यम् ,अतीत्य हरितोऽपि हरीन् वर्तन्ते वाजिनः ।
तथा हि –

यदालोके सूक्ष्मं, व्रजति सहसा तद् विपुलतां
यदर्धे विच्छिन्नं, भवति कृतसंधानमिव तत् ।
प्रकृत्या यद् वक्रं, तदपि समरेखं, नयनयोर्
न मे दूरे किंचित् , क्षणमपि न पार्श्वे रथजवात् ॥ ६ ॥

सूत ! पश्यैनं व्यापाद्यमानम् । ( शरसंधानं नाटयति )

( नेपथ्ये )

भो भो राजन् ! आश्रममृगोऽयं न हन्तव्यो न हन्तव्यः ।

सूतः – (आकर्ण्यावलोक्य च) आयुष्मन् ! अस्य खलु ते बाणपातवर्तिनः कृष्णशारस्यान्तरे तपस्विन उपस्थिताः ।

राजा – ( ससंभ्रमम् ) तेन हि प्रगृह्यन्तां वाजिनः ।

सूतः – तथा । ( रथं स्थापयति )

( ततः प्रविशत्यात्मना तृतीयो वैखानसः )

वैखा० – (हस्तमुद्यम्य) राजन् ! आश्रम-मृगोऽयम् , न हन्तव्यः, न हन्तव्यः ।

द्विती० – न खलु न खलु बाणः सन्निपात्योऽयमस्मिन्
मृदुनि मृगशरीरे तूलराशाविवाग्निः ।

तृती० – क्व बत हरिणकानां जीवितं चातिलोलं
क्व च निशितनिपाता वज्रसाराः शरास्ते ॥ १० ॥

वैखा० – तत् साधु कृतसन्धानं प्रतिसंहर सायकम् ।
आर्तत्राणाय वः शस्त्रं न प्रहर्तुमनागसि ॥ ११ ॥

राजा –एष प्रतिसंहृतः । ( यथोक्तं करोति )

वैखा० – सदृशमेतत् पुरुवंशप्रदीपस्य ।

जन्म यस्य पुरोर्वंशे युक्तरूपमिदं तव ।
पुत्रमेवंगुणोपेतं चक्रवर्तिनमाप्नुहि ॥ १२ ॥

ରଜା– ( ଆନନ୍ଦରେ ) ଠିକ୍ ଠିକ୍ । ଏମାନେ ( ସୂର୍ଯ୍ୟ ଏବଂ ଇନ୍ଦ୍ରଙ୍କର ) ଶ୍ୟାମଳବର୍ଣ୍ଣ ଘୋଡାମାନଙ୍କୁ ମଧ୍ୟ ବଳିଗଲେଣି । ଦେଖ,

ଯାହା କ୍ଷଣକ ପୂର୍ବରୁ ଛୋଟ ଦେଖାଯାଉଥିଲା,
ତାହା ରଥର ବେଗ ହେତୁ ଶୀଘ୍ର ବଡ ଦେଖାଯାଉଛି । ଯାହାର
ମଝିରେ ଫାଙ୍କ ଅଛି, ତାହା ଲାଗିଗଲା ପରି ଜଣା ପଡୁଛି । ଯାହା
ପ୍ରକୃତରେ ବଙ୍କା, ତାହା ମଧ୍ୟ ସିଧା ପରି ଦେଖାଯାଉଛି । ରଥର
ବେଗ ହେତୁ ଚକ୍ଷୁର ଦୂରରେ କିଛି ରହିପାରୁ ନାହିଁ କିମ୍ବା କ୍ଷଣେ ପାଇଁ
ପାଖରେ ମଧ୍ୟ ରହିପାରୁନାହିଁ । ୯ ।

ଦେଖ ସାରଥି, ବର୍ତ୍ତମାନ ମୁଁ ଏହାକୁ ମାରିଲି ।

[ ଧନୁରେ ଶର ସନ୍ଧାନ କଲେ ]

[ ନେପଥ୍ୟ ]

ମହାରଜ, ମହାରଜ, ଏ ଆଶ୍ରମର ମୃଗ ବଧ୍ୟ ନୁହେଁ, ବଧ୍ୟ ନୁହେଁ ।

ସାରଥି– (ଶୁଣି ଏବଂ ନିରୀକ୍ଷଣ କରି) ଆୟୁଷ୍ମନ୍ ! ବର୍ତ୍ତମାନ ଆପଣଙ୍କ ବାଣ ଓ କୃଷ୍ଣସାର ମୃଗ ମଧ୍ୟରେ ତପସ୍ୱୀମାନେ ଆସି ଉପସ୍ଥିତ !

ରଜା– (ସମ୍ଭ୍ରମର ସହିତ) ତାହାହେଲେ ଅଶ୍ୱମାନଙ୍କୁ ଅଟକାଅ ।

ସାରଥି– ଆଚ୍ଛା ହେଉ । (ରଥ ଅଟକାଇଲେ)

[ ତା ପରେ ଶିଷ୍ୟଦ୍ୱୟଙ୍କ ସହିତ ଜଣେ ଋଷି ପ୍ରବେଶ କଲେ ]

ଋଷି– (ହସ୍ତ ଉତ୍ତୋଳନ କରି) ମହାରଜ, ଏ ଆଶ୍ରମ ମୃଗ ବଧ୍ୟ ନୁହେଁ, ବଧ୍ୟ ନୁହେଁ ।

ଦ୍ୱିତୀୟ–ତୁଳା ରାଶିରେ ଅଗ୍ନି ନିକ୍ଷେପ କଲା ଭଳି ଏ ମୃଗର କୋମଳ ଦେହରେ ଶରପାତ କରିବା ଉଚିତ ହେବନାହିଁ ।

ତୃତୀୟ–କାହିଁ ମୃଗଶିଶୁମାନଙ୍କର ଅତି ସୁକୁମାର ଜୀବନ, କାହିଁ ଆପଣଙ୍କର ତୀବ୍ର ବଜ୍ରକଠୋର ବାଣ ! ୧୦ ।

ଋଷି– ଆପଣଙ୍କର ଶସ୍ତ୍ର ବିପନ୍ନକୁ ତ୍ରାଣ କରିବା ନିମନ୍ତେ ଉଦ୍ଦିଷ୍ଟ, ନିର୍ଦ୍ଦୋଷକୁ ମାରିବା ନିମନ୍ତେ ଉଦ୍ଦିଷ୍ଟ ନୁହେଁ । ତେଣୁ ଆପଣ ଧନୁରେ ଯେଉଁ ଶର ସଂଯୋଗ କରିଛନ୍ତି, ତାହା କାଢିନିଅନ୍ତୁ । ୧୧ ।

ରଜା– ଏଇ, କାଢି ନେଲି । ଧନୁରୁ ଶର ଅଲଗା କଲେ ]

ଋଷି– ପୁରୁବଂଶର ପ୍ରଦୀପଙ୍କ ପକ୍ଷରେ ଏହା ଉପଯୁକ୍ତ କର୍ମ ।

ଯାହାଙ୍କର ଜନ୍ମ ପୁରୁବଂଶରେ, ତାଙ୍କ ପକ୍ଷରେ ଏ କର୍ମ ଉପଯୁକ୍ତ ।
ଏହିଭଳି ଗୁଣସମ୍ପନ୍ନ ଚକ୍ରବର୍ତ୍ତୀ ପୁତ୍ର ଆପଣ ଲାଭ କରନ୍ତୁ । ୧୨ ।

राजा—( सप्रणामम् ) प्रतिगृहीतम् ।

वैखा—राजन् ! समिदाहरणाय प्रस्थिता वयम् । एष खलु कण्वस्य कुलपतेः अनुमालिनीतीरमाश्रमो दृश्यते । न चेदन्यकार्यातिपातः, प्रविश्य प्रतिगृह्यताम् आतिथेयः सत्कारः । अपि च—

रम्यास्तपोधनानां प्रतिहतविघ्नाः क्रियाः समवलोक्य ।
ज्ञास्यसि कियद् भुजो मे रक्षति मौर्वीकिणाङ्क इति ॥१३॥

राजा—अपि संनिहितोऽत्र कुलपतिः ?

वैखा०—इदानीमेव दुहितरं शकुन्तलाम् अतिथिसत्काराय नियुज्य दैवमस्याः प्रतिकूलं शमयितुं सोमतीर्थं गतः ।

राजा—भवतु । तां द्रक्ष्यामि । सा खलु विदितभक्तिं मां महर्षेः करिष्यति ।

वैखा०—साधयामस्तावत् । ( सशिष्यो निष्क्रान्तः )

राजा—सूत ! चोदयाश्वान् । पुण्याश्रमदर्शनेन तावदात्मानं पुनीमहि ।

सूतः—यदाज्ञापयत्यायुष्मान् । ( भूयो रथवेगं निरूपयति )

राजा—( समन्तादवलोक्य ) सूत ! अकथितोऽपि ज्ञायत एव यथा अयमाभोगस्तपोवनस्येति ।

सूतः—कथमिव ?

राजा—किं न पश्यति भवान् ? इह हि,—

नीवाराः शुकगर्भकोटरमुखभ्रष्टास्तरूणामधः
प्रस्निग्धाः क्वचिदिङ्गुदीफलभिदः सूच्यन्त एवोपलाः ।
विश्वासोपगमादभिन्नगतयः शब्दं सहन्ते मृगा-
स्तोयाधारपथाश्च वल्कलशिखानिष्यन्दरेखाङ्किताः ॥ १४ ॥

ରାଜା— ( ପ୍ରଣାମ କରି ) ଆପଣଙ୍କର ଆଶୀର୍ବାଦ ଗ୍ରହଣ କଲି ।

ଋଷି— ମହାରାଜ, ଆମ୍ଭେମାନେ ସମିଧ ସଂଗ୍ରହ କରିବାକୁ ଆସିଥିଲୁ । ଏଇ ମାଳିନୀ ନଦୀ ତୀରରେ କୁଳପତି କଣ୍ୱଙ୍କର ଆଶ୍ରମ ଦେଖାଯାଉଛି । ଯଦି ଆପଣଙ୍କର ଅନ୍ୟ କୌଣସି କାର୍ଯ୍ୟରେ ବାଧା ନପଡେ, ତେବେ ସେଠାକୁ ଯାଇ ଅତିଥିସତ୍କାର ଗ୍ରହଣ କରନ୍ତୁ । ଆଉ ମଧ୍ୟ— ଋଷିମାନେ ସେଠାରେ ନିର୍ବିଘ୍ନରେ ରମଣୀୟ ଯଜ୍ଞକର୍ମ ସମ୍ପାଦନ କରୁଛନ୍ତି । ତାହା ଦେଖି ଆପଣ ଜାଣିବେ, ଧନୁର୍ଗୁଣ ଆକର୍ଷଣ କରିକରି ବ୍ରଣଚିହ୍ନାଙ୍କିତ ହୋଇଥିବା ଆପଣଙ୍କ ବାହୁ କେତେ ଦୂର ପ୍ରଜାମାନଙ୍କର ରକ୍ଷଣାବେକ୍ଷଣ କରୁଛି । ୧୩ ।

ରାଜା— କୁଳପତି କଅଣ ଆଶ୍ରମରେ ଅଛନ୍ତି ?

ଋଷି— ସେ କନ୍ୟା ଶକୁନ୍ତଳା ଉପରେ ଅତିଥିସତ୍କାରର ଭାର ଦେଇ ତାର ପ୍ରତିକୂଳ ଗ୍ରହ ଶାନ୍ତ କରିବା ପାଇଁ ସୋମତୀର୍ଥକୁ ଯାଇଛନ୍ତି ।

ରାଜା— ଆଚ୍ଛା, ତାଙ୍କ କନ୍ୟାଙ୍କୁ ସାକ୍ଷାତ୍ କରିବି । ମହର୍ଷି ଫେରି ଆସିଲେ ସେ ତାଙ୍କୁ ମୋର ଭକ୍ତିଭାବ ଜଣାଇଦେବେ ।

ଋଷି— ତାହା ହେଲେ ଆମେ ଆସୁଛୁଁ ।

( ଶିଷ୍ୟ ଦ୍ୱୟଙ୍କ ସହିତ ପ୍ରସ୍ଥାନ କଲେ )

ରାଜା— ସାରଥି, ଅଶ୍ୱମାନଙ୍କୁ ଚଳାଅ । ପବିତ୍ର ଆଶ୍ରମ ଦର୍ଶନରେ ନିଜକୁ ପବିତ୍ର କରିବା ।

ସାରଥି— ଯଥାଜ୍ଞା ଆୟୁଷ୍ମନ୍ । [ ପୁଣି ଦ୍ରୁତ ଗତିରେ ରଥ ଚଳାଇଲେ ]

ରାଜା— ( ଚାରିଆଡକୁ ଚାହିଁ ) ସାରଥି, ଦେଖ, କେହି ନ କହିଲେ ମଧ୍ୟ ଏହା ତପୋବନର ପରିସର ବୋଲି ଜଣାପଡୁଛି ।

ସାରଥି— କିପରି ?

ରାଜା— ଆପଣ କଅଣ ଦେଖି ପାରୁନାହାନ୍ତି ? ଏଠାରେ—
କୋଟର ଭିତରେ ଥିବା ଶୁକପକ୍ଷୀମାନଙ୍କ ମୁଖରୁ ଧାନ୍ୟ ଖଣ୍ଡମାନ ଖସି ବୃକ୍ଷତଳେ ପଡ଼ିଛି । ପ୍ରସ୍ତର ଖଣ୍ଡ ଗୁଡ଼ିକ ଚିକ୍କଣ ଦିଶୁଥିବା ହେତୁ ସୂଚନା ମିଳୁଛି ଯେ ସେଗୁଡ଼ିକ ଉପରେ ଇଙ୍ଗୁଦି ଫଳ ଭଙ୍ଗା-ହୁଏ । ମନୁଷ୍ୟମାନଙ୍କ ପ୍ରତି ବିଶ୍ୱାସ ହେତୁ ମୃଗଗଣ ରଥଶବ୍ଦ ଶୁଣିଲେ ମଧ୍ୟ ଧାଇଁ ପଳାଉ ନାହାନ୍ତି । ଅଉମଧ୍ୟ, ଋଷିମାନଙ୍କର ଆର୍ଦ୍ର ବଲ୍‌କଳବସ୍ତ୍ର-ନିଗିରୁ ରେଖା ଆକାରରେ ଝରିଥିବା ଜଳଦ୍ୱାର ଜଳାଶୟପଥ ଚିହ୍ନିତ ହେଉଛି । ୧୪ ।

कुल्याम्भोभिः पवनचपलैः शाखिनो धौतमूला
भिन्नो रागः किसलयरुचामाज्यधूमोद्गमेन ।
एते चार्वागुपवनभुवि च्छिन्नदर्भाङ्कुरायां
नष्टातङ्का हरिणशिशवो मन्दमन्दं चरन्ति ॥ १५ ॥

सूतः—सर्वमुपपन्नम् ।

राजा—( स्तोकमन्तरं गत्वा ) तपोवननिवासिनामुपरोधो मा भूत् । एतावत्येव रथं स्थापय । यावदवतरामि ।

सूतः—धृताः प्रग्रहाः । अवतरत्वायुष्मान् ।

राजा—(अवतीर्य) सूत ! विनीतवेषेण प्रवेष्टव्यानि तपोवनानि नाम । इदं तावद् गृह्यताम् ( सूतस्याभरणानि धनुश्चोपनीय ) सूत ! यावदाश्रमवासिनः प्रत्यवेक्ष्य अहमुपावर्ते, तावदार्द्रपृष्ठाः क्रियन्तां वाजिनः ।

सूतः—तथा । ( निष्क्रान्तः )

राजा—( परिक्रम्यावलोक्य च ) इदमाश्रमद्वारम् । यावत् प्रविशामि । ( प्रविश्य, निमित्तं सूचयन् )

शान्तमिदमाश्रमपदं स्फुरति च बाहुः कुतः फलमिहास्य ।
अथवा भवितव्यानां द्वाराणि भवन्ति सर्वत्र ॥ १६ ॥

( नेपथ्ये )

इदो इदो सहिओ ! ( इत इतः सख्यौ ! )

राजा—( कर्णं दत्त्वा ) अये ! दक्षिणेन वृक्षवाटिकाम् आलाप इव श्रूयते । यावदत्र गच्छामि । ( परिक्रम्यावलोक्य च ) अये ! एतास्तपस्विकन्यकाः स्वप्रमाणानुरूपैः सेचनघटैर्बालपादपेभ्यः पयो दातुमित एवाभिवर्तन्ते । ( निपुणं निरूप्य ) अहो ! मधुरमासां दर्शनम्,—

शुद्धान्तदुर्लभमिदं वपुराश्रमवासिनो यदि जनस्य ।
दूरीकृताः खलु गुणैरुद्यानलता वनलताभिः ॥ १७ ॥

କ୍ଷୁଦ୍ର କ୍ଷୁଦ୍ର ନାଳର ଜଳ ପବନରେ ସଞ୍ଚାଳିତ ହୋଇ ବୃକ୍ଷମାନଙ୍କର ମୂଳ ଧୌତ କରି ଦେଉଛି । ଘୃତଧୂମର ସଂସ୍ପର୍ଶରେ ନବପଲ୍ଲବମାନଙ୍କର ରଙ୍ଗ ବଦଳିଗଲଣି । ଆଉ ତପୋବନର ଏ ପାଖ ଭୂମିରେ ମୃଗ ଶିଶୁମାନେ ନିର୍ଭୟରେ କୁଶାଙ୍କୁର ଛିଣ୍ଡାଇ ଖାଉଛନ୍ତି । ୧୫ ।

ସାରଥି— ଆପଣ ଯଥାର୍ଥ ନିରୀକ୍ଷଣ କରିଛନ୍ତି ।

ରଜା— ( କିଛି ଆଗକୁ ଯାଇ ) ତପୋବନବାସୀମାନେ ଯେପରି ଅସୁବିଧାରେ ନ ପଡ଼ନ୍ତି, ଏହିଠାରେ ରଥ ଅଟକାଅ । ମୁଁ ଅବତରଣ କରିବି ।

ସାରଥି— ମୁଁ ଲଗାମ ଟାଣି ଧରୁଛି । ଆପଣ ଅବତରଣ କରନ୍ତୁ ।

ରଜା— ( ଓହ୍ଲାଇ ) ସାରଥି, ତପୋବନରେ ବିନମ୍ର ବେଶରେ ପ୍ରବେଶ କରିବା ଉଚିତ । ନିଅ, ଏଗୁଡ଼ିକ ରଖ । (ସାରଥିଙ୍କୁ ଅଳଙ୍କାର ଏବଂ ଧନୁ ବଢ଼ାଇ ଦେଇ) ଆଶ୍ରମବାସୀମାନଙ୍କୁ ଦର୍ଶନ କରି ମୁଁ ଫେରିବା ପର୍ଯ୍ୟନ୍ତ ତୁମେ ଅଶ୍ୱମାନଙ୍କ ପୃଷ୍ଠ ଧୌତ କରୁଥାଅ ।

ସାରଥି— ଯଥାଜ୍ଞା । ( ଚାଲିଗଲେ )

ରଜା— ( କିଛି ଦୂର ଯାଇ ଓ ନିରୀକ୍ଷଣ କରି ) ଏଇ ଆଶ୍ରମ ଦ୍ୱାର । ଯାଉଛି, ପ୍ରବେଶ କରିବି । ( ଆଶ୍ରମରେ ପ୍ରବେଶ କରି ଶୁଭ ଲକ୍ଷଣର ସୂଚନା ଦେଇ )

ଏ ଆଶ୍ରମ ତ ଶାନ୍ତିର ସ୍ଥଳ, କିନ୍ତୁ ମୋର ବାହୁ ଯେ ସ୍ପନ୍ଦିତ ହେବାରେ ଲାଗିଛି ! ଏଠାରେ ବାହୁସ୍ପନ୍ଦନର କି ଫଳ ମିଳିବ ? ଅବା ଯାହା ମିଳିବାର କଥା, ତାହା ଯେ କୌଣସି ସ୍ଥାନରେ ମିଳିପାରେ । ୧୬ ।

( ନେପଥ୍ୟେ )

ସଖୀ, ଏଣିକି ଆସ, ଏଣିକି ।

ରଜା— ( କାନ ଡେରି ) ଆରେ ! ବୃକ୍ଷବାଟିକାର ଦକ୍ଷିଣରେ କଥାବାର୍ତ୍ତା ଭଳି ଶୁଣାଯାଉଛି ! ତେବେ ସେହି ଆଡ଼କୁ ଯାଏଁ । (କିଛି ଦୂର ଯାଇ ଓ ନିରୀକ୍ଷଣ କରି ) ଆରେ ! ଏ ମୁନିକନ୍ୟାମାନେ ନିଜର ଶକ୍ତି ଅନୁରୂପ କଳସୀ ଧରି ବୃକ୍ଷ ଗୁଡ଼ିକର ମୂଳରେ ଜଳ ଦେବାକୁ ଏଣିକି ଆସୁଛନ୍ତି । ( ଭଲ ଭାବେ ନିରୀକ୍ଷଣ କରି ) ଆହା ! ଏମାନଙ୍କର ଦର୍ଶନ କି ପ୍ରୀତିପ୍ରଦ !

ଅନ୍ତଃପୁରର ରମଣୀମାନେ ଯେଉଁ ସୌନ୍ଦର୍ଯ୍ୟ ପାଇନାହାନ୍ତି, ଆଶ୍ରମବାସିନୀମାନେ ଯଦି ତାହାର ଅଧିକାରିଣୀ ହୋଇଛନ୍ତି, ତେବେ ବୁଝିବାକୁ ହେବ, ବନଲତାମାନେ ଉଦ୍ୟାନଲତାମାନଙ୍କୁ ଗୁଣରେ ବଳି ଯାଇଛନ୍ତି । ୧୭ ।

यावदिमां छायामाश्रित्य प्रतिपालयामि ।
( विलोकयन् स्थितः )

( ततः प्रविशति यथोक्तव्यापारा सह सखीभ्यां शकुन्तला )

शकु—इदो इदो सहीओ ! ( इत इतः सख्यौ ! )

अन—हला सउंदले ! तुवत्तो वि तादकस्सवस्स अस्समरुक्खआ पिअदरेत्ति तक्केमि, जेण णोमालिआकुसुमपेलवा तुमं वि एदाणं आलवालपूरणे णिउत्ता । ( हला शकुन्तले ! त्वत्तोऽपि तातकाश्यपस्य आश्रमवृक्षकाः प्रियतरा इति तर्कयामि, येन नवमालिकाकुसुमपेलवा त्वमपि एतेषामालवालपूरणे नियुक्ता । )

शकु—ण केअलं तादणिओओ एव्व, अत्थि मे सोदरसिणेहो एदेसु । ( न केवलं तातनियोग एव, अस्ति मे सोदरस्नेह एतेषु । ) ( वृक्षसेचनं रूपयति )

राजा—( आत्मगतम् ) कथमियं सा कण्वदुहिता ? असाधुदर्शी खलु तत्रभवान् काश्यपः, य इमामाश्रमधर्मे नियुङ्क्ते ।

इदं किलाव्याजमनोहरं वपुः
तपःक्षमं साधयितुं य इच्छति ।
ध्रुवं स नीलोत्पलपत्रधारया
समिल्लतां छेत्तुमृषिर्व्यवस्यति ॥ १८ ॥

भवतु; पादपान्तर्हित एव विस्रब्धं तावदेनां पश्यामि । (तथा करोति )

शकु—हला अणसूए ! अदिपिणद्धेण वक्कलेण पिअंवदाए दिढं णिअंतिद म्हि । सिढिलेहि दाव णं । ( हला अनसूये, अतिपिनद्धेन वल्कलेन प्रियंवदया दृढं नियन्त्रितास्मि । शिथिलय तावदेतत् । )

अन—तह ( तथा ) । ( शिथिलयति )

प्रिय—( सहासम् ) एत्थ पओहरवित्थारइत्तअं अत्तणो जोव्वणं उवालह । (अत्र पयोधरविस्तारयितृ आत्मनो यौवनमुपालभस्व ।)

राजा—कामम् अननुरूपमस्य वयसः वल्कलम् न पुनरलङ्कारश्रियं न पुष्यति । कुतः—

କିଛି ସମୟ ଏଇ ଛାଇରେ ଠିଆ ହୋଇ ପ୍ରତୀକ୍ଷା କରିବି ।

( ଠିଆ ହୋଇ ଦେଖିବାରେ ଲାଗିଲେ )

( ଗଛମାନଙ୍କରେ ପାଣି ଦେଉଥିବା ଶକୁନ୍ତଳା ଓ ତାଙ୍କ ଦୁଇ ସଖୀଙ୍କର ପ୍ରବେଶ )

ଶକୁ— ସଖୀ, ଏଣିକି ଆସ, ଏଣିକି ।

ଅନ— ସଖୀ ଶକୁନ୍ତଳା, ମୋତେ ଜଣା ପଡୁଛି, ପିତା କଣ୍ୱ ତୋତେ ଯେତେ ସ୍ନେହ କରନ୍ତି, ଆଶ୍ରମର ବୃକ୍ଷମାନଙ୍କୁ ତା'ଠାରୁ ଅଧିକ ସ୍ନେହ କରନ୍ତି । କାରଣ, ତୁ ନବମାଳିକା ଫୁଲ ପରି କୋମଳାଙ୍ଗୀ ହେଲେ ମଧ୍ୟ ସେ ତୋତେ ଏମାନଙ୍କ ମୂଳରେ ଜଳ ଦେବାରେ ଲଗାଇଛନ୍ତି ।

ଶକୁ— କେବଳ ପିତାଙ୍କ ଆଜ୍ଞାରୁ ମୁଁ ଯେ ଏହା କରୁଛି; ତା ନୁହେଁ, ମୁଁ ନିଜେ ଏମାନଙ୍କୁ ଭଉଣୀ ଭଳି ସ୍ନେହ କରେଁ । (ଜଳ ସେଚନ କଲେ)

ରଜା— (ସ୍ୱଗତ) ଏଇ ତା'ହେଲେ କଣ୍ୱଙ୍କର ଝିଅ ? ଏହାକୁ ଆଶ୍ରମ ଧର୍ମରେ ଲଗାଇ ପୂଜନୀୟ ମହର୍ଷି ଅନୁଚିତ କାର୍ଯ୍ୟ କରିଛନ୍ତି ।

ଯେଉଁ ଋଷି ଏହାର ସ୍ୱଭାବସୁନ୍ଦର ଶରୀରଟିକୁ ତପସ୍ୟା-ଯୋଗ୍ୟ କରିବାକୁ ଇଚ୍ଛା କରନ୍ତି, ସେ ନିଶ୍ଚୟ ନୀଳୋତ୍ପଳ ପତ୍ର ଧାରରେ ଶମୀ ଲତାକୁ ଛେଦନ କରିବା ନିମନ୍ତେ ପ୍ରବୃତ୍ତ ହୋଇଛନ୍ତି । ୧୮ ।

ଆଚ୍ଛା, ଗଛ ଉହାଡରେ ରହି ଏମାନଙ୍କୁ ଭଲ କରି ଦେଖିବି ।

(ଦେଖିବାରେ ଲାଗିଲେ)

ଶକୁ— ସଖୀ ଅନସୂୟା, ପ୍ରିୟମ୍ବଦା ଏତେ ଜୋରରେ ମୋର ବଲ୍କଳ-ବସ୍ତ୍ର ଭିଡ଼ି ପିନ୍ଧାଇ ଦେଇଛି ଯେ, ମୁଁ କଷ୍ଟ ଅନୁଭବ କରୁଛି । ତୁ ଏହାକୁ ଟିକିଏ ଢିଲା କରିଦେ ।

ଅନ— ଆଚ୍ଛା । ( ଢିଲା କରିଦେଲା )

ପ୍ରିୟ— ( ହସି ) ପୟୋଧରକୁ ପୃଥୁଳ କରିଥିବା ତୋର ଯୌବନକୁ ତୁ ତିରସ୍କାର କର ।

ରଜା— ବଲ୍କଳବସ୍ତ୍ର ଏହାର ବୟସର ଅନୁକୂଳ ନୁହେଁ, ତଥାପି ଏହାର ଭୂଷଣରୂପେ ସୌନ୍ଦର୍ଯ୍ୟ ବର୍ଦ୍ଧନ କରୁଛି । କାରଣ,

सरसिजमनुविद्धं शैवलेनापि रम्यं
मलिनमपि हिमांशोर्लक्ष्म लक्ष्मीं तनोति ।
इयमधिकमनोज्ञा वल्कलेनापि तन्वी
किमिव हि मधुराणां मण्डनं नाकृतीनाम् ॥ १९ ॥

शकु—( अग्रतोऽवलोक्य ) सहिओ ! एसो वादेरिदपल्लवंगुलिहिं तुवरेदि विअ मं केसररुक्खओ । जाव णं संभावेमि । (सख्यौ ! एष वातेरितपल्लवाङ्गुलीभिस्त्वरयतीव मां केसरवृक्षकः । यावदेनं संभावयामि । ( परिक्रामति )

प्रिय—हला सउंदले ! एत्थ एव्व दाव मुहुत्तअं चिट्ठ ।

शकु—किं णिमित्तं ? ( किं निमित्तम् ? )

प्रिय—जाव तुए उवगदाए लदासणाहो विअ अअं केसररुक्खओ पडिभादि । ( त्वयोपगतया लतासनाथ इवाय केशरवृक्षकः प्रतिभाति । )

शकु—अदो खु पिअंवदा सि तुमं ( अतः खलु प्रियंवदाऽसि त्वम् । )

राजा—प्रियमपि तथ्यमाह शकुन्तलां प्रियंवदा । अस्याः खलु,—

अधरः किसलयरागः कोमलविटपानुकारिणौ बाहू ।
कुसुममिव लोभनीयं यौवनमङ्गेषु संनद्धम् ॥ २० ॥

अन—हला सउंदले ! इअ सअंवरवहू सहआरस्स तुए किदणामहेआ वणजोसिणित्ति णोमालिआ । णं विसुमरिदा सि ? ( हला शकुन्तले ! इयं स्वयंवरवधूः सहकारस्य त्वया कृतनामधेया वनज्योत्स्नेति नवमालिका । एनां विस्मृतवत्यसि ? )

शकु—तदा अत्ताणं वि विसुमरिस्सं । (लतामुपेत्यावलोक्य च, हला ! रमणीए खु काले इमस्स लदापाअवमिहुणस्स वइअरो संवुत्तो । णवकुसुमजोव्वणा वणजोसिणी, सिणिद्धपल्लवदाए अ उवभोअ-क्खमो सहआरो । ( तदात्मानमपि विस्मरिष्यामि । (लतामुपेत्यावलोक्य च ) हला ! रमणीये खलु काले एतस्य लतापादपमिथुनस्य व्यतिकरः संवृत्तः । नवकुसुमयौवना वनज्योत्स्ना, स्निग्धपल्लवतया च उपभोगक्षमः सहकारः ।
( पश्यन्ती तिष्ठति । )

ଶୈଉଳି ଭିତରେ ଫୁଟିଥିଲେ ମଧ୍ୟ ପଦ୍ମ ଫୁଲ ସୁନ୍ଦର ଦିଶେ । ମଳିନ କଳଙ୍କ ମଧ୍ୟ ଚନ୍ଦ୍ରର ଶୋଭା ବର୍ଦ୍ଧନ କରେ । ସେହିପରି ଏ କୃଶାଙ୍ଗୀ ବଲ୍କଳ-ବସ୍ତ୍ର ପିନ୍ଧିଥିଲେ ମଧ୍ୟ ଅଧିକ ସୁନ୍ଦର ଦେଖାଯାଉଛି । ଯେଉଁ ରୂପ ସ୍ୱଭାବତଃ ସୁନ୍ଦର, ତାହା ପକ୍ଷରେ କେଉଁ ପଦାର୍ଥ ଭୂଷଣ ନୁହେଁ ? ୧୯ ।

ଶକୁ- ( ଆଗକୁ ଚାହିଁ ) ସଖୀ, ଏ ବଉଳ ଗଛ ପବନରେ ଦୋହଲୁଥିବା ପତ୍ରରୂପକ ଅଙ୍ଗୁଳିରେ ଠାରି ମୋତେ ଡାକିଲା ପରି ଜଣାପଡୁଛି । ଯାଏଁ, ତାକୁ ପାଣି ଦିଏଁ । ( ବଉଳଗଛ ଆଡ଼କୁ ଗଲେ )

ପ୍ରିୟ- ଶକୁନ୍ତଳା, ଏଠି କ୍ଷଣେ ଠିଆ ହୋଇଯା ।

ଶକୁ - କାହିଁକି ?

ପ୍ରିୟ- ତୁ ଏହି ବଉଳ ଗଛ ପାଖରେ ଠିଆ ହେଲେ ଏ ଗଛ ଲତାବେଷ୍ଟିତ ହେଲାଭଳି ଦିଶୁଛି ।

ଶକୁ- ଏଇଥିପାଇଁ ତୋ ନାମ ପ୍ରିୟମ୍ବଦା ।

ରାଜା- ପ୍ରିୟମ୍ବଦା ଶକୁନ୍ତଳାକୁ ପ୍ରିୟ ତଥା ସତ୍ୟ କଥା କହିଛି । କାରଣ,

ଶକୁନ୍ତଳାର ଅଧର ନବପଲ୍ଲବ ପରି ଲୋହିତ । ଦୁଇ ବାହୁ କୋମଳ ଶାଖା ସଦୃଶ । ଆଉ ପୁଷ୍ପଭଳି ଲୋଭନୀୟ ଯୌବନ ଏହାର ଅଙ୍ଗେ ଅଙ୍ଗେ ପୂର୍ଣ୍ଣ । ୨୦ ।

ଅନ- ଶକୁନ୍ତଳା, ସହକାରବୃକ୍ଷର ସ୍ୱୟମ୍ବର ପତ୍ନୀ ଏଇ ନବମାଳିକା ଲତାକୁ ତୁ 'ବନଜ୍ୟୋତ୍ସ୍ନା' ନାମ ଦେଇଥିଲୁ । ଏହାକୁ କଅଣ ଭୁଲିଗଲୁଣି ?

ଶକୁ- ତାହାହେଲେ ତ ନିଜକୁ ଭୁଲିଯିବି ! ( ଲତାପାଖକୁ ଯାଇ ଏବଂ ଚାହିଁ ) ସଖୀ, ଉପଯୁକ୍ତ ସମୟରେ ଏହି ଲତା ଓ ବୃକ୍ଷ ଦୁହିଙ୍କର ମିଳନ ହୋଇଛି । 'ବନଜ୍ୟୋତ୍ସ୍ନା' ନବକୁସୁମ ରୂପକ ଯୌବନରେ ଶୋଭିତା ଏବଂ ସ୍ନିଗ୍ଧପଲ୍ଲବପୂର୍ଣ୍ଣ ସହକାର ମଧ୍ୟ ଉପଭୋଗ-ସମର୍ଥ । ( ଠିଆହୋଇ ଦେଖିବାକୁ ଲାଗିଲେ )

प्रिय—अणसूए ! जाणासि किंणिमित्तं सउंदला वणजोसिणीं अदिमेत्तं पेक्खदित्ति ? ( अनसूये ! जानासि किंनिमित्तं शकुन्तला वनज्योत्स्नामतिमात्रं पश्यति ? )

अन—ण क्खु विभावेमि । कहेहि । (न खलु विभावयामि । कथय । )

प्रिय—जह वणजोसिणी अणूरूवेण पाअवेण संगदा, अवि णाम एव्वं अहं वि अत्तणो अणूरूवं वरं लहेअत्ति । ( यथा वनज्योत्स्ना अनुरूपेण पादपेण संगता, अपि नाम एवमहमप्यात्मनोऽनुरूपं वरं लभेयेति । )

शकु—एसो णूणं तुह अत्तगदो मणोरहो । ( एष नूनं तवात्मगतो मनोरथः । ) ( कलशमावर्जयति )

राजा—अपि नाम कुलपतेरियमसवर्णक्षेत्रसंभवा स्यात् ? अथवा कृतं संदेहेन,—

असंशयं क्षत्रपरिग्रहक्षमा यदार्यमस्यामभिलाषि मे मनः ।
सतां हि संदेहपदेषु वस्तुषु प्रमाणमन्तःकरणप्रवृत्तयः ॥ २१ ॥

तथापि तत्त्वत एवैनामुपलप्स्ये ।

शकु—( ससंभ्रमम् ) अम्मओ ! सलिलसेअसंभमुग्गदो णोमालिअं उज्झिअ वअणं मे महुअरो अहिवट्टइ । ( अहो ! सलिलसेकसंभ्रमोद्गतो नवमालिकामुज्झित्वा वदनं मे मधुकरोऽभिवर्तते ।) ( भ्रमरबाधां रूपयति )

राजा—( सस्पृहं विलोक्य )

चलापाङ्गां दृष्टिं स्पृशसि बहुशो वेपथुमतीं
रहस्याख्यायीव स्वनसि मृदु कर्णान्तिकचरः ।
करौ व्याधुन्वत्याः पिबसि रतिसर्वस्वमधरं
वयं तत्त्वान्वेषान्मधुकर ! हतास्त्वं खलु कृती ॥ २२ ॥

शकु—ण एसो धिट्ठो विरमदि । अण्णदो गमिस्सं । ( पदान्तरे स्थित्वा, सदृष्टिक्षेपम् ) कहं इदो वि आअच्छदि ? हला ! परित्ताअह मं इमिणा दुव्विणीदेण दुट्ठमहुअरेण अहिभूअमाणं । ( न एष धृष्टो विरमति । अन्यतो गमिष्यमि । ( पदान्तरे स्थित्वा सदृष्टिक्षेपम् ) कथमितोऽप्यागच्छति ? हला ! परित्रायेथां माम् अनेन दुर्विनीतेन दुष्टमधुकरेण अभिभूयमानाम् । )

ପ୍ରିୟ— (ମୃଦୁ ହାସ୍ୟରେ) ଜାଣିଛୁ ଅନସୂୟା, ଶକୁନ୍ତଳା 'ବନଜ୍ୟୋତ୍ସ୍ନା'କୁ ଏପରି ଆଗ୍ରହରେ କାହିଁକି ଚାହିଁ ରହିଛି ?

ଅନ— ମୁଁ ଜାଣିନି, ତୁ କହ ।

ପ୍ରିୟ— 'ବନଜ୍ୟୋତ୍ସ୍ନା' ଯେପରି ଯୋଗ୍ୟ ବୃକ୍ଷ ସହିତ ମିଳିତା ହୋଇଛି, ମୋତେ ମଧ୍ୟ ସେହିପରି ଯୋଗ୍ୟ ବରଟିଏ ମିଳୁ—ଏଇ ଭାବନାରେ ।

ଶକୁ— ଏହା ତୋ ମନ କଥା ନିଶ୍ଚୟ ।

( ଜଳ ଢାଳିବା ନିମନ୍ତେ କଳସୀ ନୁଆଁଇଲେ )

ରାଜା— କୁଳପତି କଣ୍ୱଙ୍କର କୌଣସି ଅସବର୍ଣ୍ଣା ସ୍ତ୍ରୀଠାରୁ ଏ ଜନ୍ମ ହୋଇଛି କି ? ହଁ, ସନ୍ଦେହ କରିବାର କିଛି ନାହିଁ ।

ମୋର ନିଷ୍କଳଙ୍କ ମନ ଯେହେତୁ ଏହାଠାରେ ଅଭିଳାଷୀ ହେଉଛି, ତେଣୁ ଜଣାପଡୁଛି, କ୍ଷତ୍ରିୟ ଏହାର ପାଣିଗ୍ରହଣ କରିପାରିବ । କାରଣ, ସଜ୍ଜନମାନଙ୍କର ଯଦି କୌଣସି ବିଷୟରେ ସନ୍ଦେହ ଉପୁଜେ, ତେବେ ସେ ବିଷୟରେ ସେମାନଙ୍କ ଅନ୍ତଃକରଣର କଥା ହିଁ ପ୍ରମାଣ । ୨୧ ।

ତଥାପି ଏହା ସମ୍ବନ୍ଧରେ ପ୍ରକୃତ କଥା ଜାଣିବି ।

ଶକୁ— ( ବ୍ୟସ୍ତ ହୋଇ ) ଜଳ ଢାଳିବାଦ୍ୱାରା ବିଚଳିତ ହୋଇ ଭଅଁରଟାଏ ନବମାଳିକା ଲତାକୁ ଛାଡି ମୋ ମୁହଁ ଆଡକୁ ଉଡ଼ିଆସୁଛି !

( ଭଅଁରକୁ ବାଧା ଦେବାର ଅଭିନୟ କଲେ )

ରାଜା— ( ସ୍ପୃହାର ସହିତ ଚାହିଁ )

ରେ ଭ୍ରମର, ତୁ ଏହାର ଚଞ୍ଚଳ-କଟାକ୍ଷ-ବିଶିଷ୍ଟ କମ୍ପମାନ ଚକ୍ଷୁକୁ ବାରମ୍ବାର ସ୍ପର୍ଶ କରୁଛୁ , କାନ ପାଖରେ ଉଡ଼ି ଗୋପନ କଥା କହିଲା ଭଳି ଗୁଣୁଗୁଣୁ ସ୍ୱନ କରୁଛୁ, ଆଉ ଏ ହସ୍ତସଂଚାଳନଦ୍ୱାରା ତୋତେ ବାରଣ କଲେ ମଧ୍ୟ ତୁ ଏହାର ରତିସର୍ବସ୍ୱ ଅଧର ପାନ କରୁଛୁ । ପ୍ରକୃତରେ ତୁ ହିଁ ଭାଗ୍ୟବାନ୍, ମୁଁ କେବଳ ତତ୍ତ୍ୱ ଖୋଜି-ଖୋଜି ମରୁଛି ।

ଶକୁ— ଏ ଦୁଷ୍ଟ ମାନୁ ନାହିଁ, ମୁଁ ଅନ୍ୟ ସ୍ଥାନକୁ ଯାଉଛି । ( କେତେକ ପାଦ ଯାଇ ଦୃଷ୍ଟି ନିକ୍ଷେପ କରି ) ଆରେ ! ଏ ଏଣିକି ମଧ୍ୟ ଆସୁଛି ! ସଖୀ, ଏ ଦୁଷ୍ଟ ଭଅଁରର ଉପଦ୍ରବରୁ ମୋତେ ରକ୍ଷା କର ।

उभे—(सस्मितम्।) का अम्हे परित्तादुं ? दुस्संदं आक्कंद। राअरक्खिदव्वाइं तवोवणाइं णाम। ( के आवां परित्रातुम् ? दुष्यन्तमाक्रन्द। राजरक्षितव्यानि तपोवनानि नाम।)

राजा—अवसरोऽयमात्मानं प्रकाशयितुम्। न भेतव्यं न भेतव्यम्—(अर्धोक्ते स्वगतम्) राजभावस्त्वभिज्ञातो भवेत्।

शकु—(पदान्तरे स्थित्वा, सदृष्टिक्षेपम्) कहं इदो वि मं अणुसरदि ?

( कथमितोऽपि मामनुसरति ? )

राजा—( सत्वरमुपसृत्य )

कः पौरवे वसुमतीं शासति शासितरि दुर्विनीतानाम्।
अयमाचरत्यविनयं मुग्धासु तपस्विकन्यासु ॥ २३ ॥

( सर्वा राजानं दृष्ट्वा किंचिदिव संभ्रान्ताः )

अन—अज्ज ! ण खु किंवि अच्चाहिदं। इअं णो पिअसही महुअरेण अहिहूअमाणा कादरीभूदा। (आर्य ! न खलु किमप्यत्याहितम्। इयं नौ प्रियसखी मधुकरेणाभिभूयमाना कातरीभूता।)

( शकुन्तलां दर्शयति )

राजा—( शकुन्तलाभिमुखो भूत्वा ) अपि तपो वर्धते ?

( शकुन्तला साध्वसादवचना तिष्ठति )

अन—दाणिं अदिहिविसेसलाहेण। (शकुन्तलामुद्दिश्य) हला सउंदले ! गच्छ उडअं; फलमिस्सं अग्घं उवहर। इदं पादोदअं भविस्सदि। ( इदानीमतिथिविशेषलाभेन। हला शकुन्तले ! गच्छोटजम्; फलमिश्रमर्घमुपहर। इदं पादोदकं भविष्यति।)

राजा—भवतीनां सूनृतयैव गिरा कृतमातिथ्यम्।

प्रिय—तेण हि इमस्सिं पच्छाअसीअलाए सत्तवण्णवेदिआए मुहुत्तअं उवविसिअ परिस्समविणोदं करेदु अज्जो। ( तेन ह्यस्यां प्रच्छायशीतलायां सप्तपर्णवेदिकायां मुहूर्तमुपविश्य परिश्रमविनोदं करोत्वार्यः।)

राजा—नूनं यूयमप्यनेन कर्मणा परिश्रान्ताः।

अन—हला सउंदले ! उइदं णो पज्जुवासणं अदिहीणं; एत्थ उवविसम्ह। ( हला शकुन्तले ! उचितं नः पर्युपासनमतिथीनाम्, अत्रोपविशामः।) ( सर्व उपविशन्ति )

ଉଭୟେ— (ସ୍ମିତ ହାସ୍ୟ କରି) ରକ୍ଷା କରିବାକୁ ଆମେ କିଏ ? ଦୁଷ୍ୟନ୍ତଙ୍କୁ ଡାକ । ତପୋବନ ରକ୍ଷା କରିବା ରଜାଙ୍କର କାମ ।

ରଜା— ଆତ୍ମପ୍ରକାଶ କରିବାର ଏ ହେଉଛି ଉପଯୁକ୍ତ ଅବସର । ଭୟ ନାହିଁ, ଭୟ ନାହିଁ (କହୁଁକହୁଁ ଅଟକିଯାଇ ସ୍ୱଗତ) ଏହାଦ୍ୱାରା ଏମାନେ ମୋତେ ରଜା ବୋଲି ଚିହ୍ନିନେବେ ।

ଶକୁ— ( ପୁଣି କେତେକ ପାଦ ଯାଇ, ଦୃଷ୍ଟିପାତ କରି ) କଅଣ ! ଏ ପୁଣି ମୋ ପଛେ ପଛେ ଆସୁଛି !

ରଜା— ( ଶୀଘ୍ର ପାଖକୁ ଯାଇ ) କିଏ ! ଦୁଷ୍ଟଦମନକାରୀ ଦୁଷ୍ୟନ୍ତ ପୃଥିବୀକୁ ଶାସନ କରୁଥାଉଁଥାଉଁ ସରଳା ମୁନି କନ୍ୟାଙ୍କ ପ୍ରତି କିଏ ଦୁର୍ବ୍ୟବହାର କରୁଛି ? ୨୩

( ସମସ୍ତେ ରଜାଙ୍କୁ ଦେଖି ବ୍ୟସ୍ତଚକିତ ହୋଇପଡିଲେ )

ଅନ— ଆର୍ଯ୍ୟ, ସେପରି କିଛି ବିପଦ ଘଟିନାହିଁ । ଆମର ଏଇ ପ୍ରିୟସଖୀ ଭ୍ରମରର ଉତ୍ପୀଡ଼ନରେ କାତର ହୋଇ ପଡ଼ିଥିଲା ।

( ଶକୁନ୍ତଳାଙ୍କୁ ଦେଖାଇଦେଲେ )

ରଜା— (ଶକୁନ୍ତଳାଙ୍କ ସମ୍ମୁଖକୁ ଯାଇ) ଭଦ୍ରେ, ନିର୍ବିଘ୍ନରେ ତପସ୍ୟା ଚାଲିଛି ତ ?

( ଶକୁନ୍ତଳା ତଳକୁ ମୁହଁ ପୋତି ଅବାକ୍‌ଭାବରେ ଠିଆ ହୋଇଥାନ୍ତି )

ଅନ— ବର୍ତ୍ତମାନ ବିଶିଷ୍ଟ ଅତିଥିଙ୍କର ଆଗମନଦ୍ୱାରା ତପସ୍ୟାର ଅଭିବୃଦ୍ଧି ଘଟିଛି । ଶକୁନ୍ତଳା ! କୁଟୀରକୁ ଯାଇ ଫଳସମେତ ପୂଜାସାମଗ୍ରୀ ଘେନିଆସ । ଏହି କଳସୀଜଳରେ ପାଦ ଧୋଇବା କାମ ଚଳିଯିବ ।

ରଜା— ଆପଣମାନଙ୍କର ମଧୁର ବଚନରେ ହିଁ ଯଥେଷ୍ଟ ଆତିଥ୍ୟ ମିଳିଲାଣି ।

ପ୍ରିୟ— ତା'ହେଲେ, ଆପଣ ଏଇ ସପ୍ତପର୍ଣ୍ଣ ବୃକ୍ଷମୂଳର ଶୀତଳ ବେଦୀ ଉପରେ ବହଳ ଛାଇରେ ବସି ମୁହୂର୍ତ୍ତେ ବିଶ୍ରାମ କରନ୍ତୁ ।

ରଜା— ଆପଣମାନେ ମଧ୍ୟ କାମ କରିକରି ଥକିଗଲେଣି ।

ଅନ— ସଖୀ ଶକୁନ୍ତଳା, ଅତିଥିଙ୍କ ପାଖରେ ରହି ସତ୍କାର କରିବା ଆମର କର୍ତ୍ତବ୍ୟ । ତାହା ହେଲେ ଆ, ଏଇଠି ବସିବା ।

( ସମସ୍ତେ ବସିଲେ )

शकु—(आत्मगतम्) किं णु खु इमं पेक्खिअ तवोवणविरोहिणो विआरस्स गमणीअ म्हि संवुत्ता ? ( किं नु खल्विमं प्रेक्ष्य तपोवनविरोधिनो विकारस्य गमनीयास्मि संवृत्ता ? )

राजा—(सर्वा विलोक्य) अहो ! समानवयोरूपरमणीयानां भवतीनां सौहार्दम् ।

प्रिय—( जनान्तिकम् ) अणसूए ! को णु खु एसो चउरगंभीराकिदी चउरं पिअं आलवंतो पहावंदो विअ लक्खीअदि ? ( अनसूये ! को नु खल्वेष चतुरगम्भीराकृतिश्चतुरं प्रियमालपन् प्रभाववानिव लक्ष्यते ?

अन—सहि ! मम वि अत्थि कोदूहलं । पूच्छिस्सं दाव णं । (प्रकाशम्) अज्जस्स महुरालावजणिदो वीसंभो मं मंतावेदि—कदमो अज्जेण राएसिणो वंसो अलंकरीअदि ? कदमो वा विरहपज्जुस्सुअजणो किदो देसो ? किंणिमित्तं वा सुउमारदरो वि तवोवणगमणपरिस्समस्स अत्ता पदं उवणीदो ? ( सखि ! ममाप्यस्ति कौतूहलम् । पृच्छामि तावदेनम् । ( प्रकाशम् ) आर्यस्य मधुरालापजनितो विस्रम्भो मां मन्त्रयते—कतम आर्येण राजर्षेर्वंशोऽलंक्रियते ? कतमो वा विरहपर्युत्सुकजनः कृतो देशः । किंनिमित्तं वा सुकुमारतरोऽपि तपोवनगमनपरिश्रमस्य आत्मा पदमुपनीतः ? )

शकु—(आत्मगतम्) हिअअ मा उत्तम्म । एसा तुए चिंतिदाइं अणसूआ मंतेदि ! (हृदय ! मा उत्ताम्य । एषा त्वया चिन्तितानि अनसूया मन्त्रयते । ).

राजा—(आत्मगतम्) कथमिदानीमात्मानं निवेदयमि ? कथं वा परिहारं करोमि ? भवतु, एवं तावदेनां वक्ष्ये । ( प्रकाशम् ) भवति ! यः पौरवेण राज्ञा धर्माधिकारे नियुक्तः सोऽहमविघ्नक्रियोपलम्भाय पुण्याश्रमदर्शनप्रसङ्गेन धर्मारण्यमिदमायातः ।

अन—सणाहा दाणिं धम्मआरिणो । (सनाथा इदानीं धर्मचारिणः ।)

( शकुन्तला शृङ्गारलज्जां रूपयति )

ଶକୁ— ( ସ୍ୱଗତ ) ଏ କଅଣ ! ଏହାଙ୍କୁ ଦେଖି ମୋ ମନରେ କାହିଁକି ତପୋବନବିରୋଧୀ ଅନୁରାଗ ଜାତ ହେଉଛି ?

ରାଜା— ( ସମସ୍ତଙ୍କୁ ଚାହିଁ ) ବାଃ ! ଆପଣମାନଙ୍କର ବୟସ ଏବଂ ରୂପ ସମାନ ହୋଇଥିବାରୁ ଆପଣମାନଙ୍କ ମଧ୍ୟରେ ବନ୍ଧୁତା କି ମଧୁର !

ପ୍ରିୟ— (ଅନସୂୟା ପ୍ରତି ଚୁପ୍ ଚୁପ୍ ) ଅନସୂୟା ! ଏ ସୁନ୍ଦର, ଗମ୍ଭୀର ପୁରୁଷ ଚାତୁର୍ଯ୍ୟର ସହିତ ମଧୁର ଆଳାପ କରୁଛନ୍ତି ଏବଂ ଜଣେ ପ୍ରଭାବଶାଳୀ ବ୍ୟକ୍ତି ପରି ଜଣାପଡୁଛନ୍ତି । ଏ କିଏ ?

ଅନ— ମୁଁ ମଧ୍ୟ ତାହା ଜାଣିବାକୁ କୌତୂହଳୀ । ଆଛା ପଚାରେଁ । (ପ୍ରକାଶ୍ୟରେ) ଆର୍ଯ୍ୟ, ଆପଣଙ୍କର ମଧୁର ଆଳାପଦ୍ୱାରା ଆମର ବିଶ୍ୱାସ ଜାତ ହୋଇଛି । ତେଣୁ ମୁଁ କିଛି ପଚାରିବାକୁ ଚାହୁଁଛି । ଆପଣ କେଉଁ ରାଜର୍ଷି ବଂଶ ଅଳଙ୍କୃତ କରିଛନ୍ତି ଏବଂ କେଉଁ ଦେଶର ଅଧିବାସୀମାନଙ୍କୁ ନିଜ ବିଚ୍ଛେଦରେ ଉତ୍କଣ୍ଠିତ କରି ଏଠାକୁ ଆସିଛନ୍ତି ? ଆଉ ମଧ୍ୟ କେଉଁ କାରଣରୁ ଆପଣ ଏଇ ସୁକୁମାର ଦେହରେ ତପୋବନକୁ ଆସିବାର କଷ୍ଟ ସ୍ୱୀକାର କରିଛନ୍ତି ?

ଶକୁ— ( ସ୍ୱଗତ ) ହୃଦୟ, ଅଧୀର ହୁଅ ନାହିଁ । ତୁ ଯାହା ଭାବୁଛୁ, ତାହା ସମସ୍ତ ଅନୁସୂୟା ପଚାରୁଛି ।

ରାଜା— (ସ୍ୱଗତ) ବର୍ତ୍ତମାନ କିପରି ନିଜର ପରିଚୟ ଦେବି ? କିପରି ବା ନିଜର ପରିଚୟ ପରିହାର କରିବି ? ଆଛା ଏହିପରି କହିବି । (ପ୍ରକାଶ୍ୟରେ) ଭଦ୍ରେ ! ମୁଁ, ମହାରାଜା ଦୁଷ୍ୟନ୍ତଙ୍କ ଦ୍ୱାରା ନିଯୁକ୍ତ ଧର୍ମାଧିକାରୀ । ଆଶ୍ରମବାସୀମାନଙ୍କର ଧର୍ମକାର୍ଯ୍ୟ ନିର୍ବିଘ୍ନରେ ଚାଲୁଛି କି ନାହିଁ; ଏହା ଜାଣିବାପାଇଁ ମୁଁ ଏହି ତପୋବନକୁ ଆସିଛି ।

ଅନ-- ତାହାହେଲେ ଆଶ୍ରମବାସୀମାନଙ୍କର ସହାୟ ଅଛନ୍ତି ।
ଶକୁନ୍ତଳା ପ୍ରଣୟଲଜ୍ଜା ଅଭିନୟ କଲେ )

सख्यौ—( उभयोराकारं विदित्वा, जनान्तिकम् ) हला सउन्दले ! जइ एत्थ अज्ज तादो संणिहिदो भवे। (हला शकुन्तले ! यदि अत्र अद्य तातः संनिहितो भवेत्। )

शकु—( सरोषमिव ) तदो किं भवे ? ( ततः किं भवेत् ? )

सख्यौ—इमं जीविदसव्वस्सेण वि अदिहिविसेसं किदत्थं करिस्सदि। ( इमं जीवितसर्वस्वेनाप्यतिथिविशेषं कृतार्थं करिष्यति। )

शकु—( सकृतककोपम् ) तुम्हे अवेध। किं वि हिअए करिअ मंतेध। ण वो वअणं सुणिस्सं। ( युवामपेतम्। किमपि हृदये कृत्वा मन्त्रयेथे। न युवयोर्वचनं श्रोष्यामि । )

राजा—वयमपि तावद् भवत्योः सखीगतं किमपि पृच्छामः ।

सख्यौ—अज्ज ! अणुग्गहो विअ इअं अब्भत्थणा।
(आर्य ! अनुग्रह इव इयमभ्यर्थना। )

राजा—भगवान् काश्यपः शाश्वते ब्रह्मणि स्थित इति प्रकाशः। इयं च वः सखी तदात्मजेति कथमेतत् ?

अन—सुणादु अज्जो। अत्थि को वि कोसिओत्ति गोत्तणामहेओ महाप्पहावो राएसी। ( शृणोत्वार्यः। अस्ति कोऽपि कौशिक इति गोत्रनामधेयो महाप्रभावो राजर्षिः। )

राजा—अस्ति, श्रूयते।

अन—तं णो पिअसहीए पहवं अवगच्छ। उज्झिआए सरीरसंवड्ढणादीहिं तादकस्सवो से पिदा। (तमावयोः प्रियसख्याः प्रभवमवगच्छ। उज्झितायाः शरीरसंवर्धनादिभिस्तातकाश्यपोऽस्याः पिता। )

राजा—'उज्झित'-शब्देन जनितं मे कौतूहलम्। आ मूलाच्छ्रोतुमिच्छामि।

अन—सुणादु अज्जो, गोदमीतीरे पुरा किल तस्स राएसिणो उग्गे तवसि वट्टमाणस्स किंवि जादसंकेहिं देवेहिं मेणआ णाम अच्छरा पेसिदा णिअमविग्घकालिणी। (शृणोत्वार्यः, गौतमीतीरे पुरा किल तस्य राजर्षेः उग्रे तपसि वर्तमानस्य किमपि जातशङ्कैर्देवैर्मेनका नामाप्सराः प्रेषिता नियमविघ्नकारिणी।

ସଖୀଦ୍ୱୟ—( ରାଜା ଓ ଶକୁନ୍ତଳାଙ୍କର ଭାବଭଙ୍ଗୀ ଦେଖି ଚୁପ୍ ଚୁପ୍ ) ଶକୁନ୍ତଳା, ବର୍ତ୍ତମାନ ଯଦି ପିତା ଉପସ୍ଥିତ ଥାଆନ୍ତେ ..........

ଶକୁ— (କ୍ରୋଧ ପ୍ରକାଶ କଲା ଭଳି) ତା'ହେଲେ କଅଣ ହୋଇଥାଆନ୍ତା ?

ସଖୀଦ୍ୱୟ--ନିଜର ଏଇ ଜୀବନସର୍ବସ୍ୱକୁ ଦେଇ ସେ ବିଶିଷ୍ଟ ଅତିଥିଙ୍କୁ କୃତାର୍ଥ କରି-ଥାଆନ୍ତେ ।

ଶକୁ-- [କୃତ୍ରିମ କୋପରେ] ଦୂର ହୁଅ, ଦୁହେଁ କିଛି ଅଭିସନ୍ଧି ରଖି କହୁଛ । ମୁଁ ଆଉ ତୁମ ଦୁହିଁଙ୍କ କଥା ଶୁଣିବି ନାହିଁ ।

ରାଜା-- ମୁଁ ମଧ୍ୟ ଆପଣ ଦୁହିଁଙ୍କର ସଖୀଙ୍କ ବିଷୟରେ କିଛି ପଚାରିବି ।

ସଖୀଦ୍ୱୟ—ଆର୍ଯ୍ୟ, ଆପଣଙ୍କର ଅନୁରୋଧ ଆମ ପ୍ରତି ଅନୁଗ୍ରହ ସ୍ୱରୂପ ।

ରଜା— ମହର୍ଷି କଣ୍ୱ ପରଂବ୍ରହ୍ମସ୍ଥ, ଆଜନ୍ମବ୍ରହ୍ମଚାରୀ, ଏହା ସମସ୍ତେ ଜାଣନ୍ତି । ତେବେ ଆପଣମାନଙ୍କର ଏହି ସଖୀ ତାଙ୍କର କନ୍ୟା ହେଲେ କିପରି ?

ଅନ— ଶୁଣନ୍ତୁ ଆର୍ଯ୍ୟ, କୌଶିକ ଗୋତ୍ରରେ କୌଶିକ (ବିଶ୍ୱାମିତ୍ର) ଜଣେ ମହା-ପ୍ରଭାବଶାଳୀ ରାଜର୍ଷି ।

ରାଜା— ହଁ, ଶୁଣିଛି ।

ଅନ— ତାଙ୍କୁ ହିଁ ଆମ ପ୍ରିୟସଖୀର ପିତା ବୋଲି ଜାଣନ୍ତୁ । ସେ ଏହାଙ୍କୁ ପରିତ୍ୟାଗ କଲା ପରେ ପିତା କଣ୍ୱ ଲାଳନପାଳନ କରିଥିବାରୁ ଏହାଙ୍କର ପିତା ଅଟନ୍ତି ।

ରାଜା— 'ପରିତ୍ୟାଗ' ଶବ୍ଦଟି ଶୁଣି ମୋ ମନରେ କୌତୂହଳ ଜାତ ହେଉଛି । ତେଣୁ ମୁଁ ମୂଳରୁ ଶୁଣିବାକୁ ଚାହେଁ ।

ଅନ— ଆର୍ଯ୍ୟ, ଶୁଣନ୍ତୁ । ଏକଦା ସେହି ରାଜର୍ଷି ଗୌତମୀନଦୀ ତୀରରେ ତପସ୍ୟା କରୁଥିଲେ । ତାଙ୍କ ତପସ୍ୟାରେ ଦେବତାମାନଙ୍କ ମନରେ ଭୟ ଜାତ ହେଲା । ସେମାନେ ତାଙ୍କର ତପସ୍ୟା ଭଙ୍ଗିବା ନିମନ୍ତେ ମେନକା ନାମରେ ଜଣେ ଅପ୍ସରାଙ୍କୁ ପଠାଇଲେ ।

राजा—अस्त्येतदन्यसमाधिभीरुत्वं देवानाम् ।

अन—तदो वसंतोदाररमणीए समए से उम्मादइत्तअं रूवं पेक्खिअ,— (ततो वसन्तोदाररमणीये समये तस्या उन्मादयितृ रूपं प्रेक्ष्य,— ) (अर्धोक्ते लज्जया विरमति । )

राजा—परस्ताज्ज्ञायत एव । सर्वथा अप्सरःसंभवैषा ।

अन—अह इं ? ( अथ किम् ? )

राजा—उपपद्यते,—

मानुषीषु कथं वा स्यादस्य रूपस्य संभवः ?
न प्रभातरलं ज्योतिरुदेति वसुधातलात् ॥ २४ ॥

( शकुन्तलाऽधोमुखी तिष्ठति )

राजा—( आत्मगतम् ) लब्धावकाशो मे मनोरथः । किंतु सख्याः परिहासोदाहृतां वरप्रार्थनां श्रुत्वा द्वैधीभावकातरं मे मनः ।

प्रिय—( सस्मितं शकुन्तलां विलोक्य नायकाभिमुखी भूत्वा ) पुणो वि वत्तुकामो विअ अज्जो । ( पुनरपि वक्तुकाम इवार्यः । )

( शकुन्तला सखीमङ्गुल्या तर्जयति )

राजा—सम्यगुपलक्षितं भवत्या । अस्ति नः सच्चरितश्रवणलोभादन्यदपि प्रष्टव्यम् ।

प्रिय— अलं विआरिअ । अणिअंतणाणुओओ तवस्सिअणो णाम । ( अलं विचार्य । अनियन्त्रणानुयोगस्तपस्विजनो नाम )

राजा—इति सखीं ते ज्ञातुमिच्छामि—

वैखानसं किमनया व्रतमा प्रदानाद्
व्यापाररोधि मदनस्य निषेवितव्यम् ।
अत्यन्तमेव सदृशेक्षणवल्लभाभि-
राहो निवत्स्यति समं हरिणाङ्गनाभिः ॥ २५ ॥

प्रिय—अज्ज ! धम्मचरणे वि परवसो अअं जणो । गुरुणो उण से अणरूववरप्पदाणे संकप्पो । ( आर्य ! धर्माचरणेऽपि परवशोऽयं जनः । गुरोः पुनरस्या अनुरूपवरप्रदाने संकल्पः । )

ରାଜା— ହଁ, ଅନ୍ୟର ତପସ୍ୟାରେ ଦେବତାମାନଙ୍କ ମନରେ ଭୟ ଜାତ ହୁଏ ।

ଅନ— ତା' ପରେ ମଧୁର ବସନ୍ତ କାଳରେ ମେନକାଙ୍କର ଉନ୍ମାଦକ ରୂପ ଦେଖି.............. (କହୁଁ କହୁଁ ଲଜ୍ଜାରେ ଅଟକିଗଲେ)

ରାଜା— ତତ୍‌ପରବର୍ତ୍ତୀ କଥା ବୁଝି ହେଉଛି । ତା'ହେଲେ ଏ ଅପ୍‌ସରାଙ୍କ ଗର୍ଭରୁ ଜାତ ?

ଅନ— ହଁ।

ରାଜା— ଯୁକ୍ତିଯୁକ୍ତ ।
ମନୁଷ୍ୟକନ୍ୟାଠାରେ ଏଭଳି ରୂପଲାବଣ୍ୟ କଅଣ ସମ୍ଭବ ? ପ୍ରଭା-ତରଳ ଜ୍ୟୋତି ( ବିଦ୍ୟୁତ୍) ବସୁଧାତଳୁ କଦାପି ଉଦିତ ହୋଇ-ନପାରେ । ୨୪
( ଶକୁନ୍ତଳା ତଳକୁ ମୁହଁ କରି ଠିଆ ହୋଇଥାଆନ୍ତି )

ରାଜା— (ସ୍ୱଗତ) ତା'ହେଲେ ମୋର ଅଭିଳାଷ ନିମନ୍ତେ କିଛି ବାଟ ଫିଟିଲା । କିନ୍ତୁ ଏହାର ସଖୀ ପରିହାସଛଳରେ ଏହାକୁ ବର ପାଇବା କଥା ଯାହା କହିଲା, ତାହା ଶୁଣି ମୋ ମନ ସନ୍ଦେହରେ ଅସ୍ଥିର ।

ପ୍ରିୟ— ( ସ୍ମିତ ହାସ୍ୟରେ ଶକୁନ୍ତଳାକୁ ଚାହିଁ, ପୁଣି ରାଜାଙ୍କ ଆଡ଼କୁ ମୁହଁ ବୁଲାଇ ) ଆପଣ ପୁଣି କିଛି କହିବାକୁ ଚାହୁଁଛନ୍ତି କି ?
( ଶକୁନ୍ତଳା ସଖୀକୁ ଅଙ୍ଗୁଳି ଦେଖାଇ ଡରାଇଲେ )

ରାଜା— ଆପଣ ଠିକ୍ ଅନୁମାନ କରିଛନ୍ତି । ସତ୍‌ଚରିତ ଶୁଣିବାପାଇଁ ଲୋଭ ବଳୁଥିବା ହେତୁ ମୁଁ ଆଉ କିଛି ପଚାରିବାକୁ ଚାହେଁ ।

ପ୍ରିୟ— ତେବେ ଆଉ ଭାବୁଛନ୍ତି କଅଣ ? ତପସ୍ୱୀମାନଙ୍କୁ ସବୁ କିଛି ନିଃସଙ୍କୋଚରେ ପଚାରି ଯାଇପାରେ ।

ରାଜା— ମୁଁ ଆପଣମାନଙ୍କ ସଖୀସମ୍ବନ୍ଧରେ ଏହା ଜାଣିବାକୁ ଚାହୁଁଛି ଯେ—
ଏହି କାମନିରୋଧୀ ମୁନିବ୍ରତ ଏ କେବଳ ବିବାହ ପର୍ଯ୍ୟନ୍ତ ପାଳନ କରିବେ ନା ପ୍ରିୟ ହରିଣୀମାନଙ୍କର, ଯେଉଁମାନଙ୍କର ଚକ୍ଷୁ କି ଏହାଙ୍କର ଚକ୍ଷୁ ସଦୃଶ ସୁନ୍ଦର, ସେମାନଙ୍କ ସଙ୍ଗରେ ସବୁଦିନପାଇଁ ଏଠାରେ ବାସ କରିବେ ? ୨୫

ପ୍ରିୟ— ଆର୍ଯ୍ୟ, ଧର୍ମ ଆଚରଣରେ ମଧ୍ୟ ଏ ପରାଧୀନା । ତେବେ ପିତାଙ୍କର ଇଚ୍ଛା ଯେ, ଯୋଗ୍ୟ ପାତ୍ର ହାତରେ ଏହାକୁ ଅର୍ପଣ କରିବେ ।

राजा—( आत्मगतम् ) न दुरवापा इयं खलु प्रार्थना ।

भव हृदय ! साभिलाषं संप्रति सन्देहनिर्णयो जातः ।
आशङ्कसे यदग्निं तदिदं स्पर्शक्षमं रत्नम् ॥ २६ ॥

शकु—( सरोषमिव ) अणसूए ! गमिस्सं अहं । ( अनसूये ! गमिष्याम्यहम् । )

अन—किंणिमित्तं ? ( किंनिमित्तम् ? )

शकु—इमं असंवद्धप्पलाविणिं पिअंवदं अज्जाए गोदमीए णिवेदइस्सं ।

(इमामसंबद्धप्रलापिनीं प्रियंवदामार्यायै गौतम्यै निवेदयिष्यामि ।)

अन—सहि ! ण जुत्तं ते अकिदसक्कारं अदिहिविसेसं विसज्जिअ सच्छंददो गमणं। (सखि ! न युक्तं ते अकृतसत्कारमतिथिविशेषं विसृज्य स्वच्छन्दतो गमनम् । )

( शकुन्तला न किंचिदुक्त्वा प्रस्थितैव )

राजा—( ग्रहीतुमिच्छन्निगृह्यात्मानम्, आत्मगतम् ) अहो ! चेष्टाप्रतिरूपिका कामिजनमनोवृत्तिः । अहं हि—

अनुयास्यन् मुनितनयां सहसा विनयेन वारितप्रसरः ।
स्थानादनुच्चलन्नपि गत्वेव पुनः प्रतिनिवृत्तः ॥ २७ ॥

प्रिय—( शकुन्तलां निरुध्य ) हला ! ण दे जुत्तं गंतुं । ( हला ! न ते युक्तं गन्तुम् । )

शकु—( सभ्रूभङ्गम् ) किंणिमित्तं ? ( किंनिमित्तम् ? )

प्रिय—रुक्खसेअणे दुवे धारेसि मे । एहि ताव, अत्ताणं मोचिअ तदो गमिस्ससि । (वृक्षसेचने द्वे धारयसि मे । एहि तावत्, आत्मानं मोचयित्वा ततो गमिष्यसि । ) ( बलादेनां निवर्तयति )

राजा—भद्रे ! वृक्षसेचनादेव परिश्रान्तामत्रभवतीं लक्षये । तथाहि अस्याः,—

स्रस्तांसावतिमात्रलोहिततलौ बाहू घटोत्क्षेपणा-
दद्यापि स्तनवेपथुं जनयति श्वासः प्रमाणाधिकः ।
स्रस्तं कर्णशिरीषरोधि वदने घर्माम्भसां जालकं
बन्धे स्रंसिनि चैकहस्तयमिताः पर्याकुला मूर्धजाः ॥ २८ ॥

ରଜା— ( ସ୍ୱଗତ ) ତା'ହେଲେ ମୋର ଅଭିଳାଷ ଦୁର୍ଲଭ ନୁହେଁ ।
ହୃଦୟ, ବର୍ତ୍ତମାନ ତୁ ଅଭିଳାଷୀ ହୁଅ । ସନ୍ଦେହ ଦୂର ହୋଇଗଲାଣି । ଯାହାକୁ ତୁ ଅଗ୍ନି ବୋଲି ଆଶଙ୍କା କରୁଥିଲୁ, ତାହା ହେଉଛି ଏକ ସ୍ପର୍ଶଯୋଗ୍ୟ ରତ୍ନ । ୨୬

ଶକୁ— ( କ୍ରୋଧର ଛଳନା କରି ) ଅନସୂୟା, ମୁଁ ଯିବି ।

ଅନ— କାହିଁକି ?

ଶକୁ— ପ୍ରିୟମ୍ବଦା ଅସଙ୍ଗତ କଥାଗୁଡ଼ାଏ କହୁଛି । ଆର୍ଯ୍ୟା ଗୌତମୀଙ୍କୁ ଯାଇ ଜଣାଇଦେବି ।

ଅନ— ସଖୀ ! ବିଶିଷ୍ଟ ଅତିଥିଙ୍କର ସତ୍କାର ନ କରି ମନ ଇଚ୍ଛା ଚାଲିଯିବାଟା ଉଚିତ ହେବ ନାହିଁ ।

( ଶକୁନ୍ତଳା କିଛି ନ କହି ଚାଲି ଯାଉଥିଲେ )

ରଜା— ( ଶକୁନ୍ତଳାଙ୍କୁ ଧରି ଅଟକାଇବାକୁ ଚାହୁଁଥିଲେ, ମାତ୍ର ନିଜକୁ ସଂଯତ କରି ନେଇ ସ୍ୱଗତ ) କି ଆଶ୍ଚର୍ଯ୍ୟ ! କାମୀଜନମାନଙ୍କର ମନୋବୃତ୍ତି ସେମାନଙ୍କ କାର୍ଯ୍ୟରେ ପରିଣତ ହୋଇଯାଏ !
ମୁଁ ଯେତେବେଳେ ମୁନିକନ୍ୟାର ପଛେ ପଛେ ଯିବାକୁ ଉଦ୍ୟତ ହେଉଥିଲି, ସେତେବେଳେ ଶିଷ୍ଟାଚାର ହଠାତ୍ ମୋର ଗତିରୋଧ କଲା । ଏ ସ୍ଥାନରୁ ମୁଁ ଆଦୌ ଉଠିନାହିଁ, ଅଥଚ ଯାଇ ଫେରି ଆସିଲା ପରି ମୋତେ ଜଣାପଡୁଛି ! ୨୭

ପ୍ରିୟ— ( ଶକୁନ୍ତଳାଙ୍କୁ ଅଟକାଇ ) ଶକୁନ୍ତଳା, ତୋର ଯିବା ଉଚିତ ହେବ- ନାହିଁ ।

ଶକୁ— ( ଭ୍ରୂକୁଂଚନ କରି ) କାହିଁକି ?

ପ୍ରିୟ— ମୁଁ ତୋର ଦୁଇଟି ଗଛରେ ପାଣି ଦେଇଛି । ତୁ ମୋର ଦୁଇଟି ଗଛରେ ପାଣି ଦେଇ ଶୁଝି ଦେ, ତା ପରେ ଯିବୁ ।

( ଜବରଦସ୍ତି ତାକୁ ଫେରାଇ ଆଣିଲା )

ରଜା— ଭଦ୍ରେ, ମୁଁ ଦେଖୁଛି, ଜଳସେଚନ କରି କରି ଏ ଅତ୍ୟନ୍ତ କ୍ଳାନ୍ତ ହୋଇ- ଗଲେଣି । କାରଣ,
କଳସୀ ଉଠାଇ ଏହାଙ୍କର ବାହୁମୂଳ ଶିଥିଳ ହୋଇ ଗଲାଣି ଏବଂ କରତଳ ଅତ୍ୟନ୍ତ ଲୋହିତ ଦେଖାଗଲାଣି । ଦୀର୍ଘଶ୍ୱାସ ହେତୁ ସ୍ତନ- ଯୁଗଳ ଏପର୍ଯ୍ୟନ୍ତ ସ୍ପନ୍ଦିତ ହେବାରେ ଲାଗିଛି । ମୁଖରୁ ପ୍ରଚୁର ସ୍ୱେଦବିନ୍ଦୁ ଝରିଲାଣି ଏବଂ ସେଥିରେ ଲାଖିଗଲାଣି କର୍ଣ୍ଣଭୂଷଣ ଶିରୀଷ ଫୁଲ । ଆଉ ମଧ୍ୟ କେଶପାଶ ଫିଟିଯାଇଥିବାରୁ ଏ ତାହାକୁ ଗୋଟିଏ ହାତରେ ଧରି ରଖିଛନ୍ତି । ୨୮

तदहमेनानृणां करोमि। ( अङ्गुलीयं दातुमिच्छति )

( उभे नाममुद्राक्षराण्यनुवाच्य परस्परमवलोकयतः )

राजा—अलमन्यथा संभाव्य। राज्ञः परिग्रहोऽयम्।

प्रिय—तेण हि णारिहदि एदं अंगुलीअअं अंगुलीविओअं। अज्जस्स वअणेण ज्जेव अणिरिणा एसा। ( किंचिद् विहस्य ) हला सउंदले! मोइदासि अणुअंपिणा अज्जेण, अहवा महाराएण, गच्छ दाणिं। ( तेन हि नार्हत्येतदङ्गुलीयकमङ्गुलीवियोगम्। वचनेनैव अनृणा एषा। ( किञ्चिद् विहस्य ) हला शकुन्तले! मोचितासि अनुकम्पिना आर्येण, अथवा महाराजेन, गच्छेदानीम्। )

शकु—( आत्मगतम् ) गमिस्सं जइ अत्तणो पहविस्सं। ( प्रकाशम् ) का तुमं विसज्जिदव्वस्स रुंधिदव्वस्स वा? ( गमिष्यामि, यद्यात्मनः प्रभविष्यामि। ( प्रकाशम् ) का त्वं विसर्जितव्यस्य रोद्धव्यस्य वा? )

राजा—( शकुन्तलां विलोक्य, आत्मगतम् ) किं नु खलु यथा वयम्, एवम् इयमपि अस्मान् प्रति स्यात्। अथवा लब्धावकाशा मे प्रार्थना। कुतः—

वाचं न मिश्रयति यद्यपि मद्वचोभिः
कर्णं ददात्यवहिता मयि भाषमाणे।
कामं न तिष्ठति मदानन-संमुखीयं
भूयिष्ठमन्यविषया न तु दृष्टिरस्याः॥ २९॥

( नेपथ्ये )

भो भोस्तपस्विनः! संनिहितास्तपोवनसत्त्वरक्षायै भवत। प्रत्यासन्नः किल मृगयाविहारी पार्थिवो दुष्यन्तः।

तुरगखुरहतस्तथा हि रेणु-
र्विटप-विषक्त-जलार्द्रवल्कलेषु।
पतति परिणतारुणप्रकाशः
शलभसमूह इवाश्रमद्रुमेषु॥ ३०॥

अपि च—

तीव्राघातादभिमुखतरुस्कन्धभग्नैकदन्तः
पादाकृष्टव्रततिवलयासङ्गसंजातपाशः।

ତେଣୁ ମୁଁ ଏହାଙ୍କର ଋଣ ଶୁଝିଦେବି (ମୁଦିଟିଏ ଦେବାକୁ ଇଚ୍ଛା କଲେ) ( ସଖୀ ଦୁଇଜଣ ମୁଦି ଉପରେ ଲେଖା ହୋଇଥିବା ନାମାକ୍ଷର ଉଚ୍ଚାରଣ କରି ପରସ୍ପରକୁ ଗ୍ଣହିଁଲେ )

ରଜା— ଅନ୍ୟ ପ୍ରକାର ଭବନ୍ତୁ ନାହିଁ । ଏହା ରଜାଙ୍କଠାରୁ ପ୍ରାପ୍ତ ଅନୁଗ୍ରହ ।

ପ୍ରିୟ— ତେବେ ଏଇ ମୁଦିକୁ ଆପଣଙ୍କ ଅଙ୍ଗୁଳିରୁ ପୃଥକ୍ କରିବା ଅନୁଚିତ । ଆପଣଙ୍କର ବଚନ ଦ୍ୱାରା ହିଁ ଏହାଙ୍କ ଋଣ ପରିଶୋଧ ହୋଇଗଲାଣି । ( ସ୍ମିତ ହାସ୍ୟରେ ) ଶକୁନ୍ତଳା ! ଏହି ମହାଶୟ, ଅଥବା ମହାରଜ ଦୟାରେ ତୋତେ ମୁକ୍ତ କରି ଦେଇଛନ୍ତି ! ବର୍ତ୍ତମାନ ତୁ ଯା ।

ଶକ— [ ସ୍ୱଗତ ] ଯଦି ନିଜ ଉପରେ କ୍ଷମତା ଥାଏ, ତା'ହେଲେ ସିନା ଯିବି । ( ପ୍ରକାଶ୍ୟରେ ) ମୋତେ ପଠାଇ ଦେବାକୁ ବା ଅଟକାଇ ରଖିବାକୁ ତୁ କିଏ ?

ରଜା— ( ଶକୁନ୍ତଳାକୁ ଗ୍ଣହିଁ ସ୍ୱଗତ ) ମୁଁ ଏହା ପ୍ରତି ଯେପରି ଅନୁରକ୍ତ, ଏ କଅଣ ମୋ ପ୍ରତି ସେହିପରି ଅନୁରକ୍ତା ? ହଁ, ମୋ ଅଭିଳାଷର ଅବକାଶ ଅଛି । କାରଣ,

ଏ ମୋ କଥାର ଉତ୍ତର ନ ଦେଉଥିଲେ ମଧ୍ୟ ମୁଁ ଯେତେବେଳେ କହୁଛି, ଧ୍ୟାନ ଦେଇ ଶୁଣୁଛି । ଆଉ ଯଦ୍ୟପି ମୋ ମୁହଁକୁ ଗ୍ଣହିଁ ଠିଆ ହେଉନାହିଁ, ତଥାପି ଏହାର ଦୃଷ୍ଟି ଅନ୍ୟ ଆଡ଼କୁ ବେଶି ଯାଉନାହିଁ । ୨୯

[ ନେପଥ୍ୟେ ]

ହେ ହେ ତପସ୍ୱୀଗଣ, ତପୋବନର ପ୍ରାଣୀମାନଙ୍କୁ ରକ୍ଷା କରିବାକୁ ପ୍ରସ୍ତୁତ ହୁଅ । ରଜା ଦୁଷ୍ୟନ୍ତ ମୃଗୟା ନିମନ୍ତେ ଆସି ନିକଟବର୍ତ୍ତୀ ହେଲେଣି ।

ଅଶ୍ୱମାନଙ୍କର ଖୁରରୁ ଧୂଳି ଉଡ଼ି ସନ୍ଧ୍ୟାକାଳୀନ ସୂର୍ଯ୍ୟକିରଣ ପରି ଦେଖାଯାଉଛି । ଆଶ୍ରମବୃକ୍ଷଗୁଡିକ, ଯେଉଁଗୁଡ଼ିକର ଶାଖାରେ ଆର୍ଦ୍ର ବଲ୍‌କଳ-ବସ୍ତ୍ରମାନ ଟଙ୍ଗା ହୋଇଛି, ସେଗୁଡ଼ିକ ଉପରେ ପତଙ୍ଗଗଣି ଭଳି ଧୂଳି ଆସି ପଡ଼ିଲାଣି । ୩୦

ଆଉମଧ୍ୟ, ରଥ ଦେଖି ଭୟଭୀତ ହୋଇଥିବା ଏକ ହସ୍ତୀ ଆମର ତପୋବନ ଭିତରକୁ ପଶିଆସୁଛି । ସମ୍ମୁଖବର୍ତ୍ତୀ ବୃକ୍ଷରେ ପ୍ରଚଣ୍ଡ ବେଗରେ ଦନ୍ତାଘାତ କରିବା ଫଳରେ ସେହି ହସ୍ତୀର ଗୋଟିଏ ଦନ୍ତ ଭାଙ୍ଗିଯାଇଛି । ତାହାର ପାଦରେ ଟାଣି ହୋଇ ଲତାଗୁଡ଼ିଏ ଫାଶ ଭଳି ବାନ୍ଧି ହୋଇଛି । ମୃଗମାନେ ତାକୁ ଦେଖି ଭୟରେ

मूर्तो विघ्नस्तपस इव नो भिन्नसारङ्गयूथो
धर्मारण्यं प्रविशति गजः स्यन्दनालोकभीतः ॥ ३१ ॥

( सर्वाः कर्णं दत्त्वा किंचिदिव संभ्रान्ताः )

राजा—( आत्मगतम् ) अहो धिक् । पौरा अस्मदन्वेषिणस्तपोवनमुपरुन्धन्ति । भवतु, प्रतिगमिष्यामस्तावत् ।

अन—अज्ज ! इमिणा आरण्णअवुत्तंतेण पज्जाउल म्ह । अणुजाणीहि णो उडअगमणस्स । ( आर्य ! अनेनारण्यकवृत्तान्तेन पर्याकुलाः स्मः । अनुजानीहि नः उटजगमनाय । )

राजा—( ससंभ्रमम् ) गच्छन्तु भवत्यः । वयमप्याश्रमपीडा यथा न भवति तथा प्रयतिष्यामहे ।

( सर्वं उत्तिष्ठन्ति )

सख्यौ—अज्ज ! असंभाविदअदिहिसक्कारं भूओ वि पेक्खणणिमित्तं लज्जेमो अज्जं विण्णवेदुं । ( आर्य ! असंभावितातिथिसत्कारं भूयोऽपि प्रेक्षणनिमित्तं लज्जावहे आर्यं विज्ञापयितुम् । )

राजा—मा मैवम् , दर्शनेनैवात्रभवतीनां पुरस्कृतोऽस्मि ।

शकु—(गच्छन्ती) अहिणवकुससूइपरिक्खदं मे चलणं । कुरवअसाहापरिलग्गं च मे वक्कलं । ता पडिवालेध मं जाव णं मोआवेमि । ( अभिनवकुशसूचि-परिक्षतौ मे चरणौ कुरवकशाखापरिलग्नं च मे वल्कलम् । तत् प्रतिपालयतं माम् , यावदेतत् मोचयामि । )

( शकुन्तला राजानमवलोकयन्ती सव्याजं विलम्ब्य
सह सखीभ्यां निष्क्रान्ता )

राजा—( निश्वस्य ) अहं पुनः मन्दौत्सुक्योऽस्मि नगरगमनं प्रति । यावदानुयात्रिकान् समेत्य नातिदूरे तपोवनस्य निवेशयेयम् । ( द्विपदिकया ) न खलु शक्नोमि शकुन्तलाव्यापारादात्मानं निवर्तयितुम् । मम हि,—

गच्छति पुरः शरीरं धावति पश्चादसंस्थितं चेतः ।
चीनांशुकमिव केतोः प्रतिवातं नीयमानस्य ॥ ३१ ॥

( निष्क्रान्ताः सर्वे )

॥ इति प्रथमोऽङ्कः ॥

'ଏଣେ ତେଣେ ପଳାଇବାରେ ଲାଗିଛନ୍ତି ; ମନେ ହେଉଛି, ସେହି ହସ୍ତୀ ସତେଯେପରି ତପସ୍ୟାର ମୂର୍ତ୍ତିମନ୍ତ ବିଘ୍ନ ! ୩୧

( ସମସ୍ତେ କାନଡେରି ଟିକିଏ ଭୟଭୀତ ହୋଇଗଲେ )

ରଜା— ( ସ୍ୱଗତ ) ଆଃ ! ଦୁଃଖର ବିଷୟ, ମୋତେ ଖୋଜିବାକୁ ଆସି ପୁରଜନମାନେ ତପୋବନକୁ ଅବରୋଧ କଲେଣି । ଆଚ୍ଛା, ବର୍ତ୍ତମାନ ସେମାନଙ୍କ ପାଖକୁ ଫେରିଯିବି ।

ଅନ— ଆର୍ଯ୍ୟ, ଏଇ ବନ୍ୟ ହସ୍ତୀ କଥା ଶୁଣି ଆମକୁ ଡର ଲାଗିଲଣି, ବର୍ତ୍ତମାନ କୁଟୀରକୁ ଯିବାପାଇଁ ଆମକୁ ଅନୁମତି ଦିଅନ୍ତୁ ।

ରଜା— (ବ୍ୟସ୍ତ ହୋଇ) ହଁ ହଁ, ଆପଣମାନେ ଯାଆନ୍ତୁ ।. ମୁଁ ମଧ୍ୟ, ଆଶ୍ରମବାସୀମାନଙ୍କର ଯେପରି କଷ୍ଟ ନ ହୁଏ ସେହିପରି ବ୍ୟବସ୍ଥା କରୁଛି ।

( ସମସ୍ତେ ଉଠି ଠିଆ ହେଲେ )

ସଖୀଦ୍ୱୟ—ଆର୍ଯ୍ୟ, ଆମେମାନେ ଆପଣଙ୍କର କିଛି ମାତ୍ର ଅଭ୍ୟର୍ଥନା କରିପାରିଲୁ ନାହିଁ । ତେଣୁ ଆପଣ ପୁଣି ଥରେ ଆମକୁ ଦର୍ଶନ ଦେବେ, ଏହି ଅନୁରୋଧ କଲାବେଳକୁ ଆମେ ଲଜ୍ଜା ବୋଧ କରୁଛୁ ।

ରଜା— ନା ନା, ତାହା ନୁହେଁ । ଆପଣମାନଙ୍କର ଦର୍ଶନରେ ହିଁ ମୁଁ ଅଭ୍ୟର୍ଥିତ ।

ଶକୁ— (ଯାଉଁ ଯାଉଁ) ଉଃ ! ନୂଆ କୁଶଗଜାଟାଏ ମୋ ପାଦରେ ଗଳିଗଲା । ପୁଣି, କୁରବକ ଗଛର ଶାଖାରେ ମୋ ବଲ୍‌କଳବସ୍ତ୍ର ଛନ୍ଦି ହୋଇଗଲଣି । ମୁଁ ଏହାକୁ କାଢି ଆଣିବା ଯାଏ ତୁମେ ଦୁହେଁ ଟିକିଏ ଅପେକ୍ଷା କର ।

( ଛଳନାରେ ବିଳମ୍ବ କରି ରଜାଙ୍କ ଆଡକୁ ଗ୍ୱହିଁ ସଖୀଦୁହିଁଙ୍କ ସହିତ ପ୍ରସ୍ଥାନ କଲେ )

ରଜା— ( ଦୀର୍ଘ ନିଶ୍ୱାସ ପକାଇ ) ନଗରକୁ ଯିବାପାଇଁ ମୋର ଆଉ ଆଗ୍ରହ ନାହିଁ । ଯାଉଛି, ଅନୁଚରମାନଙ୍କୁ ଏକତ୍ର କରାଇ ତପୋବନର ଅନତିଦୂରରେ ରଖାଇବି । ଶକୁନ୍ତଳା ଠାରୁ ମୁଁ ନିଜକୁ ନିବୃତ୍ତ କରିପାରୁନାହିଁ ; କାରଣ

ପତାକାକୁ ବାୟୁର ପ୍ରତିକୂଳ ଦିଗରେ ନେଲେ ତା'ର ଚୀନବସ୍ତ୍ର ଯେପରି ପଛକୁ ଉଡୁଥାଏ, ସେହିପରି ମୋର ଶରୀର ଆଗକୁ ଯାଉଥିଲେ ମଧ୍ୟ ଅସ୍ଥିର ମନ କେବଳ ପଛକୁ ଦୌଡୁଛି ।

[ ସମସ୍ତଙ୍କର ପ୍ରସ୍ଥାନ ]

॥ ପ୍ରଥମ ଅଙ୍କ ସମାପ୍ତ ॥

—o—

# द्वितीयोऽङ्कः

( ततः प्रविशति विषण्णो विदूषकः )

विदू—( निःश्वस्य ) भो कट्ठं । एदस्स मआआसीलस्स रण्णो वअस्स-भावेण णिव्विण्णो म्हि । अअं मओ अअं वराहो अअं सद्दूलो त्ति मज्झण्णे पि गिम्हविरलपाअवच्छाआसु वणराईसु आहिंडी-अदि अडवीदो अडवी । पत्तसंकरकसाआइं कडुआइं गिरिणई-जलाइं पीअंति अणिअदवेलं सुल्लमसभूइट्ठो आहारो अण्हीअदि । तुरगाणुधावणकंडिदसंधिणो रत्तिम्मि वि णिकाम सइदव्वं णत्थि । तदो महंते एव्व पच्चूसे दासीए-पुत्तेहिं सउणिलुद्धएहिं वणग्गहणकोलाहलेण पडिवोधिदो म्हि । एत्तएण दाणिं वि पोडा ण णिक्कमदि । तदो गंडस्स उवरि पिडओ संवुत्तो । हिओ किल अम्हेसु ओहीणेसु तत्तहोदो मआणुसारेण अस्समपदं पविट्ठस्स तावसकण्णआ सउंदला मम अधण्णदाए दंसिदा । संपद णअरगमणस्स मणं कहं वि ण करेदि । अज्ज वि से तं एव्व चिंतअंतस्स अक्खीसु पभादं आसि । का गदी ? जाव णं किदाचारपरिक्कमं पेक्खामि । (परिक्रम्यावलोक्य च) एसो वाणासणहत्थाहिं जवणीहिं वण-पुप्फमालाधारिणीहिं पडिवुदो इदो एव्व आअच्छदि पिअव-अस्सो । होदु, अंगभंगविअलो वि भविअ चिट्ठिस्सं जइ एव्वं वि णाम विस्समं लहेअं । ( निश्श्वस्य ) ( भोः ! कष्टम् । एतस्य मृगयाशीलस्य राज्ञो वयस्यभावेन निर्विण्णोस्मि । अय मृगः, अयं वराहः, अयं शार्दूल इति मध्याह्नेऽपि ग्रीष्मविरल-पादपच्छायासु वनराजीष्वाहिण्ड्यतेऽटवीतोऽटवी । पत्रसंकर-कषायाणि कटूनि गिरिनदीजलानि पोयन्ते । अनियतवेल शूल्यमांसभूयिष्ठ आहारो भुज्यते । तुरगानुधावनकण्डितसंधेः रात्रावपि निकाम शयितव्यं नास्ति । ततो महत्येव प्रत्यूषे दास्याः पुत्रैः शकुनिलुब्धकैर्वनग्रहणकोलाहलेन प्रतिबोधि-तोऽस्मि । इयतेदानीमपि पीडा न निष्क्रामति । ततो गण्डस्योपरि स्फोटः संवृत्तः । ह्यः किलास्मास्ववहीनेषु तत्रभवतो मृगानुसारेणाश्रमपदं प्रविष्टस्य तापसकन्यका शकुन्तला ममाधन्यतया दर्शिता ।

# ଦ୍ୱିତୀୟ ଅଙ୍କ

( ବିଷଣ୍ଣ ଭାବରେ ବିଦୂଷକଙ୍କର ପ୍ରବେଶ )

ବିଦୂ– ( ଦୀର୍ଘ ନିଃଶ୍ୱାସ ପକାଇ ) ଓଃ ! କି କଷ୍ଟ ! ଏଇ ମୃଗୟାପ୍ରିୟ ରାଜାଙ୍କର ବନ୍ଧୁ ହୋଇ ମୁଁ ବଡ ବ୍ୟସ୍ତ ହୋଇଗଲିଣି । ହେଇ ମୃଗ, ହେଇ ବରାହ, ହେଇ ବାଘ—ଏମିତି ଦିନ ଦିପହରେ ବି ବଣକୁ ବଣ ବୁଲିବାକୁ ପଡୁଛି । ଖରଦିନେ ବଣରେ ଗଛଛାଇ ତ କମ୍ । ପିଇବାକୁ ପାହାଡ଼ୀ ନଈର ପାଣି । ତାହା ପୁଣି ପତ୍ର ପଡ଼ି କଷା ଲାଗୁଛି । ଶୂଳମୂନରେ ସେକା ମାଂସ ପ୍ରଧାନ ଆହାର । ତାହା ପୁଣି ନିର୍ଦ୍ଦିଷ୍ଟ ସମୟରେ ଖାଇବାକୁ ମିଳୁନି । ଘୋଡ଼ା ପିଠିରେ ଚଢି, ଶିକାର ପଛରେ ଦଉଡି ଦଉଡି ଦେହର ଗଣ୍ଠିସବୁ ଦରଜ । ରାତିରେ ଭଲ ନିଦ ହେଉନାହିଁ । ସେଥିରେ ପୁଣି ସକାଳ ହୋଇଥିବ କି ନାହିଁ, ଦାସୀପୁତ୍ର ପକ୍ଷୀଧରଳିଗୁଡ଼ାକ ବଣରେ ହୋ ହୋ ହୋଇ ନିଦ ଭାଙ୍ଗିଦେବେ । ଏତିକିରେ ଯେ ଯନ୍ତ୍ରଣା ସରିଲା, ତା'ନୁହେଁ । ତା'ପରେ ପୁଣି ଗାଲ ଉପରେ ବଥ ଉଠିଲା ଭଳି କଥାଟାଏ ହେଲାଣି ! କାଲି ଆମେ ପଛରେ ପଡ଼ିଯିବାରୁ ମହାରାଜ ମୃଗ ପଛରେ ଧାଇଁ ଧାଇଁ ଆଶ୍ରମରେ ପହଞ୍ଚିଲେ ଏବଂ ମୋର ଦୁର୍ଭାଗ୍ୟକୁ ଶକୁନ୍ତଳା ନାମର ଏକ ମୁନିକନ୍ୟାକୁ ଦେଖି ଆସିଲେ ।

सांप्रतं नगरगमनस्य मनः कथमपि न करोति। अद्यापि तस्य तामेव चिन्तयतोऽक्ष्णोः प्रभातमासीत्। का गतिः? यावत् तं कृताचारपरिक्रमं पश्यामि। (परिक्रम्यावलोक्य च) एष बाणासनहस्ताभिर्यवनीभिर्वनपुष्पमालाधारिणीभिः परिवृतः इत एवागच्छति प्रियवयस्यः। भवतु, अङ्गभङ्गविकल इव भूत्वा स्थास्यामि। यद्येवमपि नाम विश्रामं लभेय। (दण्डकाष्ठमवलम्ब्य स्थितः)

(ततः प्रविशति यथानिर्दिष्टपरिवारो राजा)

राजा—(आत्मगतम्)

कामं प्रिया न सुलभा मनस्तु तद्भावदर्शनाश्वासि।
अकृतार्थेऽपि मनसिजे रतिमुभयप्रार्थना कुरुते ॥ १ ॥

(स्मितं कृत्वा) एवमात्माभिप्रायसंभावितेष्टजनचित्तवृत्तिः प्रार्थयिता विडम्ब्यते—

स्निग्धं वीक्षितमन्यतोऽपि नयने यत् प्रेरयन्त्या तया
यातं यच्च नितम्बयोर्गुरुतया मन्दं विलासादिव।
मा गा इत्युपरुद्धया यदपि सा सासूयमुक्ता सखी
सर्वं तत् किल मत्परायणमहो कामी स्वतां पश्यति ॥ २ ॥

विदू—(तथास्थित एव) भो वअस्स! ण मे हत्थपाआ पसरंति। वाआमेत्तएण जीआपइस्सं। (भो वयस्य! न मे हस्तपादं प्रसरति। वाङ्मात्रेण जापयिष्यामि।)

राजा—(सस्मितम्) कुतोऽयं गात्रोपघातः?

विदू—कहं कुदो किल? सअं अच्छी आउलीकरिअ अस्सुकारणं पुच्छेसि? (कथं? कुतः किल? स्वयमेव अक्षि आकुलीकृत्य अश्रुकारणं पृच्छसि?)

राजा—न खल्ववगच्छामि।

ବର୍ତ୍ତମାନ ଆଉ ସେ ନଗରକୁ ଯିବାକୁ ମନ ବଳାଉ ନାହାଁନ୍ତି । ଆଜି ମଧ୍ୟ ତାକୁ ହିଁ ଭାବି ଭାବି ଆଖିରେ ଆଖିରେ ତାଙ୍କର ରାତି ପାହିଗଲା । ଉପାୟ କଅଣ ? ଆଚ୍ଛା ଯାଉଛି, ସେ ପ୍ରାତଃ କୃତ୍ୟ ସାରିବେଣି, ତାଙ୍କୁ ଦେଖା କରିବି । ( କିଛି ଦୂର ଯାଇ ଓ ନିରୀକ୍ଷଣ କରି) ହେଇ ତ, ପ୍ରିୟ ବନ୍ଧୁ ଏଣିକି ଆସୁଛନ୍ତି । ଯବନୀମାନେ ହାତରେ ଧନୁ ଧରି, ବନଫୁଲର ମାଳ ପିନ୍ଧି ତାଙ୍କୁ ପରିବେଷ୍ଟନ କରିଛନ୍ତି । ଆଚ୍ଛା ହେଉ, ହାତ ଗୋଡ ଭାଙ୍ଗି ଯାଇଥିବା ଭଳି ଠିଆ ହୋଇ ରହିବି । ଏହାଦ୍ୱାରା ଯଦି କିଛି ବିଶ୍ରାମ ମିଳିବ !

(ବାଡ଼ିର ଆଶ୍ରୟ ନେଇ ଠିଆ ହୋଇ ରହିଲେ)

( ଉପର ବର୍ଣ୍ଣନା ଅନୁସାରେ ପରିଜନମାନଙ୍କ ସହିତ ରାଜାଙ୍କର ପ୍ରବେଶ )

ରାଜା— ( ସ୍ୱଗତ )

ପ୍ରିୟା ତ ସହଜରେ ମିଳିବ ନାହିଁ । ତଥାପି ତାର ଭାବ ଦର୍ଶନ କରିଥିବାରୁ ମୋର ମନ ଆଶ୍ୱସ୍ତ । ଅଭିଳାଷ ଚରିତାର୍ଥ ନ ହେଲେ ମଧ୍ୟ 'ଉଭୟେ ଉଭୟକୁ ଚାହାଁନ୍ତି' ଏହା ଜାଣିଲେ ହିଁ ଆନନ୍ଦ ମିଳେ । ୧
( ସ୍ମିତ ହାସ୍ୟ କରି ) ଏହିପରି, ପ୍ରଣୟପ୍ରାର୍ଥୀ ନିଜର ଅଭିପ୍ରାୟ ଅନୁସାରେ ପ୍ରିୟଜନର ଚିତ୍ତବୃତ୍ତିକୁ କଳନା କରି ପ୍ରତାରିତ ହୁଏ ।

ଶକୁନ୍ତଳା ତାର ସୁନ୍ଦର ଚାହାଣିରେ ଅନ୍ୟ ଆଡ଼କୁ ଚାହିଁବା ସଙ୍ଗେ ସଙ୍ଗେ ମୋ ଆଡ଼କୁ ମଧ୍ୟ ଚାହୁଁଥିଲା ; ନିତମ୍ବର ଭାର ହେତୁ ମନ୍ଦ ମନ୍ଦ ଗତିରେ, ସତେ ଯେପରି ପ୍ରେମବିଳାସରେ ଚାଲୁଥିଲା, ଏବଂ ସଖୀମାନେ 'ଯାଅ ନାହିଁ' ବୋଲି କହନ୍ତେ ସେମାନଙ୍କୁ କ୍ରୋଧରେ ଉତ୍ତର ଦେଲା । ମାତ୍ର ମୋତେ ବୋଧ ହେଉଛି, ଏ ସମସ୍ତ ସେ ମୋ'ରି ଉଦ୍ଦେଶ୍ୟରେ ହିଁ କରିଥିଲା । କି ଆଶ୍ଚର୍ଯ୍ୟ ! କାମୀଜନ ନିଜ ନିମନ୍ତେ ସମସ୍ତ ଉଦ୍ଦିଷ୍ଟ ବୋଲି ମନେ କରେ । ୨

ବିଦୂ— (ସେହି ଭଳି ଠିଆ ହୋଇଥିବା ଅବସ୍ଥାରେ) ବନ୍ଧୁ, ମୋ ହାତଗୋଡ ଚଳୁନାହିଁ । ତେଣୁ ଖାଲି ବଚନ ଦ୍ୱାରା ତୁମର ଜୟଗାନ କରୁଛି ।

ରାଜା— (ସ୍ମିତହାସ୍ୟରେ) ତୁମର ହସ୍ତ ପଦ କିପରି ଅଚଳ ହୋଇଗଲା ?

ବିଦୂ— କିପରି......... ? ନିଜେ ଆଖିରେ ଆଙ୍ଗୁଳି ଗୁଞ୍ଜିଦେଇ ପଚାରୁଛ କଅଣ ନା ଲୁହ ବହୁଛି କାହିଁକି ?

ରାଜା— ମୁଁ ତୁମ କଥା ଆଦୌ ବୁଝିପାରୁ ନାହିଁ ।

विदू—भो वअस्स ! जं वेदसो खुज्जलीलं विडंवेदि तं किं अत्तणो पहावेण उद णईवेअस्स ? ( भो वयस्य ! यद् वेतसः कुब्जलीलां विडम्बयति, तत् किमात्मनः प्रभावेण, उत नदीवेगस्य ? )

राजा—नदीवेगस्तत्र कारणम् ।

विदू—मम वि भवं । ( ममापि भवान् । )

राजा—कथमिव ?

विदू—एव्वं राअकज्जाणि उज्झिअ तारिसे आउलप्पदेसे वणचरवुत्तिणा तुए होदव्वं जंसच्चं पच्चहं सावद-समुच्छारणेहिं संखोहिअ-संधिबंधाणं मम गत्ताणं अणीसो म्हि संवुत्तो । ता पसादइस्सं विसज्जिदुं मं एक्काहं वि दाव विस्समिदुं । ( एवं राज-कार्याणि उज्झित्वा तादृश आकुलप्रदेशे वनचरवृत्तिना त्वया भवितव्यम् । यत्सत्यम्, प्रत्यहं श्वापदसमुत्सारणैः संक्षोभित-संधिबन्धानां मम गात्राणामनीशोऽस्मि संवृत्तः । तत् प्रसादयिष्यामि विसर्जितुं मामेकाहमपि तावद् विश्रमितुम् । )

राजा—( आत्मगतम् ) अयं चैवमाह, ममापि काश्यपसुतामनुस्मृत्य मृगयां प्रति निरुत्सुकं चेतः । तथाहि—

न नमयितुमधिज्यमस्मि शक्तो
धनुरिदमाहितसायकं मृगेषु ।
सहवसतिमुपेत्य यैः प्रियायाः
कृत इव मुग्धविलोकितोपदेशः ॥ ३ ॥

विदू—( राज्ञो मुखं विलोक्य ) अत्तभवं किं वि हिअए करिअ मंतेदि । अरण्णे मए रुदिअं आसि । (अत्रभवान् किमपि हृदये कृत्वा मन्त्रयते । अरण्ये मया रुदितमासीत् । )

राजा—( सस्मितम् ) किमन्यत् ? अनतिक्रमणीयं मे सुहृद्वाक्यमिति स्थितोऽस्मि ।

विदू—चिरं जीअ । ( चिरं जीव । ) ( गन्तुमिच्छति )

राजा—वयस्य ! तिष्ठ, सावशेषं मे वचः ।

विदू—आणवेदु भवं । ( आज्ञापयतु भवान् । )

ବିଦୂ– ଆଚ୍ଛା ବନ୍ଧୁ, ବେତଗଛ ଯେ କୁଜା ପରି ହୋଇଥାଏ, ତାହା ନିଜ ଦୋଷରୁ ନା ନଦୀ ସ୍ରୋତର ପ୍ରଭାବରୁ ?

ରଜା:– ନଦୀସ୍ରୋତର ପ୍ରଭାବରୁ ।

ବିଦୂ– ସେହିପରି ଆପଣ ହିଁ ମୋର କୁଜା ହେବାର ହେତୁ ।

ରଜା– କିପରି ?

ବିଦୂ– ଆପଣ ରାଜକାର୍ଯ୍ୟ ଛାଡ଼ି ଏଭଳି ଭୀଷଣ ସ୍ଥାନରେ ବ୍ୟାଧବୃତ୍ତି ଅବଲମ୍ବନ କରି ରହିଛନ୍ତି । ଆଉ ପ୍ରତିଦିନ ହିଂସ୍ର ପଶୁଗୁଡାଙ୍କୁ ଘଉଡ଼େଇ ମୋ ଦେହର ଗଣ୍ଠି ସବୁ ଦରଜ ହୋଇଗଲାଣି । ଫଳରେ ଅଙ୍ଗ ପ୍ରତ୍ୟଙ୍ଗ ଉପରେ ମୋର ଆଉ କ୍ଷମତା ନାହିଁ । ତେଣୁ ମୁଁ ପ୍ରାର୍ଥନା କରୁଛି, ଅନ୍ତତଃ ଦିନଟିଏ ମୋତେ ବିଶ୍ରାମ ଦେବାକୁ ପ୍ରସନ୍ନ ହୁଅନ୍ତୁ ।

ରଜା– ( ସ୍ୱଗତ ) ଏ ଏଭଳି କହୁଛି । ଶକୁନ୍ତଳା କଥା ଭାବି ଭାବି ମୋ ମନ ମଧ୍ୟ ଶିକାର ପ୍ରତି ବିତୃଷ୍ଣ ହୋଇଗଲାଣି । କାରଣ;

ଧନୁରେ ଗୁଣ ଯୋଚି ମୃଗମାନଙ୍କ ଆଡ଼କୁ ଶର ନିକ୍ଷେପ କରିବାକୁ ମୁଁ ଆଉ ସମର୍ଥ ନୁହେଁ । ଯେହେତୁ ସେମାନେ ମୋ ପ୍ରିୟା ସହିତ ବାସକରି ସତେ ଯେପରି ତାକୁ ସୁନ୍ଦର ଚାହାଣି ଶିକ୍ଷା ଦେଇଛନ୍ତି ! ୩

ବିଦୂ– ଆପଣ ମନେ ମନେ କଅଣ ଭାବୁଛନ୍ତି, ଆଉ ମୁଁ ଏଣେ ଅରଣ୍ୟରୋଦନ କରୁଛି !

ରଜା– ଆଉ ଭାବିବି କଅଣ ? ମିତ୍ରବାକ୍ୟ ଲଙ୍ଘନୀୟ ନୁହେଁ, ଏଣୁ ନୀରବ ରହିଥିଲି ।

ବିଦୂ– ମହାରାଜ, ଦୀର୍ଘଜୀବୀ ହୁଅ । ( ଯିବାକୁ ଇଚ୍ଛା କଲେ )

ରଜା– ବନ୍ଧୁ, ଅପେକ୍ଷା କର, ତୁମ ସହିତ ଆହୁରି କଥା ହେବାର ଅଛି ।

ବିଦୂ– ଆଜ୍ଞା ଦେବା ହୁଅନ୍ତୁ !

राजा—विश्रान्तेन भवता ममाप्यनायासे कर्मणि सहायेन भवितव्यम् ।

विदू—किं मोदअखंडिआए ? तेण हि अअं सुगहीदो खणो ।
(किं मोदकखण्डिकायाम् ? तेन ह्ययं सुगृहीतः क्षणः ।)

राजा—यत्र वक्ष्यामि । कस्कोऽत्र भोः ?

दौवा—( प्रविश्य प्रणम्य च ) आणवेदु भट्टा । ( आज्ञापयतु भर्ता । )

राजा—रैवतक ! सेनापतिस्तावदाहूयताम् ।

दौवा—तह । ( तथा । ) ( निष्क्रम्य सेनापतिना सह पुनः प्रविश्य ) एसो अण्णावअणुक्कंठो भट्टा इदो दिण्णदिट्ठी एव्व चिट्ठदि । उवसप्पदु अज्जो । ( निष्क्रम्य सेनापतिना सह पुनः प्रविश्य ) ( एष आज्ञावचनोत्कण्ठो भर्ता इतो दत्तदृष्टिरेव तिष्ठति । उपसर्पत्वार्यः । )

सेना—( राजानमवलोक्य ) कथं दृष्टदोषापि स्वामिनि मृगया केवलं गुण एव संवृत्ता । तथा हि देवः—

अनवरतधनुर्ज्यास्फालनक्रूरपूर्वं
रविकिरणसहिष्णु स्वेदलेशैरभिन्नम् ।
अपचितमपि गात्रं व्यायतत्वादलक्ष्यं
गिरिचर इव नागः प्राणसारं बिभर्ति ॥ ४ ॥

( उपेत्य ) जयतु स्वामी, गृहीतश्वापदमरण्यम् । किमन्यदनुष्ठीयताम् ?

राजा—भद्रसेन ! मन्दोत्साहः कृतोऽस्मि मृगयापवादिना माधव्येन ।

सेना—( जनान्तिकम् ) सखे ! स्थिरप्रतिबन्धो भव । अहं तावत् स्वामिनश्चित्तवृत्तिमनुवर्तिष्ये । ( प्रकाशम् ) प्रलपत्वेष वैधेयः । ननु प्रभुरेव निदर्शनम्,—

मेदश्छेदकृशोदरं लघु भवत्युत्थानयोग्यं वपुः
सत्त्वानामपि लक्ष्यते विकृतिमच्चित्तं भयक्रोधयोः ।
उत्कर्षः स च धन्विनां यदिषवः सिध्यन्ति लक्ष्ये चले
मिथ्यैव व्यसनं वदन्ति मृगयामीदृग् विनोदः कुतः ? ॥ ५ ॥

ରଜା— ତୁମେ ବିଶ୍ରାମ ନେଇସାରି ମୋତେ ଏକ କାମରେ ସାହାଯ୍ୟ କରିବ। କଷ୍ଟକର କାମ ନୁହେଁ ।

ବିଦୂ— ଲଡୁ ଖାଇବାରେ କି ? ତା' ହେଲେ ଏ ଉତ୍ସବ ଗୃହୀତ ହେଲା ।

ରଜା— ଯେଉଁ ବିଷୟରେ କହିବି– ( ଡାକିଲେ ) ଏଠାରେ କିଏ ଅଛି ?

ଦ୍ୱାରପାଳ—( ପ୍ରବେଶ କରି ପ୍ରଣାମପୂର୍ବକ ) ଆଜ୍ଞା ଦିଅନ୍ତୁ ମଣିମା !

ରଜା— ରୈବତକ, ସେନାପତିଙ୍କୁ ଆସିବାକୁ କୁହ ।

ଦ୍ୱାର— ଯଥାଜ୍ଞା । ( ଚାଲିଯାଇ ପୁଣି ସେନାପତିଙ୍କ ସହିତ ପ୍ରବେଶ କରି ) ମହାରଜ ଆଜ୍ଞାବିଧାନ କରିବାକୁ ଉତ୍କଣ୍ଠାର ସହିତ ଏଣିକି ଦୃଷ୍ଟି-ଦେଇ ବସିଛନ୍ତି । ଆପଣ ତାଙ୍କ ନିକଟକୁ ଯିବା ହୁଅନ୍ତୁ ।

ସେନା— ( ରଜାଙ୍କୁ ଚାହିଁ ) ମୃଗୟା ଦୋଷଯୁକ୍ତ ହେଲେ ମଧ୍ୟ ମହାରଜଙ୍କ ପକ୍ଷରେ ତାହା ଗୁଣବର୍ଦ୍ଧକ । କାରଣ–

ସର୍ବଦା ଧନୁର୍ଗୁଣ ଆକର୍ଷଣ କରିକରି ମହାରଜଙ୍କ ଦେହର ଉପର ଭାଗ କଠିନ ହୋଇଗଲଣି । ଶରୀର ସୂର୍ଯ୍ୟ ରଶ୍ମି ସହି ପାରୁଛି ଏବଂ ସେଥିରୁ ବିନ୍ଦୁଏ ମାତ୍ର ସ୍ୱେଦ ନିର୍ଗତ ହେଉନାହିଁ । ଅଙ୍ଗ ପ୍ରତ୍ୟଙ୍ଗ କ୍ଷୀଣ ହୋଇ ଯାଇଥିଲେ ମଧ୍ୟ ଦେହର ବିଶାଳତା ହେତୁ ସେହି କ୍ଷୀଣତା ଜଣାପଡୁନାହିଁ । ମହାରଜ ପାର୍ବତ୍ୟ ହସ୍ତୀ ଭଳି ପ୍ରଭୂତ ଶକ୍ତି ଧାରଣ କରିଛନ୍ତି । ୪

( ନିକଟକୁ ଯାଇ ) ମଣିମାଙ୍କର ଜୟ ହେଉ । ଅରଣ୍ୟରେ ଶ୍ୱାପଦମାନଙ୍କର ଅବସ୍ଥାନସ୍ଥଳ ଜଣାପଡିଲାଣି । ଆଉ କଅଣ କରିବାକୁ ହେବ ?

ରଜା— ଭଦ୍ରସେନ, ମାଧବ୍ୟ ମୃଗୟାର ନିନ୍ଦା କରୁଛନ୍ତି । ତେଣୁ ମୁଁ ନିରୁତ୍ସାହିତ ବୋଧ କରୁଛି ।

ସେନା— ( ବିଦୂଷକଙ୍କ ପ୍ରତି ଚୁପ୍ ଚୁପ୍ ) ମିତ୍ର, ତୁମେ ତୁମ ପ୍ରତିଜ୍ଞାରେ ଦୃଢ଼ ରହ । ମୁଁ ତାହାହେଲେ ପ୍ରଭୁଙ୍କ ମନୋଭାବ କଳନା କରେଁ । ( ପ୍ରକାଶ୍ୟରେ ) ମହାରଜ, ଏ ଅଜ୍ଞ ପ୍ରଳାପ କରୁଥାଉ, ଆପଣ ନିଜେ ହିଁ ପ୍ରମାଣ—

ମୃଗୟାଦ୍ୱାରା ଦେହର ମେଦ ହ୍ରାସ ପାଏ, ଉଦର ବର୍ଦ୍ଧିତ ହୁଏ-ନାହିଁ ଏବଂ ଦେହ ଚଳପ୍ରଚଳ କରିବାରେ ସମର୍ଥ ରହେ । ପଶୁମାନେ ଭୟରେ ଓ କ୍ରୋଧରେ କିଭଳି ବ୍ୟବହାର କରନ୍ତି, ତାହା ମୃଗୟାରେ ଦେଖିବାକୁ ମିଳେ । ଧାବମାନ ଲକ୍ଷ୍ୟ ଉପରେ ଶର ନିକ୍ଷେପ କରି-ପାରିଲେ ତାହା ଧନୁର୍ଦ୍ଧରମାନଙ୍କର ଯୋଗ୍ୟତା ବୋଲି ବିବେଚିତ ହୁଏ । ଲୋକେ ମୃଗୟାକୁ ଯେ ବିଳାସ ବୋଲି କହନ୍ତି, ତାହା ମିଥ୍ୟା । ପ୍ରକୃତରେ ଏହାପରି ବିନୋଦନର ପନ୍ଥା ଆଉ କଅଣ ଅଛି ? ୫

विदू—अवेहि रे उच्छाहहेतुअ ! अत्तभवं पकिदिं आपण्णो । तुमं दाव अडवीदो अडवीं आहिंडंतो णरणासिआ-लोलुवस्स जिण्ण-रिच्छस्स कस्स वि मुहे पडिस्ससि । ( अपेहि रे उत्साहहेतुक ! अत्रभवान् प्रकृतिमापन्नः । त्वं तावदटवीतोऽटवीमाहिण्डमानो नरनासिकालोलुपस्य जीर्णऋक्षस्य कस्यापि मुखे पतिष्यसि । )

राजा—भद्रसेन ! आश्रमसंनिकृष्टे स्थिताः स्मः । अतस्ते वचो नाभिनन्दामि । अद्य तावत् ,—

गाहन्तां महिषा निपानसलिलं शृङ्गैर्मुहुस्ताडितं
छायाबद्धकदम्बकं मृगकुलं रोमन्थमभ्यस्यतु ।
विस्रब्धं क्रियतां वराहपतिभिर्मुस्ताक्षतिः पल्वले
विश्रामं लभतामिदं च शिथिलज्याबन्धमस्मद्धनुः ॥ ६ ॥

सेना—यत् प्रभविष्णवे रोचते ।

राजा—तेन हि निवर्तय पूर्वगतान् वनग्राहिणः । यथा न मे सैनिकास्तपोवनमुपरुन्धन्ति तथा निषेद्धव्याः । पश्य—

शमप्रधानेषु तपोधनेषु
गूढं हि दाहात्मकमस्ति तेजः ।
स्पर्शानुकूला अपि सूर्यकान्ता-
स्तेजोऽन्यतेजोभिभवाद् वमन्ति ॥ ७ ॥

सेना—यदाज्ञापयति स्वामी ।

विदू—भो उच्छाहइत्थआ ! णिकम्म णिकम्म । ( भो उत्साहयितः, निष्काम निष्काम )

( निष्क्रान्तः सेनापतिः )

राजा—(परिजनं विलोक्य) अपनयन्तु भवत्यो मृगयावेषम् । रैवतक ! त्वमपि स्वं नियोगमशून्यं कुरु ।

परि—जं देवो आणवेदि । ( यद् देव आज्ञापयति । )

( निष्क्रान्तः )

विदू—किदं भवदा णिम्मच्छिअं । संपदं एदस्सिं पादपच्छाआए विरइदलदाविदाणदंसणीआए आसणे णिसीददु भवं, जाव अहं वि सुहासीणो होमि । ( कृतं भवता निर्मक्षिकम् । सांप्रतमेतस्यां पादपच्छायायां विरचितलतावितानदर्शनीयायामासने निषीदतु भवान्, यावदहमपि सुखासीनो भवामि । )

ବିଦୂ— ଯା, ଯା ରେ ପ୍ରେରଣା ଦାତା ! ମହାରାଜ ପ୍ରକୃତିସ୍ଥ ଅଛନ୍ତି । ତୁ ବଣକୁ ବଣ ବୁଲି ଗୋଟାଏ ନରନାସିକାଲୋଭୀ ବୁଢ଼ାଭାଲୁର ମୁହଁରେ ପଡ଼ ।

ରଜା— ସେନାପତି ବର୍ତ୍ତମାନ ଆମେ ଆଶ୍ରମ ନିକଟରେ ଥାଇଁ । ତେଣୁ ମୁଁ ତୁମ କଥା ସମର୍ଥନ କରି ପାରୁନାହିଁ । ଆଜି—
ମହିଷମାନେ ଶିଙ୍ଗରେ ଜଳାଶୟର ଜଳ ଆଲୋଡନ କରି ସ୍ନାନ କରନ୍ତୁ , ମୃଗମାନେ ବୃକ୍ଷଛାୟାରେ ଦଳ ଦଳ ହୋଇ ଶୋଇ ରୋମନ୍ଥନ କରନ୍ତୁ, ବରାହଗଣ ନିଶ୍ଚିନ୍ତରେ ଖାଲ ଜାଗାମାନଙ୍କରେ ମୁଥାମୂଳ ଖୋଦନ କରନ୍ତୁ ଏବଂ ମୋର ଏହି ଧନୁ ଗୁଣବନ୍ଧନରୁ ପୃଥକ୍ ହୋଇ ବିଶ୍ରାମ ଗ୍ରହଣ କରୁ । ୬

ସେନା— ମଣିମାଙ୍କର ଯାହା ରୁଚି ।

ରଜା— ତେଣୁ ଯେଉଁମାନେ ଏଥିପୂର୍ବରୁ ଅରଣ୍ୟରେ ପ୍ରବେଶ କଲେଣି, ସେମାନଙ୍କୁ ଫେରଇ ଆଣ ଏବଂ ତପୋବନରେ ଯେପରି କୌଣସି ପ୍ରକାର ବିଘ୍ନ ସୃଷ୍ଟି ନ ହୁଏ, ସେଥିପାଇଁ ସୈନିକମାନଙ୍କୁ ଆଦେଶ ଦିଅ । ଦେଖ—
ଶାନ୍ତ ତପସ୍ୱୀମାନଙ୍କ ଭିତରେ ଧ୍ୱଂସକାରୀ ତେଜ ନିହିତ ରହିଛି । ସୂର୍ଯ୍ୟକାନ୍ତ ମଣଗୁଡ଼ିକ ଶୀତଳ କିନ୍ତୁ ସେଗୁଡ଼ିକ ଯଦି ଅନ୍ୟ କୌଣସି ତେଜଦ୍ୱାରା ଆକ୍ରାନ୍ତ ହୁଅନ୍ତି ତେବେ ଅଗ୍ନି ଉଦ୍‌ଗିରଣ କରନ୍ତି । ୭

ସେନା— ପ୍ରଭୁଙ୍କର ଯାହା ଆଜ୍ଞା ।

ବିଦୂ— ହେ ଉତ୍ସାହଦାତା, ଅପସର, ଅପସର ।
( ସେନାପତି ଚାଲିଗଲେ )

ରଜା— ( ପରିଜନମାନଙ୍କୁ ଚାହିଁ ) ତୁମ୍ଭେମାନେ ମୃଗୟାବେଶ ବାହାର କରିଦିଅ । ରୈବତକ, ତୁମେ ମଧ୍ୟ ନିଜ କାମରେ ନିୟୋଜିତ ରହ ।

ପରିଜନବର୍ଗ—ଯଥାଜ୍ଞା ମଣିମା । ( ସମସ୍ତେ ଚାଲିଗଲେ )

ବିଦୂ— ଆଉ ଆପଣ ମାଛିଟିଏ ମଧ୍ୟ ଏଠାରେ ରଖାଇ ଦେଇ ନାହାନ୍ତି । ବର୍ତ୍ତମାନ ଏଇ ଗଛଛାଇରେ ଯେଉଁ ସୁନ୍ଦର ଲତା ଗୃହଟିଏ ଅଛି, ସେଠାରେ ଆସନ ଗ୍ରହଣ କରନ୍ତୁ । ମୁଁ ମଧ୍ୟ ଆରାମରେ ବସୁଛି ।

राजा—गच्छाग्रतः।

विदू—एदु भवं। ( एतु भवान्। )

( उभौ परिक्रम्योपविष्टौ )

राजा—माधव्य ! अनवाप्तचक्षुःफलोऽसि, येन त्वया द्रष्टव्यानां परं न दृष्टम्।

विदू—णं भवं अग्गदो मे वट्टदि। ( ननु भवानग्रतो मे वर्तते। )

राजा—सर्वः खलु कान्तमात्मीयं पश्यति। तामाश्रमललामभूतां शकुन्तलामधिकृत्य ब्रवीमि।

विदू—( आत्मगतम् ) होदु, से ओसरं ण दाइस्सं ( प्रकाशम् ) भो वअस्स ! जदो सा तावसकण्णआ अणब्भत्थणीआ तदो ताए किं दिट्ठाए ?

( भवतु, अस्यावसरं न दास्यामि ( प्रकाशम् ) भो वयस्य, यतः सा तापसकन्यका अनभ्यर्थनीया ततः किं तया दृष्टया ? )

राजा—सखे ! न परिहार्ये वस्तुनि पौरवाणां मनः प्रवर्त्तते।

सुर-युवति-संभवं किल मुनेरपत्यं तदुज्झिताधिगतम्।
अर्कस्योपरि शिथिलं च्युतमिव नवमालिकाकुसुमम्॥ ८॥

विदू—( विहस्य ) जह कस्स वि पिंडखज्जूरेहिं उव्वेजिदस्स तिंतिणीए अहिलासो भवे, तह अंतेउर-इत्थिआ-रअण-परिभोइणो भवदो इअं अब्भत्थणा। ( यथा कस्यापि पिण्डखर्जूरैरुद्वेजितस्य तिन्तिण्यामभिलाषो भवेत्, तथा अन्तःपुर-स्त्रीरत्नपरिभोगिनो भवत इयमभ्यर्थना।

राजा—न तावदेनां पश्यसि येन त्वमेवंवादी।

विदू—तं क्खु रमणिज्जं जं भवतो वि विम्हअं उप्पादेदि। ( तत् खलु रमणीयं यद् भवतोऽपि विस्मयमुत्पादयति।

राजा—वयस्य ! किं बहुना,—

चित्रे निवेश्य परिकल्पित-सत्त्वयोगा,
रूपोच्चयेन मनसा विधिना कृता नु।
स्त्रीरत्नसृष्टिरपरा प्रतिभाति सा मे
धातुर्विभुत्वमनुचिन्त्य वपुश्च तस्याः॥ ९॥

ରଜା— ତେବେ ଆଗରେ ଚାଲ ।

ବିଦୂ— ଆସନ୍ତୁ ଆପଣ ।

( ଦୁହେଁ କିଛି ବାଟ ଯାଇ ବସିଲେ । )

ରଜା— ମାଧବ୍ୟ, ଯାହା ଶ୍ରେଷ୍ଠ ଦର୍ଶନୀୟ, ତାହା ଏ ପର୍ଯ୍ୟନ୍ତ ତୁମେ ଦେଖିନାହଁ । ତେଣୁ ତୁମର ଚକ୍ଷୁ ସାର୍ଥକ ହୋଇନାହିଁ ।

ବିଦୂ— କାହିଁକି ? ଆପଣ ତ ମୋ ସମ୍ମୁଖରେ ଅଛନ୍ତି !

ରଜା— ସମସ୍ତେ ଆତ୍ମୀୟଙ୍କୁ ସୁନ୍ଦର ବୋଲି ଭବନ୍ତି । କିନ୍ତୁ ମୁଁ ସେହି ଆଶ୍ରମ-ମଣ୍ଡନା ଶକୁନ୍ତଳା ବିଷୟରେ କହୁଛି ।

ବିଦୂ— ( ସ୍ୱଗତ ) ଆଚ୍ଛା ହେଉ, ଏହାଙ୍କୁ ଉତ୍ସାହିତ କରିବି ନାହିଁ । ( ପ୍ରକାଶ୍ୟରେ ) ହେ ବନ୍ଧୁ, ସେ ତ ତପସ୍ୱୀକନ୍ୟା, ତାକୁ ପାଇବାକୁ ଆଶା କରିବା ଉଚିତ ନୁହେଁ । ତେଣୁ ତାକୁ ଦେଖି ଲଭ କଅଣ ?

ରଜା— ବନ୍ଧୁ,
ନିଷିଦ୍ଧ ବସ୍ତୁ ପ୍ରତି ପୁରୁବଂଶୀମାନଙ୍କର ମନ ବଳେନାହିଁ ।
ସେହି ମୁନିକନ୍ୟାର ଜନ୍ମ ଅପ୍‌ସରାଗର୍ଭରୁ । ନବମାଳିକା ପୁଷ୍ପ ବୃନ୍ତଚ୍ୟୁତ ହୋଇ ଅର୍କ ବୃକ୍ଷ ଉପରେ ପଡ଼ିଲା ପରି, ସେ ମାତାଙ୍କ-ଦ୍ୱାରା ପରିତ୍ୟକ୍ତା ହୋଇ କଣ୍ୱଙ୍କ ଦ୍ୱାରା ପାଳିତା ହୋଇଛି । ୮

ବିଦୂ— ( ହସିହସି ) ବନ୍ଧୁ, ଯେପରି କୌଣସି ବ୍ୟକ୍ତି ଖଣ୍ଡଖର୍ଜୁର ଖାଇଖାଇ ବିରକ୍ତ ହୋଇଗଲେ ତେନ୍ତୁଳି ଖାଇବାକୁ ଇଚ୍ଛା କରେ, ସେହିପରି ତୁମେ ଅନ୍ତଃପୁରର ସ୍ତ୍ରୀରତ୍ନମାନଙ୍କ ସହିତ ବିହାର କରି କରି ମୁନିକନ୍ୟା ପ୍ରତି ମନ ବଳାଇଛ ।

ରଜା— ତୁମେ ତାକୁ ଦେଖିନାହଁ । ତେଣୁ ଏପରି କହୁଛ ।

ବିଦୂ— ଯାହା ଆପଣଙ୍କର ବିସ୍ମୟ ସୃଷ୍ଟି କରିଛି, ତାହା ନିଶ୍ଚୟ ରମଣୀୟ ହୋଇଥିବ ।

ରାଜା— ବନ୍ଧୁ, ବେଶି କହିବା ନିଷ୍ପ୍ରୟୋଜନ ।
ବୋଧ ହେଉଛି, ବିଧାତା ପ୍ରଥମେ ତା'ର ଚିତ୍ର ଅଙ୍କନ କରି ପରେ ସେଥିରେ ପ୍ରାଣସଂଯୋଗ କରିଛନ୍ତି, କିମ୍ବା ସମଗ୍ର ଚରାଚର ସୌନ୍ଦର୍ଯ୍ୟକୁ ଏକତ୍ର କରି ସେଥିରେ ତାକୁ ଭବି ଭବି ନିର୍ମାଣ କରି-ଛନ୍ତି । ବିଧାତାଙ୍କର ନିର୍ମାଣଦକ୍ଷତା ଏବଂ ଶକୁନ୍ତଳାର କମଣୀୟ ତନୁ, ଏ ଦୁଇଟି କଥା ଭବିଲେ ମୋତେ ଜଣା ପଡୁଛି, ବିଧାତା ଏକ ଅପୂର୍ବ ସ୍ତ୍ରୀରତ୍ନ ସୃଷ୍ଟି କରିଛନ୍ତି । ୯

विदू—जइ एव्वं पच्चादेसो क्खु सा रूववदीणं। ( यद्येवं, प्रत्यादेशः खलु सा रूपवतीनाम् । )

राजा—इदं च मे मनसि वर्तते,—

अनाघ्रातं पुष्पं किसलयमलूनं कररुहै-
रनाविद्धं रत्नं मधु नवमनास्वादितरसम् ।
अखण्डं पुण्यानां फलमिव च तद्रूपमनघं
न जाने भोक्तारं कमिह समुपस्थास्यति विधिः ॥ १० ॥

विदू—तेण हि लहु लहु परित्ताअदु णं भवं। मा कस्स वि तवस्सिणो इंगुदीतेल्लमिस्सचिक्कणसीसस्स हत्थे पडिस्सदि। ( तेन हि लघु लघु परित्रायतामेनां भवान् । मा कस्यापि तपस्विन इङ्गुदीतैलमिश्रचिक्कणशीर्षस्य हस्ते पतिष्यति । )

राजा—परवती खलु तत्रभवती। न च संनिहितो गुरुजनः ।

विदू—अध अत्तभवंतं अंतरेण कीदिसो से दिट्ठिराओ ?·(अत्रभवन्त-मन्तरेण कीदृशस्तस्या दृष्टिरागः ? )

राजा—निसर्गादप्रगल्भास्तपस्विकन्यकाः। तथापि तु,—

अभिमुखे मयि संहृतमीक्षणं
हसितमन्यनिमित्त-कृतोदयम् ।
विनयवारितवृत्तिरतस्तया
न मदनो विवृतो न च संवृतः ॥ ११ ॥

विदू—ण खु दिट्ठमेत्तस्स तुह अंकं समारोहदि। (न खलु दृष्टमात्रस्य तवाङ्कं समारोहति। )

राजा—मिथःप्रस्थाने पुनः शालीनतयापि काममाविष्कृतो भावः तत्रभवत्या। तथा हि—

दर्भाङ्कुरेण चरणः क्षत इत्यकाण्डे
तन्वी स्थिता कतिचिदेव पदानि गत्वा ।
आसीद् विवृत्तवदना च विमोचयन्ती
शाखासु वल्कलमसक्तमपि द्रुमाणाम् ॥ १२ ॥

ବିଦୂ— ଯଦି ଏପରି, ତେବେ ତା' ତୁଳନାରେ ସବୁ ରୂପସୀ ତ ତୁଚ୍ଛ ?

ରଜା— ମୋର ମନେ ହେଉଛି,
ସେ ଗୋଟିଏ ଫୁଲ, ଯାହାର ସୌରଭ ଏ ପର୍ଯ୍ୟନ୍ତ କେହି ଆଘ୍ରାଣ କରିନାହାଁନ୍ତି ; ସେ ନବପଲ୍ଲବଟିଏ, ଯାହାକୁ କେହି ନଖରେ ଛିଣ୍ଡାଇ ନାହାନ୍ତି ; ସେ ରତ୍ନଟିଏ, ଯାହା ମଧ୍ୟରେ ଅଦ୍ୟାପି ଛିଦ୍ର କରାଯାଇ-ନାହିଁ ; ସେ ନୂତନ ମଧୁ, ଯାହାର ସ୍ୱାଦ କେହି ଏପର୍ଯ୍ୟନ୍ତ ଚାଖି-ନାହାଁନ୍ତି । ତାହାର ରୂପବିଭବ ଅଖଣ୍ଡ ପୁଣ୍ୟର ଫଳ । କେଜାଣି, ବିଧାତା ତା'ର ଭୋକ୍ତା କାହାକୁ କରିବେ ! ୧୦

ବିଦୂ— ତେବେ ଆପଣ ଶୀଘ୍ର ତାକୁ ରକ୍ଷା କରନ୍ତୁ । ନ ହେଲେ ଇଙ୍ଗୁଦୀ ତୈଳ ଲଗାଇ ମସ୍ତକ ଚିକ୍କଣ କରିଥିବା କୌଣସି ଋଷି ହାତରେ ସେ ପଡ଼ିଯିବଟି !

ରଜା— ସେ ପରାଧୀନା । ପିତା ତାର ବର୍ତ୍ତମାନ ଏଠାରେ ନାହାଁନ୍ତି ।

ବିଦୂ— ଆପଣଙ୍କ ଆଡ଼କୁ ସେ କିପରି ଦୃଷ୍ଟିପାତ କରୁଥିଲା ?

ରଜା— ମିତ୍ର, ମୁନିକୁମାରୀମାନେ ସ୍ୱଭବତଃ ଲଜ୍ଜାଶୀଳା । ତଥାପି—
ମୁଁ ତା' ଆଡ଼କୁ ଚାହିଁଲାବେଳେ ସେ ଅନ୍ୟ ଆଡକୁ ଦୃଷ୍ଟି ଫେରାଇ ନେଉଥିଲା ଏବଂ କୌଣସି ଛଳନା କରି ହସି ଦେଉଥିଲା । ଏହିପରି ଶିଷ୍ଟାଚାର ହେତୁ ସେ ନିଜର ଅନୁରାଗ ପ୍ରକାଶ କରିପାରୁ ନ ଥିଲା କିମ୍ବା ଗୋପନ ମଧ୍ୟ କରି ପାରୁନଥିଲା । ୧୧

ବିଦୂ— ( ହସି ହସି ) ଆଉ କଅଣ ଦେଖିବା ମାତ୍ରେ ତୁମ କୋଳରେ ଆସି ବସି ଯାଇଥାଆନ୍ତା ?

ରଜା— ସଖୀ ଦୁହିଁଙ୍କ ସଙ୍ଗରେ ଗଲାବେଳେ ସେ ଲଜ୍ଜାଶୀଳା ହେଲେ ମଧ୍ୟ ଅନେକ କିଛି ଅନୁରାଗ ପ୍ରକାଶ କରିଗଲା । କାରଣ—
ସେହି କୃଶାଙ୍ଗୀ କେତେ ପାଦ ଯାଇ, ହଠାତ୍ ପାଦରେ କୁଶାଙ୍କୁର ଗଳିଗଲା ବୋଲି ଛଳନା କରି ଠିଆ ହୋଇଗଲା । ଗଛଡାଳରେ ତାର ବଲ୍କଳ ଛନ୍ଦି ନ ହୋଇଥିଲେ ମଧ୍ୟ ସେ ମୋ ଆଡ଼କୁ ମୁହଁ ବୁଲାଇ ଚାହିଁ ଡାଳରୁ ତାହା କାଢିବାରେ ଲାଗିଗଲା । ୧୨

विदू—तेण हि गहीदपाधेओ होहि। किदं तुए उववणं तवोवणं त्ति पेक्खामि। ( तेन हि गृहीतपाथेयः भव। कृतं त्वयोपवनं तपोवनमिति पश्यामि। )

राजा—सखे ! तपस्विभिः कैश्चित् परिज्ञातोऽस्मि। चिन्तय तावत् केनापदेशेन सकृदप्याश्रमे गच्छाम।

विदू—णं भवं राआ ( ननु भवान् राजा )। को अवरो अवदेसो ? णीवारछट्ठभाअं अम्हाणं उवहरंतु त्ति। ( कः अपरोऽपदेशः ? नीवारषष्ठभागमस्माकमुपहरन्त्विति। )

राजा—मूर्ख ! अन्यमेव भागमेते तपस्विनो निर्वपन्ति यो रत्नराशीनपि विहायाभिनन्द्यते। पश्य,—

यदुत्तिष्ठति वर्णेभ्यो नृपाणां क्षयि तद् धनम्।
तपःषड्भागमक्षय्यं ददत्यारण्यका हि नः ॥ १३ ॥

( नेपथ्ये )

हन्त, सिद्धार्थौ स्वः।

राजा—(कर्णं दत्त्वा) अये ! धीरप्रशान्तः स्वरः। तपस्विभिर्भवितव्यम्।

दौवा—( प्रविश्य ) जेदु भट्टा। एदे दुवे इसिकुमारआ पडिहारभूमिं उवट्ठिदा। ( जयतु भर्ता। एतौ द्वौ ऋषिकुमारकौ प्रतीहारभूमिमुपस्थितौ। )

राजा—अविलम्बितं प्रवेशय।

दौवा—एसो पवेसेमि। ( निष्क्रम्य, ऋषिकुमाराभ्यां सह प्रविश्य ) इदो इदो भवंतो। ( एष प्रवेशयामि। ) ( निष्क्रम्य, ऋषिकुमारकाभ्यां सह प्रविश्य ) ( इत इतो भवन्तौ। )

( उभौ राजानं विलोकयतः )

प्रथमः—अहो दीप्तिमतोऽपि विश्वसनीयतास्य वपुषः। अथवोपपन्नमेतद् मुनिभ्यो नातिभिन्ने राजनि। कुतः

अध्याक्रान्ता वसतिरमुनाप्याश्रमे सर्वभोग्ये
रक्षायोगादयमपि तपः प्रत्यहं संचिनोति।
अस्यापि द्यां स्पृशति वशिनश्चारणद्वन्द्वगीतः
पुण्यः शब्दो मुनिरिति मुहुः केवलं राजपूर्वः ॥ १४ ॥

ବିଦୂ– ତା'ହେଲେ ବନ୍ଧୁ, ଆଶା ରଖ । ଦେଖୁଛି, ତୁମେ ତପୋବନକୁ ଉପବନରେ ପରିଣତ କରିଦେଲଣି ।

ରଜା– ବନ୍ଧୁ, କେତେକ ତପସ୍ୱୀ ମୋତେ ଚିହ୍ନିଛନ୍ତି । ତେଣୁ, କେଉଁ ଛଳନାରେ ଆଉ ଥରେ ଆଶ୍ରମ ଭିତରକୁ ଯାଇପାରିବି, ତାହାର ଉପାୟ ଚିନ୍ତା କର ।

ବିଦୂ– ଆପଣ ରଜା । ଆପଣଙ୍କର ଅନ୍ୟ କୌଣସି ଛଳନା କି ଆବଶ୍ୟକ ? ଆଜ୍ଞା ଦିଅନ୍ତୁ, ସେମାନେ ଆପଣଙ୍କ ପ୍ରାପ୍ୟର ଏକ ଷଷ୍ଠାଂଶ ଆଣି ଦେଇଯାଆନ୍ତୁ ।

ରଜା– ମୂର୍ଖ, ମୁଁ ରକ୍ଷା କରିବା ବିନିମୟରେ ଏମାନଙ୍କଠାରୁ ଯେଉଁ କର ପାଉଛି, ତାହା ତୁଳନାରେ ବହୁମୂଲ୍ୟ ରତ୍ନରାଶି ମଧ୍ୟ କିଛି ନୁହେଁ । ଦେଖ—

ଅନ୍ୟ ବର୍ଣ୍ଣମାନଙ୍କଠାରୁ ରଜା ଯେଉଁ କର ପାଆନ୍ତି, ତାହା କ୍ଷୟଶୀଳ । କିନ୍ତୁ ତପସ୍ୱୀମାନେ ସେମାନଙ୍କର ତପସ୍ୟାର ଯେଉଁ ଷଷ୍ଠାଂଶ ପ୍ରଦାନ କରନ୍ତି, ତାହା ଅକ୍ଷୟ । ୧୩

( ନେପଥ୍ୟେ )

ତାହା ହେଲେ ଆମର ଶ୍ରମ ସାର୍ଥକ ହେଲା ।

ରଜା– ( କାନ ଡେରି ) ଆହେ ! ଧୀର ତଥା ଶାନ୍ତ ସ୍ୱର ଶୁଭୁଛି ! ବୋଧହୁଏ ତପସ୍ୱୀମାନେ ଆସୁଛନ୍ତି ।

ଦ୍ୱାରପାଳ–( ପ୍ରବେଶ କରି ) ଜୟ ମହାରଜ । ଦୁଇ ଜଣ ଋଷିକୁମାର ମହାରାଜଙ୍କ ଦର୍ଶନ ନିମନ୍ତେ ଦ୍ୱାର ଦେଶରେ ଉପସ୍ଥିତ ।

ରଜା– ଶୀଘ୍ର ତାଙ୍କୁ ଏଠାକୁ ଘେନି ଆସ ।

ଦ୍ୱାର– ଏଇ ଅଣୁଛି । ( ବାହାରକୁ ଯାଇ ଦୁଇଜଣ ଋଷିକୁମାରଙ୍କୁ ଘେନି ପ୍ରବେଶ କଲେ ) ଏଣିକି ଆସନ୍ତୁ, ଏଣିକି । ( ଋଷିକୁମାର ଦ୍ୱୟ ରାଜାଙ୍କ ଆଡକୁ ଚାହିଁଲେ । )

ପ୍ରଥମ– ଅହୋ ! ଏହାଙ୍କର ଶରୀର ଦୀପ୍ତିମନ୍ତ ହେଲେହେଁ ବିଶ୍ୱାସ ଜନ୍ମାଉଛି । ହଁ, ଏ ଋଷିପ୍ରତିମ ରାଜାଙ୍କ ପକ୍ଷରେ ଏହା ସ୍ୱାଭାବିକ । କାରଣ—

ଏ ମଧ୍ୟ ସର୍ବହିତକର ଆଶ୍ରମ ଅବଲମ୍ବନ କରିଛନ୍ତି ; ପ୍ରଜାମାନଙ୍କୁ ରକ୍ଷା କରି ପ୍ରତିଦିନ ତପ ସଞ୍ଚୟ କରୁଛନ୍ତି ; ଚାରଣମାନେ ଏହି ସଂଯମୀ ରାଜାଙ୍କର ଯେଉଁ ଯଶୋଗାଥା ଗାନ କରୁଛନ୍ତି, ତାହା ସ୍ୱର୍ଗକୁ ମଧ୍ୟ ସ୍ପର୍ଶ କରୁଛି । ଏ ମଧ୍ୟ ଋଷି । କେବଳ ଏତିକି ପ୍ରଭେଦ ଯେ, ଏହାଙ୍କ 'ଋଷି' ଶବ୍ଦ ପୂର୍ବରେ 'ରଜା' ଶବ୍ଦ ଲାଗିଛି । ୧୪

द्वितीयः — गौतम ! अयं स वलभित्सखो दुष्यन्तः ?

प्रथमः—अथ किम् ?

द्वितीयः—तेन हि—

नैतच्चित्रं यदयमुदधिश्यामसीमां धरित्री-
मेकः कृत्स्नां नगरपरिघ प्रांशुबाहुर्भुनक्ति ।
आशंसन्ते सुरयुवतयो बद्धवैरा हि दैत्यै-
रस्याधिज्ये धनुषि विजयं पौरुहूते च वज्रे ॥ १५ ॥

उभौ—( उपगम्य ) विजयस्व राजन् !

राजा—( आसनादुत्थाय ) अभिवादये भवन्तौ ।

उभौ—स्वस्ति भवते । ( फलान्युपहरतः )

राजा—( सप्रणामं परिगृह्य ) आज्ञामिच्छामि ।

उभौ—विदितो भवानाश्रमसदामिहस्थः । ते भवन्तं प्रार्थयन्ते ।

राजा—किमाज्ञापयन्ति ?

उभौ—तत्रभवतः कुलपतेरसान्निध्याद् रक्षांसि नः इष्टिविघ्नमुत्पादयन्ति । तत् कतिपयरात्रं सारथिद्वितीयेन भवता सनाथीक्रियतामाश्रम इति ।

राजा—अनुगृहीतोऽस्मि ।

विदू—(अपवार्य) अअं दाणिं अणुऊलो दे गलहत्थो । (अयमिदानीम् अनुकूलस्ते गलहस्तः ।)

राजा—(स्मितं कृत्वा) रैवतक ! मद्वचनादुच्यतां सारथिः सबाणासनं रथमुपस्थापयेति ।

दौवा—जं देवो आणवेदि । (यद्देव आज्ञापयति ।)

( निष्क्रान्तः )

उभौ—( सहर्षम् )

अनुकारिणि पूर्वेषां युक्तरूपमिदं त्वयि ।
आपन्नाभयसत्रेषु दीक्षिताः खलु पौरवाः ॥ १६ ॥

राजा—(सप्रणामम्) गच्छतं भवन्तौ । अहमप्यनुपदमागत एव ।

उभौ—विजयस्व ।　　( निष्क्रान्तौ )

ଦ୍ୱିତୀୟ—ଗୌତମ, ଏ ଇନ୍ଦ୍ରଙ୍କର ମିତ୍ର ସେହି ଦୁଷ୍ୟନ୍ତ ?

ପ୍ରଥମ— ହଁ ।

ଦ୍ୱିତୀୟ—ତାହା ହେଲେ—

ଦୁର୍ଗଦ୍ୱାରର ଅର୍ଗଳ ତୁଲ୍ୟ ଦୀର୍ଘବାହୁ ବିଶିଷ୍ଟ ଏହି ରଜା ଯେ ଏକାକୀ ସସାଗରା ପୃଥିବୀକୁ ଶାସନ କରୁଛନ୍ତି, ଏଥିରେ କୌଣସି ଆଶ୍ଚର୍ଯ୍ୟ ନାହିଁ । କାରଣ, ଅସୁରମାନଙ୍କ ସହିତ ଦେବତାମାନଙ୍କର ଯୁଦ୍ଧ ଲଗିଲେ ଦେବାଙ୍ଗନାମାନେ ଏହାଙ୍କର ଗୁଣଯୁକ୍ତ ଧନୁ ଏବଂ ଇନ୍ଦ୍ରଙ୍କର ବଜ୍ରାସ୍ତ୍ର, ଏ ଦୁଇଟି ଉପରେ ହିଁ ବିଜୟର ଆଶା ରଖନ୍ତି । ୧୫

ଉଭୟେ—( ନିକଟକୁ ଯାଇ ) ମହାରାଜାଙ୍କର ଜୟ ହେଉ ।

ରଜା— ( ଆସନରୁ ଉଠି ) ଆପଣ ଦୁହିଁଙ୍କୁ ମୋର ପ୍ରଣାମ ।

ଉଭୟେ—ଆପଣଙ୍କର ମଙ୍ଗଳ ହେଉ । ( ଫଳଗୁଡ଼ିଏ ଉପହାର ଦେଲେ )

ରଜା— ( ପ୍ରଣାମ ପୂର୍ବକ ଗ୍ରହଣ କରି ) ଆଜ୍ଞା ଦେବା ହୁଅନ୍ତୁ ।

ଉଭୟେ—ଆପଣ ଏଠାରେ ଅଛନ୍ତି ବୋଲି ଆଶ୍ରମବାସୀମାନେ ଜାଣିଲେଣି । ତେଣୁ ସେମାନେ ଆପଣଙ୍କୁ ଅନୁରୋଧ ଜଣାଇଛନ୍ତି ।

ରଜା— କି ଆଦେଶ ଦେଇଛନ୍ତି ?

ଉଭୟେ—ମହର୍ଷି କଣ୍ୱଙ୍କର ଅନୁପସ୍ଥିତି ହେତୁ ରକ୍ଷସମାନେ ଆମ ଯଜ୍ଞରେ ବିଘ୍ନ ସୃଷ୍ଟି କରୁଛନ୍ତି । ତେଣୁ ଆପଣ ସାରଥିଙ୍କ ସହିତ ଏଠାରେ କିଛି ଦିନ ଅବସ୍ଥାନ କରି ଆଶ୍ରମବାସୀମାନଙ୍କର ସହାୟ ହୁଅନ୍ତୁ ।

ରଜା— ଅନୁଗୃହୀତ ହେଲି ।

ବିଦୂ— ( ଚୁପ୍ ଚୁପ୍ ) ଏମାନଙ୍କର ଏ ଗଳହସ୍ତ ତୁମର ତ ଅନୁକୂଳ !

ରଜା— ( ସ୍ମିତ ହାସ୍ୟରେ ) ରୈବତକ, ସାରଥିଙ୍କୁ ମୋର କଥାନୁସାରେ ଜଣାଇ ଦିଅ, ସେ ଧନୁ ସହ ରଥ ଆଣନ୍ତୁ ।

ଦ୍ୱାର— ଯଥାଜ୍ଞା ମହାରଜ !

[ ଚାଲିଗଲେ ]

ଉଭୟେ—( ଆନନ୍ଦରେ ) ମହାରାଜ ! ଆପଣ ପୂର୍ବ ପୁରୁଷମାନଙ୍କର ପଦାଙ୍କ ଅନୁସରଣ କରୁଛନ୍ତି । ତେଣୁ ଏଭଳି କାର୍ଯ୍ୟ ଆପଣଙ୍କ ପକ୍ଷରେ ଉପଯୁକ୍ତ । ବିପଦ୍‌ଗ୍ରସ୍ତ ପ୍ରାଣୀମାନଙ୍କୁ ରକ୍ଷା କରିବା ପୁରୁବଂଶୀ ରଜାମାନଙ୍କର ଧର୍ମ । ୧୬

ରାଜା— ( ପ୍ରଣାମ କରି ) ଆପଣମାନେ ଆଗେ ଚାଲନ୍ତୁ । ମୁଁ ଏଇ ପଛେ ପଛେ ଯାଉଛି ।

ଉଭୟେ— ମହାରାଜାଙ୍କର ଜୟ ହେଉ । ( ପ୍ରସ୍ଥାନ କଲେ । )

राजा—माधव्य ! अप्यस्ति शकुन्तलादर्शने कुतूहलम् ?

विदू—पढमं सपरिवाहं आसि । दाणिं रक्खसवुत्ततेण बिंदु वि णावसेसिदो । (प्रथमं सपरिवाहमासीत् । इदानीं राक्षसवृत्तान्तेन बिन्दुरपि नावशेषितः । )

राजा—मा भैषीः, ननु मत्समीपे वर्तिष्यसे ।

विदू—एसो रक्खसादो रक्खिदो म्हि । (एष राक्षसाद् रक्षितोऽस्मि । )

दौवा—( प्रविश्य ) सज्जो रधो भट्टिणो विजअप्पत्थाणं अवेक्खदि । एस उण णअरादो देवीणं आणत्तिहरओ करभओ आअदो । ( सज्जो रथः भर्तुर्विजयप्रस्थानमपेक्षते । एष पुनर्नगराद् देवीनामाज्ञप्तिहरः करभक आगतः । )

राजा—( सादरम् ) किम् अम्बाभिः प्रेषितः ?

दौवा—अध इं । ( अथ किम् ? )

राजा—ननु प्रवेश्यताम् ।

दौवा—तह । (निष्क्रम्य करभकेण सह प्रविश्य) एसो भट्टा, उवसप्प । (तथा) । (निष्क्रम्य करभकेण सह प्रविश्य) एष भर्ता, उपसर्प । )

कर—जेदु भट्टा । देवीओ आणवेंदि । (जयतु भर्ता । देव्य आज्ञापयन्ति )

राजा—किमाज्ञापयन्ति ?

कर—आगामि-चदुट्ठदिअसे पुत्तपिंडपालणो णाम पउत्थपारणो मे उववासो भविस्सदि । तहिं दीहाउणा अवस्सं संभाविदव्वा-त्ति । ( आगामिचतुर्थदिवसे पुत्रपिण्डपालनो नाम मे उपवासो भविष्यति । तत्र दीर्घायुषा अवश्यं संभावनीया-इति । )

राजा—इतस्तपस्विकार्यम् , इतो गुरुजनाज्ञा । द्वयमप्यनतिक्रमणीयम् । किमत्र प्रतिविधेयम् ?

विदू—तिसंकू विअ अंतराले चिट्ठ । ( त्रिशङ्कुरिव अन्तराले तिष्ठ । )

राजा—सत्यमाकुलीभूतोऽस्मि—

कृत्ययोर्भिन्नदेशत्वाद् द्वैधीभवति मे मनः ।
पुरः प्रतिहतं शैले स्रोतः स्रोतोवहो यथा ॥ १७ ॥

ରାଜା— ମାଧବ୍ୟ, ଶକୁନ୍ତଳାକୁ ଦେଖିବାପାଇଁ ତୁମର କୌତୂହଳ ହେଉଛି ?

ବିଦୂ— ପ୍ରଥମେ ପ୍ରବଳ ଆଗ୍ରହ ହେଉଥିଲା ; କିନ୍ତୁ ବର୍ତ୍ତମାନ ରାକ୍ଷସ କଥା ଶୁଣି ଆଉ ଲେଶ ମାତ୍ର ଆଗ୍ରହ ନାହିଁ ।

ରାଜା— ଭୟ କର ନାହିଁ । ତୁମେ ମୋ ପାଖେ ପାଖେ ରହିବ ।

ବିଦ— ତାହା ହେଲେ ରାକ୍ଷସମାନଙ୍କ ଠାରୁ ରକ୍ଷା ପାଇଗଲି ।

ଦ୍ୱାର-- ( ପ୍ରବେଶ କରି ) ମହାରାଜ, ଆପଣଙ୍କର ଜୟ ଯାତ୍ରା ନିମନ୍ତେ ରଥ ପ୍ରସ୍ତୁତ । କିନ୍ତୁ ନଗରରୁ ଦେବୀଙ୍କର ଆଦେଶ ଘେନି କରଭକ ଆସିଛନ୍ତି ।

ରଜା-- ( ଆଦରରେ ) କଅଣ ମାଆ ପଠାଇଛନ୍ତି ?

ଦ୍ୱାର-- ହଁ ।

ରଜା-- ତାଙ୍କୁ ଏଠାକୁ ଘେନି ଆସ ।

ଦ୍ୱାର-- ଯଥାଜ୍ଞା । ( ବାହାରକୁ ଯାଇ କରଭକ ସହିତ ଆସି ) ମହାରାଜ ଏହିଠାରେ । ଆପଣ ତାଙ୍କ ନିକଟକୁ ଯାଆନ୍ତୁ ।

କର-- ମହାରାଜାଙ୍କର ଜୟ ହେଉ । ଦେବୀ ଆଦେଶ ଦେଇଛନ୍ତି ।

ରାଜା— କି ଆଦେଶ ?

କର— ସେ ଆଜିଠାରୁ ଚତୁର୍ଥ ଦିବସରେ ପୁତ୍ରପିଣ୍ଡପାଳନ ନାମକ ଏକ ଉପବାସ ପାଳନ କରିବେ । ତେଣୁ ଆୟୁଷ୍ମାନ୍ ପୁତ୍ର ତାଙ୍କ ପାଖରେ ନିଶ୍ଚୟ ଉପସ୍ଥିତ ରହିବେ ।

ରାଜା-- ଏଣେ-ତପସ୍ୱୀମାନଙ୍କର କାର୍ଯ୍ୟ, ତେଣେ ଗୁରୁଜନଙ୍କର ଆଜ୍ଞା । କୌଣସିଟି ଲଙ୍ଘନୀୟ ନୁହେଁ । ବର୍ତ୍ତମାନ କଅଣ କରିବାକୁ ହେବ ?

ବିଦୂ- ତ୍ରିଶଙ୍କୁ ପରି ମଝିରେ ଝୁଲ ।

ରାଜା-- ପ୍ରକୃତରେ ମୁଁ ବଡ଼ ଚିନ୍ତିତ ।

ଏ ଦୁଇଟି କାର୍ଯ୍ୟ ଭିନ୍ନ ଭିନ୍ନ ସ୍ଥାନ୍‌ରେ ସମ୍ପାଦନ କରିବାକୁ ହେବ । ଆଗରେ ପର୍ବତ ପଡ଼ିଲେ ନଦୀର ପ୍ରବାହ ଯେପରି ବାଧା ପାଇ ଦୁଇଭାଗରେ ବିଭକ୍ତ ହୋଇଯାଏ, ମୋର ମନ ସେହିପରି ଉଭୟ ଦିଗରେ ଗତି କରୁଛି । ୧୭

( विचिन्त्य ) सखे ! त्वमम्बाभिः पुत्र इति प्रतिगृहीतः । अतो भवानितः प्रतिनिवृत्य तपस्विकार्यव्यग्रमानसं मामावेद्य तत्र-भवतीनां पुत्रकृत्यमनुष्ठातुमर्हति ।

विदू—ण खु मं रक्खोभीरुअं गणेसि । (न खलु मां रक्षोभीरुकं गणय ।)

राजा—(सस्मितम् ) भो महाब्राह्मण ! कथमेतद् भवति संभाव्यते ?

विदू—तेण हि जह राआणुएण गंतव्वं तह गच्छामि । (तेन हि यथा राजानुजेन गन्तव्यं तथा गच्छामि । )

राजा—ननु तपोवनविरोधः परिहरणीय इति सर्वानानुयात्रिकांस्त्वयैव सह प्रस्थापयामि ।

विदू—ही ही, जुवराओ म्हि दाणिं संवुत्तो । (ही ही, युवराजोऽस्मि इदानीं संवृत्तः । )

राजा—( आत्मगतम् ) चपलोऽयं वटुः । कदाचिदस्मत्प्रार्थनाम् अन्तःपुरेभ्यः कथयेत् । भवतु, एनमेवं वक्ष्ये । ( विदूषकं हस्ते गृहीत्वा, प्रकाशम् ) वयस्य ! ऋषिगौरवादाश्रमं गच्छामि । न खलु सत्यमेव तापसकन्यायां ममाभिलाषः ! पश्य—

क्व वयम् क्व परोक्षमन्मथो
मृगशावैः सममेधितो जनः ।
परिहासविजल्पितं सखे !
परमार्थेन न गृह्यतां वचः ॥ १८ ॥

( निष्क्रान्ताः सर्वे )

॥॥ इति द्वितीयोऽङ्कः ॥॥



(ଚିନ୍ତା କରି) ଆଛା ମିତ୍ର, ମା' ତ ତୁମକୁ ପୁତ୍ର ଦୃଷ୍ଟିରେ ଦେଖନ୍ତି । ତେଣୁ ତୁମେ ଏଠାରୁ ନଗରକୁ ଫେରିଯାଅ । ମା'ଙ୍କୁ ଜଣାଇ ଦେବ ଯେ, ମୁଁ ତପସ୍ୱୀମାନଙ୍କ କାର୍ଯ୍ୟରେ ବ୍ୟସ୍ତ ଅଛି । ଆଉ ତୁମେ ମୋ ପକ୍ଷରୁ ପୁତ୍ରୋଚିତ ସମସ୍ତ କାର୍ଯ୍ୟ ନିର୍ବାହ କରିବ ।

ବିଦୂ— କିନ୍ତୁ ତୁମେ ମନେ କରିବ ନାହିଁ ଯେ, ମୁଁ ରାକ୍ଷସମାନଙ୍କୁ ଡରି ଚାଲି ଯାଉଛି ।

ରାଜା— ବାଃ ! ହେ ମହାବ୍ରାହ୍ମଣ, ତୁମଠାରେ କଅଣ ଏହା ସମ୍ଭାବନା କରା ଯାଇପାରେ ?

ବିଦୂ— ତା'ହେଲେ ରାଜାଙ୍କ ସାନଭାଇ ଯେପରି ଯିବାର କଥା, ସେହିପରି ଯିବି ।

ରାଜା— ତପୋବନରେ କୌଣସି ବିଘ୍ନ ଘଟାଇବା ଅନୁଚିତ । ତେଣୁ, ସମସ୍ତ ଅନୁଚର ବର୍ଗଙ୍କୁ ତୁମ ସହିତ ପଠାଇ ଦେବି ।

ବିଦୂ— ( ଗର୍ବର ସହିତ ) ତା' ହେଲେ ବର୍ତ୍ତମାନ ମୁଁ ଯୁବରାଜ !

ରାଜା— ( ସ୍ୱଗତ ) ଏ ବ୍ରାହ୍ମଣ ଚପଳ । ଶକୁନ୍ତଳା ପ୍ରତି ମୋର କାମନା-ବିଷୟ ଏ ଯଦି ଅନ୍ତଃପୁରରେ ଯାଇ କହିଦିଏ ! ଆଛା, ଏହାକୁ ଏଇଭଳି କହିବି । ( ବିଦୂଷକଙ୍କ ହାତ ଧରି ପ୍ରକାଶ୍ୟରେ ) ବନ୍ଧୁ, ଋଷିମାନଙ୍କ ପ୍ରତି ଭକ୍ତି ବଶତଃ ମୁଁ ଆଶ୍ରମକୁ ଯାଉଛି, ଶକୁନ୍ତଳା ପ୍ରତି ମୋର ଆଦୌ ଅଭିଳାଷ ନାହିଁ । ଦେଖ—
ମୁଁ କେଉଁଠି, ଆଉ ସେ ବା କେଉଁଠି ! ସେ ବଢ଼ିଛି ମୃଗଶିଶୁମାନଙ୍କ ସହିତ, ଏବଂ ପ୍ରେମ କଅଣ, ସେ ଜାଣେନା । ମୁଁ ତୁମକୁ ପରିହାସରେ ଯେଉଁ କଥାଟା କହିଦେଇଛି, ତାହାକୁ ତୁମେ ପ୍ରକୃତ ବୋଲି ଭାବିବ ନାହିଁ । ୧୯

( ସମସ୍ତଙ୍କର ପ୍ରସ୍ଥାନ )

।। ଦ୍ୱିତୀୟ ଅଙ୍କ ସମାପ୍ତ ।।



# विष्कम्भकः

( ततः प्रविशति कुशानादाय यजमानशिष्यः )

शिष्यः—अहो ! महानुभावो राजा दुष्यन्तः । प्रविष्टमात्र एव आश्रमं तत्रभवति निरुपप्लवानि नः कर्माणि ।

का कथा बाणसंधाने ज्याशब्देनैव दूरतः ।
हुंकारेणेव धनुषः स हि विघ्नानपोहति ॥ १ ॥

यावदिमान् वेदिसंस्तरणार्थं दर्भान् ऋत्विग्भ्य उपनयामि । ( परिक्रम्यावलोक्य च, आकाशे ) प्रियंवदे ! कस्येदमुशीरानुलेपनं मृणालवन्ति च नलिनीपत्राणि नीयन्ते ? ( आकर्ण्य ) किं ब्रवीषि ? आतपलङ्घनाद् बलवदसुस्था शकुन्तला, तस्याः शरीरनिर्वापणायेति ?

तर्हि, त्वरितं गम्यताम् । सखि ! सा खलु भगवतः कण्वस्य कुलपतेरुच्छ्वसितम् । अहमपि तावद् वैतानिकं शान्त्युदकम् अस्यै गौतमीहस्ते विसर्जयिष्यामि । ( निष्क्रान्तः )

॥॥ इति विष्कम्भकः ॥॥

# ବିଷ୍କମ୍ଭକ

( କୁଶ ଧରି ଜଣେ ଯାଜ୍ଞିକ-ଶିଷ୍ୟ ପ୍ରବେଶ କଲେ )

ଶିଷ୍ୟ— ଅହୋ ! ମହାରାଜା ଦୁଷ୍ୟନ୍ତଙ୍କର କି ପ୍ରତାପ ! ସେ ଆଶ୍ରମରେ ପ୍ରବେଶ କରିବା ମାତ୍ରେ ଆମ୍ଭମାନଙ୍କର କାର୍ଯ୍ୟ ନିର୍ବିଘ୍ନରେ ସମ୍ପାଦିତ ହେଉଛି ।

ଧନୁରେ ଶରସନ୍ଧାନ କରିବା ଦୂରେ ଥାଉ, ତାଙ୍କ ଧନୁର ହୁଙ୍କାର-ସ୍ୱରୂପ ଗୁଣଟଙ୍କାରରେ ହିଁ ସମସ୍ତ ବିଘ୍ନ ଦୂର ହୋଇ ଯାଉଛି । ମୁଁ ଯାଏଁ ବେଦି ଉପରେ ବିଛେଇବା ନିମନ୍ତେ ଏ କୁଶ ଯାଜ୍ଞିକମାନଙ୍କୁ ଦେଇ ଆସେଁ । ( କିଛିଦୂର ଯାଇ ଏବଂ ଶୂନ୍ୟ ଆଡେ ଚାହିଁ ) ପ୍ରିୟମ୍ବଦା, ଏହି ବେଣାମୂଳଲେପ ଏବଂ ନାଡ ସମେତ ପଦ୍ମପୁଷ୍ପ କାହା ପାଇଁ ନେଉଛ ? ( ଶୁଣିଲା ଭଳି ଅଭିନୟ କରି ) କ'ଣ କହୁଛ ? ଗ୍ରୀଷ୍ମତାପ ହେତୁ ଶକୁନ୍ତଳାର ଦେହ ଅତ୍ୟନ୍ତ ଅସୁସ୍ଥ ହୋଇଛି । ତା'ର ଶରୀର ଶୀତଳ କରିବା ପାଇଁ ଏ ସମସ୍ତ ନେଇ ଯାଉଛ ? ତାହା ହେଲେ ପ୍ରିୟମ୍ବଦା, ଶୀଘ୍ର ଯାଅ । ଶକୁନ୍ତଳା ହେଉଛି କୁଳପତି କଣ୍ୱଙ୍କର ପ୍ରାଣ । ମୁଁ ମଧ୍ୟ ବର୍ତ୍ତମାନ ଯାଇ ଯଜ୍ଞର ଶାନ୍ତି-ଜଳ ଗୌତମୀଙ୍କ ହାତରେ ପଠାଇ ଦେଉଛି ।

( ପ୍ରସ୍ଥାନ )

।। ବିଷ୍କମ୍ଭକ ଶେଷ ।।

# तृतीयोऽङ्कः

( ततः प्रविशति कामयानावस्थो राजा )

राजा—( निःश्वस्य )

जाने तपसो वीर्यं सा बाला परवतीति मे विदितम् ।
न च निम्नादिव सलिलं निवर्तते मे ततो हृदयम् ॥ २ ॥

( मदनबाधां निरूप्य ) भगवन् कुसुमायुध ! त्वया चन्द्रमसा च विश्वसनीयाभ्यामतिसंधीयते कामिजनसार्थः । कुतः

तव कुसुमशरत्वं शीतरश्मित्वमिन्दो
र्द्वयमिदमयथार्थं दृश्यते मद्विधेषु ।
विसृजति हिमगर्भैरग्निमिन्दुमयूखै
स्त्वमपि कुसुमबाणान् वज्रसारीकरोषि ॥ ३ ॥

अथवा,

अनिशमपि मकरकेतुर्मनसो रुजमावहन्नभिमतो मे ।
यदि मयि संश्रुतहृदयां तामधिकृत्य प्रहरतीति ॥ ४ ॥

( परिक्रम्य ) क्व नु खलु संस्थिते कर्मणि सदस्यैरनुज्ञातः श्रमक्लान्तमात्मानं विनोदयामि ? (निःश्वस्य) किं नु खलु मे प्रियादर्शनादृते शरणमन्यत् ? यावदेनामन्विष्यामि । (सूर्यमवलोक्य) इमामुग्राम् आतपवेलां प्रायेण लतावलयवत्सु मालिनीतीरेषु ससखीजना शकुन्तला गमयति । तत्रैव तावद् गच्छामि । अनया बालपादपवीथ्या सुतनुरचिरगतेति तर्कयामि । कुतः—

संमीलन्ति न तावद् बन्धनकोशास्तयाऽवचितपुष्पाः ।
क्षीरस्निग्धाश्चामी दृश्यन्ते किसलयच्छेदाः ॥ ५ ॥

# ତୃତୀୟ ଅଙ୍କ

( ତା'ପରେ ବିରହବ୍ୟାକୁଳ ରଜାଙ୍କର ପ୍ରବେଶ )

ରଜା— ( ଦୀର୍ଘଶ୍ୱାସ ପକାଇ )
ଋଷିମାନଙ୍କର ତପସ୍ୟାର ଶକ୍ତି ମୁଁ ଜାଣେ । ଆଉ ଜାଣେ, ଶକୁନ୍ତଳା ପରାଧୀନା । ତଥାପି, ଜଳ ଯେପରି ନିମ୍ନରୁ ଉଚ୍ଚକୁ ପ୍ରବାହିତ ହୁଏନାହିଁ, ସେହିପରି ମୋ ହୃଦୟ ତା'ଠାରୁ ନିବର୍ତ୍ତିତ ହେଉନାହିଁ । ୨

( ବିରହ-ବେଦନାର ଅଭିନୟ କରି ) ଭଗବାନ୍ କାମଦେବ, ତୁମେ ଓ ଚନ୍ଦ୍ରମା ଦୁହେଁ କାମୀଜନମାନଙ୍କର ବିଶ୍ୱାସୀ ହେଲେ ମଧ୍ୟ ସେମାନଙ୍କୁ ପ୍ରତାରିତ କରୁଛ ! କାରଣ —

ତୁମର ଶର ଯେ ପୁଷ୍ପନିର୍ମିତ ଏବଂ ଚନ୍ଦ୍ରର କିରଣ ଯେ ଶୀତଳ, ଏ ଉଭୟ ମୋ ଭଳି ବ୍ୟକ୍ତିମାନଙ୍କୁ ଅଯଥାର୍ଥ ବୋଧ ହେଉଛି । ଯେହେତୁ, ଚନ୍ଦ୍ର ତା'ର ଶୀତଳ କିରଣ ଦ୍ୱାରା ଅଗ୍ନି ବର୍ଷଣ କରୁଛି ଏବଂ ତୁମେ ମଧ୍ୟ ପୁଷ୍ପଶରଗୁଡ଼ିକୁ ବଜ୍ରଭଳି କଠୋର କରିଛ । ୩

ଅଥବା କନ୍ଦର୍ପ ସର୍ବଦା ମୋ ମନରେ ପୀଡ଼ା ଦେଲେ ମଧ୍ୟ ମୋତେ ବାଞ୍ଛିତ ବୋଧ ହୁଅନ୍ତା, ଯଦି ସେ ଶକୁନ୍ତଳାକୁ ମଧ୍ୟ ମୋ ପ୍ରତି ଅନୁରକ୍ତା କରି ପୀଡ଼ା ଦିଅନ୍ତା । ୪

(ପଦଚାରଣା କରି) ଋଷିମାନଙ୍କ କାମ ନିର୍ବିଘ୍ନରେ ଚାଲିଛି ଏବଂ ସଦସ୍ୟମାନେ ମୋତେ କିଛି ସମୟ ଅବସର ଦେଇଛନ୍ତି । ବର୍ତ୍ତମାନ କେଉଁଠାରେ ବସି କ୍ଳାନ୍ତି ଦୂର କରିବି ? (ଦୀର୍ଘ ନିଃଶ୍ୱାସ ପକାଇ) ପ୍ରିୟାର ଦର୍ଶନ ବ୍ୟତୀତ ମୋର ଆଉ କି ଗତି ଅଛି ? ଯାଉଛି, ତାକୁ ହିଁ ଅନ୍ୱେଷଣ କରିବି । ( ସୂର୍ଯ୍ୟଙ୍କ ଆଡ଼େ ଚାହିଁ ) ସେ ବୋଧହୁଏ ମାଳିନୀ ନଦୀ କୂଳରେ ଲତାକୁଞ୍ଜରେ ସଖୀମାନଙ୍କ ସହିତ ଏଇ ପ୍ରଖର ମଧ୍ୟାହ୍ନ ସମୟ ଅତିବାହିତ କରୁଥିବ । ଯାଉଛି, ସେହି ସ୍ଥାନକୁ ଯିବି ।

ଏଇ କ୍ଷୁଦ୍ର-ବୃକ୍ଷ-ବହୁଳ ବାଟ ଦେଇ ଶକୁନ୍ତଳା ଯାଇଛି ବୋଲି ମୋର ଅନୁମାନ । କାରଣ—

ସେ ବୃକ୍ଷଗୁଡ଼ିକର ଯେଉଁସବୁ ବୃନ୍ତରୁ ଫୁଲ ତୋଳି ନେଇଛି, ସେହି ବୃନ୍ତଗୁଡ଼ିକର କୋଷ ବର୍ତ୍ତମାନ ପର୍ଯ୍ୟନ୍ତ ବୁଜି ହୋଇ ନାହିଁ । ଆଉ-ମଧ୍ୟ, ସେ ଯେଉଁସବୁ ସ୍ଥାନରୁ ପଲ୍ଲବଗୁଡ଼ିକୁ ଛିଣ୍ଡାଇନେଇଛି, ସେହି ସ୍ଥାନଗୁଡ଼ିକ ବର୍ତ୍ତମାନ କ୍ଷୀରରେ ଚିକ୍‌କଣ ଦିଶୁଛି । ୫

( परिक्रम्य संस्पर्शं रूपयित्वा) अहो ! प्रवातसुभगोऽयमुद्देशः ।

शक्यमरविन्दसुरभिः कणवाही मालिनीतरङ्गाणाम् ।
अङ्गैरनङ्गतप्तैरविरलमालिङ्गितुं पवनः ॥ ६ ॥

( परिक्रम्यावलोक्य च ) अस्मिन् वेतसपरिक्षिप्ते लतामण्डपे भवितव्यं तया । तथा हि ( अधो विलोक्य )—

अभ्युन्नता पुरस्तादवगाढा जघनगौरवात् पश्चात् ।
द्वारेऽस्य पाण्डुसिकते पदपङ्क्तिर्दृश्यतेऽभिनवा ॥ ७ ॥

यावद् विटपान्तरेण अवलोकयामि । ( तथा कृत्वा सहर्षम् ) अये ! लब्धं नेत्रनिर्वाणम् । एषा मे मनोरथप्रियतमा सकुसुमास्तरणं शिलापट्टमधिशयाना सखीभ्यामन्वास्यते । भवतु । श्रोष्यामि आसां विस्रम्भकथितानि । ( विलोकयन् स्थितः )

( ततः प्रविशति यथोक्तव्यापारा सह सखीभ्यां शकुन्तला )

सख्यौ—( उपवीज्य सस्नेहम् ) हला सउंदले ! अवि सुहेदि दे णलिणीपत्तवादो ? (हला शकुन्तले ! अपि सुखयति ते नलिनीपत्रवातः ?)

शकु—किं वीअअंति मं सहीओ ? ( किं वीजयतो मां सख्यौ ? )

( सख्यौ विषादं नाटयित्वा परस्परमवलोकयतः )

राजा—बलवदसुस्थशरीरा शकुन्तला दृश्यते ( सवितर्कम् ) तत् किमयमातपदोषः स्यात्, उत यथा मे मनसि वर्तते ? ( साभिलाषं निर्वर्ण्य ) अथवा कृतं संदेहेन—

स्तनन्यस्तोशीरं शिथिलितमृणालैकवलयं
प्रियायाः साबाधं किमपि कमनीयं वपुरिदम् ।
समस्तापः कामं मनसिजनिदाघप्रसरयो-
र्न तु ग्रीष्मस्यैवं सुभगमपराद्धं युवतिषु ॥ ८ ॥

( କିଛି ବାଟ ଯାଇ ଶୀତଳ ବାୟୁରସ୍ପର୍ଶ ଅନୁଭବ କରି ) ଆହା ! ଶୀତଳ ପବନରେ ଏ ସ୍ଥାନ କି ରମଣୀୟ !

ପଦ୍ମ ସୁଗନ୍ଧରେ ସୁଗନ୍ଧିତ ବାୟୁ ମାଳିନୀ ନଦୀର ତରଙ୍ଗରୁ ଜଳକଣାମାନ ବହନ କରି ବହି ଆସୁଛି । ଏହି ବାୟୁକୁ ବିରହସନ୍ତପ୍ତ ଶରୀରରେ ଗାଢଭାବରେ ଆଲିଙ୍ଗନ କରାଯାଇ ପାରେ । ୬

( ପୁଣି କିଛି ବାଟ ଯାଇ ଓ ଅବଲୋକନ କରି ) ଏଇ ବେତସ-ବେଷ୍ଟିତ ଲତାମଣ୍ଡପରେ ଶକୁନ୍ତଳା ଥାଇପାରେ । କାରଣ (ତଳକୁ ଚାହିଁ ) —

ଏ ଲତା ମଣ୍ଡପର ଦ୍ୱାରଦେଶରେ ଶୁଭ୍ର ବାଲୁକା ଉପରେ ସଦ୍ୟ ପଦଚିହ୍ନମାନ ପଡ଼ିଛି । ପଦଚିହ୍ନ ଗୁଡ଼ିକର ଆଗ ଭାଗ ଉଚ୍ଚ ଏବଂ ପଛ ଭାଗ ଜଘନର ଭାର ହେତୁ ନୀଚ ଦେଖାଯାଉଛି । ୭

ଆଚ୍ଛା, ଶାଖା ଅନ୍ତରାଳରୁ ଚାହେଁ । ( ନିରୀକ୍ଷଣ କରି ଆନନ୍ଦରେ ) ଆହା ! ଚକ୍ଷୁ ମୋର ଧନ୍ୟ ହେଲା । ଏଇ ମୋର କାମନାର ପ୍ରିୟତମା ଶିଳାପଟ ଉପରେ ଫୁଲ ବିଛଣାରେ ଶୋଇଛି । ଦୁଇ ସଖୀ ତା'ପାଖରେ ବସି ସେବା କରୁଛନ୍ତି । ଆଚ୍ଛା ଶୁଣେଁ, ଏମାନେ ଏକାନ୍ତରେ କଅଣ କଥାବାର୍ତ୍ତା କରୁଛନ୍ତି । ( ନିରୀକ୍ଷଣ କରି ରହିଲେ )

( ଉପର ବର୍ଣ୍ଣନା ଅନୁସାରେ ସଖୀ ଦୁହିଁଙ୍କ ସହିତ ଶକୁନ୍ତଳା ଦେଖାଗଲେ )

ସଖୀଦ୍ୱୟ—(ବିଞ୍ଚୁଦେଇ ସ୍ନେହରେ) ସଖୀ ଶକୁନ୍ତଳା, ଏଇ ପଦ୍ମପତ୍ରର ପବନ ତୋତେ ସୁଖକର ବୋଧ ହେଉଛି ?

ଶକୁ— ତୁମେ ଦୁହେଁ କ'ଣ ମୋତେ ବିଞ୍ଚୁ ଦେଉଛ ?

ସଖୀଦ୍ୱୟ—( ବିଷାଦରେ ପରସ୍ପରକୁ ଚାହିଁଲେ ।

ରାଜା— ଶକୁନ୍ତଳା ଅତ୍ୟନ୍ତ ଅସୁସ୍ଥ ଥିଲା ପରି ଦେଖାଯାଉଛି । ( ଚିନ୍ତାକରି ) ତେବେ ଏହି ଅସୁସ୍ଥତା ଗ୍ରୀଷ୍ମସନ୍ତାପ ହେତୁରୁ ନା ମୁଁ ଯେଉଁଭଳି ଭାବୁଛି, ସେହି କାରଣରୁ ? ( ଅନୁରାଗର ସହିତ ଚାହିଁ ) ନା, ସନ୍ଦେହର ଅବକାଶ ନାହିଁ ।

ଏହାର ସ୍ତନଦ୍ୱୟ ଉପରେ ଉଶୀର ( ବେଣାମୂଳ ) ଲେପ ଦିଆ-ଯାଇଛି । ହସ୍ତ ଦ୍ୱୟରେ ଗୋଟିଏ ଗୋଟିଏ ମାତ୍ର ମୃଣାଳବଳୟ ପିନ୍ଧିଛି, ଏବଂ ତାହା ପୁଣି ଶିଥିଳ ହୋଇଯାଇଛି । ପ୍ରିୟତମାର ଶରୀର ଅସୁସ୍ଥ ଥିଲେ ମଧ୍ୟ କି ସୁନ୍ଦର ! କନ୍ଦର୍ପ ଏବଂ ଗ୍ରୀଷ୍ମକାଳ, ଉଭୟଙ୍କର ତାପ ସମାନ, କିନ୍ତୁ ଗ୍ରୀଷ୍ମତାପ ରମଣୀମାନଙ୍କଠାରେ ଏପରି ରମଣୀୟତା ସୃଷ୍ଟି କରିପାରେ ନାହିଁ । ୮

प्रिय—( जनान्तिकम् ) अणसूए ! तस्स राएसिणो पढमदंसणादो आरहिय पज्जुस्सुआ विअ सउंदला । किं णु खु से तण्णिमित्तो अअं भवे ? ( अनसूये ! तस्य राजर्षेः प्रथमदर्शनादारभ्य पर्युत्सुकेव शकुन्तला । किं नु खलु तस्यास्तन्निमित्तोऽयमातङ्को भवेत् ? )

अन—सहि ! मम वि ईदिसी आसंका हिअअस्स । होदु, पुच्छिस्सं दाव णं । (प्रकाशम् ) सहि ! पुच्छिदव्वासि किंपि । बलवं खु दे संदावो । ( सखि ! ममापीदृशी आशङ्का हृदयस्य । भवतु, प्रक्ष्यामि तावदेनाम् । (प्रकाशम् ) सखि ! प्रष्टव्यासि किमपि । बलवान् खलु ते संतापः । )

शकु—( पूर्वार्धेन शयनादुत्थाय ) हला ! किं वत्तुकामासि ? ( हला ! किं वक्तुकामासि ? )

अन—हला सउंदले ! अणब्भंतरा खु अम्हे मदणगदस्स वुत्तंतस्स । किंदु जादिसो इदिहासणिबंधेसु कामअमाणाणं अवत्था सुणीअदि तादिसीं दे पेक्खामि । कहेहि किंणिमित्तं दे संदावो । विआरं खु परमत्थदो अजाणिअ अणारंभो पडिआरस्स । ( हला शकुन्तले ! अनभ्यन्तरे खल्वावां मदनगतस्य वृतान्तस्य । किंतु यादृशी इतिहासनिबन्धेषु कामयमानानामवस्था श्रूयते तादृशीं तव पश्यामि । कथय किंनिमित्तस्ते संतापः । विकारं खलु परमार्थतः अज्ञात्वा अनारम्भः प्रतीकारस्य । )

राजा—अनसूयामप्यनुगतो मदीयस्तर्कः । नहि स्वाभिप्रायेण मे दर्शनम् ।

शकु—( आत्मगतम् ) बलवं खु मे अहिणिवेसो । दाणिं वि सहसा एदाणं ण सक्कणोमि णिवेदिदुं । (बलवान् खलु मेऽभिनिवेशः । इदानीमपि सहसा एतयोर्न शक्नोमि निवेदयितुम् । )

प्रिय—सहि सउंदले ! सुट्ठु एसा भणादि । किं अत्तणो आतंकं उवेक्खसि ? अणुदिअहं खु परिहीअसि अंगेहिं । केवलं लावण्णमई छाआ तुमं ण मुंचदि । (सखि शकुन्तले ! सुष्ठु एषा भणति । किमात्मन आतङ्कमुपेक्षसे ? अनुदिवसं खलु परिहीयसेऽङ्गैः । केवलं लावण्यमयी छाया त्वां न मुञ्चति । )

ପ୍ରିୟ— ( ଚୁପ୍ ଚୁପ୍ ) ଅନସୂୟା, ଶକୁନ୍ତଳା ସେହି ରାଜର୍ଷିଙ୍କୁ ପ୍ରଥମକରି ଦେଖିଲା ଦିନଠାରୁ ଉତ୍କଣ୍ଠିତା ପରି ଜଣା ପଡୁଛି । ତେବେ କଅଣ ଏହାର ଅସୁସ୍ଥତା ସେହି କାରଣରୁ ହୋଇଛି ?

ଅନ— ସଖୀ, ମୋ ହୃଦୟରେ ମଧ୍ୟ ସେହି ଆଶଙ୍କା । ଆଚ୍ଛା, ତାକୁ ପଚାରେଁ । ( ପ୍ରକାଶ୍ୟରେ ) ସଖୀ, ତୁ ତୀବ୍ର ସନ୍ତାପ ଭୋଗ କରୁଛୁ । ତୋତେ ଗୋଟିଏ କଥା ପଚାରିବି ।

ଶକୁ— ( ବିଛଣାରୁ ଅଧା ଉଠି ) ସଖୀ, କଅଣ କହିବାକୁ ଚାହୁଁଛ କି ?

ଅନ— ଶକୁନ୍ତଳା, ଆମ ଦୁହିଁଙ୍କର କାମ-ଅନୁଭବ କିଛି ନାହିଁ । କିନ୍ତୁ ଇତିହାସ, କାବ୍ୟକବିତା ପ୍ରଭୃତିରେ କାମୀଜନମାନଙ୍କର ଯେଉଁ-ଭଳି ଅବସ୍ଥା ବର୍ଣ୍ଣନା କରଯାଇଛି, ବର୍ତ୍ତମାନ ତୋଠାରେ ମୁଁ ସେହିଭଳି ଅବସ୍ଥା ଦେଖୁଛି । କହ, ତୋର ଏ ସନ୍ତାପର କାରଣ କଅଣ ? ରୋଗର ସ୍ୱରୂପ ନିର୍ଣ୍ଣୟ କର ନ ହେଲେ ପ୍ରତିକାର କର-ଯାଇପାରେ ନାହିଁ ।

ରଜା— ମୁଁ ଯାହା ଭାବୁଛି, ଅନସୂୟା ତ ସେଇଆ ଭାବୁଛି ! ତା'ହେଲେ ମୁଁ ଯେ କେବଳ ନିଜର ଅଭିପ୍ରାୟ ଅନୁସାରେ ସମ୍ଭାବନା କରୁଛି, ତା ନୁହେଁ !

ଶକୁ— ( ସ୍ୱଗତ ) ମୋର ପ୍ରେମାନୁରାଗ ଗଭୀର, କିନ୍ତୁ ହଠାତ୍ ଏମାନଙ୍କୁ ମୁଁ ତାହା ଜଣାଇ ପାରୁ-ନାହିଁ ।

ପ୍ରିୟ— ସଖୀ, ଅନସୂୟା ଭଲ କଥା କହୁଛି । ତୁ ନିଜର ଅସୁସ୍ଥତ କୁ କାହିଁକି ଉପେକ୍ଷା କରୁଛୁ ? ଦିନକୁ ଦିନ ତୋ ଦେହ କ୍ଷୀଣ ହୋଇ ଯାଉଛି । କେବଳ ଲାବଣ୍ୟର ଝଲକ ମାତ୍ର ତୋ ଦେହରେ ଅବଶିଷ୍ଟ ଅଛି ।

ରଜା— ପ୍ରିୟମ୍ବଦା ଠିକ କଥା କହିଛି । କାରଣ—
ଏହାର ମୁଖରେ ଗଣ୍ଡସ୍ଥଳ ଝାଉଁଳିଗଲଣି, ବକ୍ଷରେ ସ୍ତନଯୁଗଳ କଠିନତା ହରାଇଲଣି । କଟୀ କ୍ଷୀଣତର, କାନ୍ଧ ଅତ୍ୟନ୍ତ ଶିଥିଳ ଏବଂ କାନ୍ତି ପାଣ୍ଡୁରବର୍ଣ୍ଣ ଦିଶିଲଣି । ପତ୍ରଶୋଷକ ବାୟୁର ସ୍ପର୍ଶରେ ମାଧବୀ ଲତାର ଯେଉଁଳି ଅବସ୍ଥା ହୁଏ, କାମସନ୍ତପ୍ତା ଶକୁନ୍ତଳାର ଅବସ୍ଥା ସେହିପରି ହେଲଣି । ଏହାକୁ ଦେଖିଲେ ମନରେ ଦୁଃଖ ଜାତ ହେଉଛି, କିନ୍ତୁ ଦେଖିବାକୁ ପ୍ରୀତିକର ମଧ୍ୟ ବୋଧ ହେଉଛି । ୯

ଶକୁ— ସଖୀ, ତୁମ ଦୁହିଁଙ୍କୁ ନ କହି ଆଉ କାହାକୁ କହିବି ? କିନ୍ତୁ କହି ତୁମମାନଙ୍କୁ କଷ୍ଟ ଦେବି ମାତ୍ର ।

राजा—अवितथमाह प्रियंवदा। तथा हि—

क्षामक्षामकपोलमाननमुरः काठिन्यमुक्तस्तनं
मध्यः क्लान्ततरः प्रकामविनतावंसौ छविः पाण्डुरा।
शोच्या च प्रियदर्शना च मदन-क्लिष्टेयमालक्ष्यते
पत्राणामिव शोषणेन मरुता स्पृष्टा लता माधवी ॥ ९ ॥

शकु—सहि! कस्स वा अण्णस्स कहइस्सं? किदु आआसइत्तिआ दाणिं वो भविस्सं। (सखि! कस्य वा अन्यस्य कथयिष्यामि? किन्तु आयासयित्री इदानीं वां भविष्यामि।)

उभे—अदो एव्व क्खु णिब्बंधो। सिणिद्धजणसंविभत्तं हि दुक्खं सज्झवेअणं भोदि। (अत एव खलु निर्बन्धः। स्निग्धजनसंविभक्तं हि दुःखं सह्यवेदनं भवति।)

राजा—

पृष्टा जनेन समदुःखसुखेन बाला
नेयं न वक्ष्यति मनोगतमाधिहेतुम्।
दृष्टो विवृत्य बहुशोऽप्यनया सतृष्ण-
मत्रान्तरे श्रवणकातरतां गतोऽस्मि ॥ १० ॥

शकु—सहि! जदो पहुदि मम दंसणपहं आअदो सो तवोवणरक्खिदा राएसी, (अर्धोक्ते लज्जां नाटयति)। (सखि! यतः प्रभृति मम दर्शनपथमागतः स तपोवनरक्षिता राजर्षिः (अर्धोक्ते लज्जां नाटयति)।

उभे—कहेदु पिअसही। (कथयतु प्रियसखी)।

शकु—तदो आरहिअ तग्गदेण अहिलासेण एतदवत्थम्हि संवुत्ता। (तत आरभ्य तद्गतेनाभिलाषेणैतदवस्थास्मि संवृत्ता।)

राजा—(सहर्षम्) श्रुतं यत् श्रोतव्यम्,

स्मर एव तापहेतुर्निर्वापयिता स एव मे जातः।
दिवस इवाभ्रश्यामस्तपात्यये जीवलोकस्य ॥ ११ ॥

शकु—तं जइ वो अणुमदं ता तह वट्टह जह तस्स राएसिणो अणुकंपणिज्जा होमि। अण्णहा अवस्सं सिंचध मे तिलोदअं। (तद् यदि वामनुमतम्, तदा, तथा वर्तेथाम्, यथा, तस्य राजर्षेरनुकम्पनीया भवामि। अन्यथा अवश्यं सिञ्चतं मे तिलोदकम्।)

ରଜା— ପ୍ରିୟମ୍ବଦା ଠିକ୍ କଥା କହିଛି । କାରଣ —
ଏହାର ମୁଖରେ ଗଣ୍ଡସ୍ଥଳ ଝାଉଁଳିଗଲାଣି, ବକ୍ଷରେ ସ୍ତନଯୁଗଳ କଠିନତା ହରାଇଲାଣି । କଟୀ କ୍ଷୀଣତର, କାନ୍ଧ ଅତ୍ୟନ୍ତ ଶିଥିଳ ଏବଂ କାନ୍ତି ପାଣ୍ଡୁରବର୍ଣ୍ଣ ଦିଶିଲାଣି । ପତ୍ରଶୋଷକ ବାୟୁର ସ୍ପର୍ଶରେ ମାଧବୀ ଲତାର ଯେଉଁଳି ଅବସ୍ଥା ହୁଏ, କାମସନ୍ତପ୍ତା ଶକୁନ୍ତଳାର ଅବସ୍ଥା ସେହିପରି ହେଲାଣି । ଏହାକୁ ଦେଖିଲେ ମନରେ ଦୁଃଖ ଜାତ ହେଉଛି, କିନ୍ତୁ ଦେଖିବାକୁ ପ୍ରୀତିକର ମଧ୍ୟ ବୋଧ ହେଉଛି । ୯

ଶକ— ସଖୀ, ତୁମ ଦୁହିଁଙ୍କୁ ନ କହି ଆଉ କାହାକୁ କହିବି ? କିନ୍ତୁ କହି ତୁମମାନଙ୍କୁ କଷ୍ଟ ଦେବି ମାତ୍ର ।

ସଖୀଦ୍ୱୟ—ସେଇଥିପାଇଁ ତ ଆମର ଆଗ୍ରହ । ପ୍ରିୟଜନଙ୍କ ଆଗରେ ପ୍ରକାଶ କଲେ ଦୁଃଖଭର ଲାଘବ ହୁଏ ।

ରଜା— ଦୁଃଖରେ ଦୁଃଖୀ ଏବଂ ସୁଖରେ ସୁଖୀ ସଖୀଦୁହେଁ ପଚାରୁଛନ୍ତି । ତେଣୁ ଶକୁନ୍ତଳା ନିଜର ମାନସିକ ବ୍ୟାଧିର କାରଣ ନିଶ୍ଚୟ କହିବ । ଯଦ୍ୟପି ଏ ବହୁବାର ମୋତେ ସତୃଷ୍ଣ ନୟନରେ ଫେରି ଫେରି ଚାହୁଁ ଥିଲା , ତଥାପି ବର୍ତ୍ତମାନ ଏହାର ବ୍ୟଥାର କାରଣ ଶୁଣିବା ନିମନ୍ତେ ମୁଁ ଅଧୀର । ୧୦

ଶକୁ— ସଖୀ, ସେହି ତପୋବନରକ୍ଷକ ରାଜର୍ଷି ଯେଉଁଦିନଠାରୁ ମୋର ଦୃଷ୍ଟିପଥକୁ ଆସିଲେଣି ( କହୁଁ କହୁଁ ଲଜ୍ଜିତା ହୋଇପଡ଼ିଲେ )

ସଖୀଦ୍ୱୟ—ପ୍ରିୟସଖୀ କହ ।

ଶକୁ— ସେହିଦିନଠାରୁ ତାଙ୍କଠାରେ ଅଭିଳାଷ ପୋଷଣ କରି ମୋର ଏହି ଅବସ୍ଥା ।

ରଜା— ( ଆନନ୍ଦରେ ) ଯାହା ଶ୍ରବଣଯୋଗ୍ୟ, ତାହା ଶୁଣିଲି ।
ଗ୍ରୀଷ୍ମକାଳର ଶେଷ ଆଡକୁ ଯେଉଁ ଦିବସ ତାପର କାରଣ ହୋଇଥାଏ, ସେହି ଦିବସ ପୁଣି ମେଘାଛନ୍ନ ହୋଇ ଶାନ୍ତି ଦାନ କରେ । ସେହିପରି ଯେଉଁ କନ୍ଦର୍ପ ମୋର ସନ୍ତାପ ସୃଷ୍ଟି କରିଥିଲା, ସେ ପୁଣି ନିଜେ ତାହା ଉପଶମ କଲା । ୧୧

ଶକୁ— ଯଦି ତୁମମାନଙ୍କୁ ଉଚିତ ବୋଧ ହେଉଛି, ତେବେ ସେହି ରାଜର୍ଷି ଯେପରି ମୋ ପ୍ରତି ସଦୟ ହେବେ, ସେଇଭଳି ବ୍ୟବସ୍ଥା କର, ନ ହେଲେ ତିଳୋଦକରେ ମୋ ଆତ୍ମାର ତର୍ପଣ କର ।

राजा—संशयच्छेदि वचनम् ।

प्रिय—( जनान्तिकम् ) अणसूए ! दूरगअमम्महा अक्खमा इअं कालहरणस्स । जस्सिं बद्धभावा एसा सो ललामभूदो पोरवाणं । ता जुत्तं से अहिलासो अहिणंदिदुं । ( अनसूये ! दूरगतमन्मथा अक्षमेयं कालहरणस्य । यस्मिन् बद्धभावैषा स ललामभूतः पौरवाणाम् । तद् युक्तमस्या अभिलाषोऽभिनन्दितुम् । )

अन—सहि ! तह, जह भणसि । ( सखि ! तथा, यथा भणसि । )

प्रिय—( प्रकाशम् ) सहि ! दिट्ठिआ अणुरूवो दे अहिणिवेसो । साअरं उज्झिअ कहिं वा महाणई ओदरइ ? को दाणिं सहआरं अंतरेण अदिमुत्तलदं पल्लविदं सहेदि ? ( सखि ! दिष्ट्या अनुरूपस्तेऽभिनिवेशः । सागरमुज्झित्वा कुत्र वा महानदी अवतरति ? क इदानीं सहकारमन्तरेणातिमुक्तलतां पल्लवितां सहते ? )

राजा—किमत्र चित्रं यदि विशाखे शशाङ्कलेखामनुवर्तेते ?

अन—को उण उवाओ भवे जेण अविलंबिअं णिहुअं अ सहीए मणोरहं संपादेम्ह ? ( कः पुनरुपायो भवेद् येनाविलम्बितं निभृतं च सख्या मनोरथं संपादयावः ? )

प्रिय—णिहुअंत्ति चिंतणिज्जं भवे । सिग्घंत्ति सुअरं । ( निभृतमिति चिन्तनीयं भवेत् । शीघ्रमिति सुकरम् । )

अन—कहं विअ ? ( कथमिव ? )

प्रिय—णं सो राएसी इमस्सिं सिणिद्धदिट्ठीए सूइदाहिलासो इमाइं दिअहाइं पज्जाअरकिसो लक्खीअदि । ( ननु स राजर्षिरेतस्यां स्निग्धदृष्ट्या सूचिताभिलाषः एतान् दिवसान् प्रजागरकृशो लक्ष्यते । )

राजा—सत्यमित्थंभूत एवास्मि । तथा हि—

इदमशिशिरैरन्तस्तापाद् विवर्णमणीकृतं
निशि निशि भुजन्यस्तापाङ्गप्रसारिभिरश्रुभिः ।
अनतिलुलितज्याघाताङ्कं मुहुर्मणिबन्धनात्
कनकवलयं स्रस्तं स्रस्तं मया प्रतिसार्यते ॥ १२ ॥

ରଜା— ଏହାର ବଚନ ମୋର ସମସ୍ତ ସଂଶୟ ଦୂର କଲା ।

ପ୍ରିୟ— ( ଚୁପ୍ ଚୁପ୍ ) ଅନସୂୟା, ଏହାର ଅନୁରାଗ ତୀବ୍ର ହୋଇଗଲାଣି, ଏଣିକି ଆଉ ବିଳମ୍ବ ସହିପାରିବ ନାହିଁ । ଏ ଯାହାଙ୍କ ପ୍ରତି ଅନୁରକ୍ତା, ସେ ହେଉଛନ୍ତି ପୁରୁବଂଶର ଭୂଷଣ । ତେଣୁ ଏହାର ଅଭିଳାଷ ଅଭିନନ୍ଦନୀୟ ।

ଅନ— ତୁ ଯଥାର୍ଥ କହୁଛୁ ।

ପ୍ରିୟ— ( ପ୍ରକାଶ୍ୟରେ ) ସଖୀ, ଭଗ୍ୟକୁ ତୁ ଯୋଗ୍ୟ ପାତ୍ରରେ ମନ ବଳାଇଛୁ । ମହାନଦୀ ସାଗର ବ୍ୟତୀତ ଆଉ କାହା ସହିତ ମିଳନ ଗ୍ଧହେଁ ? ପଲ୍ଲବିତା ମାଧବୀଲତାକୁ ସହକାର ବିନା ଆଉ କିଏ ବହନ କରିପାରେ ?

ରଜା— ବିଶାଖା ( ନକ୍ଷତ୍ର ) ଦ୍ୱୟ ଯେ ଚନ୍ଦ୍ରଲେଖାର ଅନୁଗମନ କରନ୍ତି, ଏଥିରେ ଆଶ୍ଚର୍ଯ୍ୟ କଅଣ ଅଛି ?

ଅନ— ତେବେ ଆମେ କି ଉପାୟରେ ସଖୀର ଅଭିଳାଷ ଶୀଘ୍ର ତଥା ଗୋପନରେ ପୂର୍ଣ୍ଣ କରି ପାରିବା ?

ପ୍ରିୟ— ଗୋପନରେ କରିପାରିବା ହିଁ ଚିନ୍ତାର ବିଷୟ, ଶୀଘ୍ର କରିପାରିବା ସହଜ ।

ଅନ— କିପରି ?

ପ୍ରିୟ— ସେହି ରଜର୍ଷି ଏହାକୁ ଯେପରି ସ୍ନେହଭରା ଦୃଷ୍ଟିରେ ଗ୍ଧହୁଁ ଥିଲେ, ସେଥିରୁ ଏହା ପ୍ରତି ତାଙ୍କର ଅଭିଳାଷ ସୂଚିତ ହେଉଥିଲା । ଏଇ କେତେଦିନ ହେଲା ସେ ଅନିଦ୍ରାରେ କ୍ଷୀଣ ମଧ୍ୟ ଦେଖାଯାଉଛନ୍ତି ।

ରଜା— ପ୍ରକୃତରେ ମୋର ଅବସ୍ଥା ସେହିଭଳି ହୋଇଗଲାଣି । କାରଣ, ପ୍ରତିଦିନ ରତିରେ ମୋର ବାହୁ ଉପରେ ସ୍ଥାପିତ ନେତ୍ରକୋଣରୁ ହୃଦୟ—ତାପ—ଉଷ୍ଣ ଅଶ୍ରୁଧାର ନିର୍ଗତ ହୋଇ ମୋର କଙ୍କଣର ମଣି-ଗୁଡ଼ିକୁ ମଳିନ କରିଦେଲାଣି ଏବଂ ସୁବର୍ଣ୍ଣକଙ୍କଣ ହସ୍ତର ଧନୁର୍ଗୁଣ—ଆକର୍ଷଣଜନିତ ଆଘାତଚିହ୍ନକୁ ସ୍ପର୍ଶ ନ କରି ବାରମ୍ବାର ମଣିବନ୍ଧରୁ ଖସି ପଡୁଛି, ଫଳରେ ମୋତେ ବାରମ୍ବାର ତାହାକୁ ଟେକିବାକୁ ପଡୁଛି । ୧୨

प्रिय—(विचिन्त्य) हला ! मअणलेहो से करिअदु । इमं देवता-सेसा-वदेसेण सुमणोगोविदं करिअ से हत्थअं पावइस्सं । ( हला ! मदनलेखोऽस्य क्रियताम् । इमं देवता-शेषाऽपदेशेन सुमनो-गोपितं कृत्वा तस्य हस्तं प्रापयिष्यामि । )

अन—रोअइ मे सुउमारो पओओ । किं वा सउंदला भणादि ? ( रोचते मे सुकुमारः प्रयोगः । किं वा शकुन्तला भणति ? )

शकु—को णिओओ विकप्पीअदि ? ( को नियोगो विकल्प्यते ? )

प्रिय—तेण हि अत्तणो उवण्णासाणुरूवं चिंतेहि दाव ललिअपदबंधणं । ) ( तेन हि, आत्मनः उपन्यासानुरूपं चिन्तय तावल्ललितपद-बन्धनम् । )

शकु—हला ! चिंतेमि अहं । अवहीरणभीरुअं पुणो वेवइ मे हिअअं । ( हला ! चिन्तयाम्यहम् । अवधीरणाभीरु पुनर् वेपते मे हृदयम् । )

राजा—( सहर्षम् )—

अयं स ते तिष्ठति संगमोत्सुको
विशङ्कसे भीरु ! यतोऽवधीरणाम् ।
लभेत वा प्रार्थयिता न वा श्रियं
श्रिया दुरापः कथमीप्सितो भवेत् ? ॥ १३ ॥

सख्यौ—अइ ! अत्तगुणावमाणिणि ! को णाम सरीरणिव्वावइत्तिअं सारदिअं जोसिणिं पडंतेण वारेदि ? ( आत्मगुणावमानिनि ! को नाम शरीरनिर्वापयित्रीं शारदीं ज्योत्स्नां पटान्तेन वारयति ? )

शकु—(सस्मितम्) णिओइआ दाणिं म्हि । (नियोजिता इदानीमस्मि ।)

( उपविष्टा चिन्तयति )

राजा—स्थाने खलु विस्मृत-निमेषेण चक्षुषा प्रियामवलोकयामि । यतः—

उन्नमितैकभ्रूलतमाननमस्याः पदानि रचयन्त्याः ।
कण्टकितेन प्रथयति मय्यनुरागं कपोलेन ॥ १४ ॥

शकु—हला ! चिंतिदं मए गीदवत्थु, ण सण्णिहिदाणि उण लेह-साहणाणि । (हला ! चिन्तितं मया गीतवस्तु । न संनिहितानि पुनर्लेखसाधनानि । )

ପ୍ରିୟ- (ଚିନ୍ତା କରି) ସଖୀ, ତା'ହେଲେ ତାଙ୍କ ନିକଟକୁ ଖଣ୍ଡେ ପ୍ରଣୟପତ୍ର ଲେଖାଯାଉ । ମୁଁ ସେହି ପତ୍ରକୁ ଦେବତାଙ୍କ ପୂଜାପୁଷ୍ପ ନେବା ଛଳରେ ପୁଷ୍ପ ମଧ୍ୟରେ ଲୁଚାଇ ନେଇ ଦେଇ ଆସିବି ।

ଅନ— ଏ ସୁନ୍ଦର ଉପାୟଟି ମୋତେ ଭଲ ବୋଧ ହେଉଛି । ଶକୁନ୍ତଳା କଅଣ କହୁଛି ?

ଶକୁ— ତୁମ ଦୁହିଁଙ୍କର କୌଣସି କଥା ମୁଁ କଅଣ ବିଗ୍ରହ କରେଁ ?

ପ୍ରିୟ— ତା'ହେଲେ ତୋର ମନର ଅବସ୍ଥା ବର୍ଣ୍ଣନ କରି ଲଳିତ ପଦ-ବିନ୍ୟାସ ଚିନ୍ତା କର ।

ଶକୁ— ସଖୀ, ଚିନ୍ତା କରୁଛି । କିନ୍ତୁ ରଜା ଯଦି ଅବଜ୍ଞା କରିବେ ! ଏଥିପାଇଁ ମୋର ହୃଦୟ କଂପିତ ହୋଇ ଉଠୁଛି ।

ରଜା— ( ହର୍ଷର ସହିତ ) ଗୋ ଭୀରୁ, ଯାହା ନିକଟରୁ ତୁ ଅବଜ୍ଞା ଆଶଙ୍କା କରୁଛୁ, ସେହି ବ୍ୟକ୍ତି ତୋ ସହିତ ମିଳନ ନିମନ୍ତେ ଅଧୀର ହୋଇ ରହିଛି । ପ୍ରାର୍ଥୀକୁ ଲକ୍ଷ୍ମୀ ମିଳି ପାରନ୍ତି, ନ ମିଳି ପାରନ୍ତି । ମାତ୍ର ଲକ୍ଷ୍ମୀଙ୍କୁ କଅଣ ପ୍ରାର୍ଥୀ ଦୁର୍ଲଭ ? ୧୩

ସଖୀଦ୍ୱୟ—ସଖୀ, ତୁ ନିଜ ଗୁଣର ଅବଜ୍ଞା କରୁଛୁ । କେହି କଅଣ ଶରୀରକୁ ବସ୍ତ୍ରାବୃତ କରି ଶାନ୍ତିଦାୟିନୀ ଶାରଦୀୟ ଜ୍ୟୋତ୍ସ୍ନାକୁ ବାରଣ କରେ ?

ଶକୁ— ( ମୃଦୁ ହାସ୍ୟ କରି ) ତାହା ହେଲେ ମୁଁ ପତ୍ର ଲେଖୁଛି । ( ବସି ଚିନ୍ତା କରିବାକୁ ଲାଗିଲେ । )

ରଜା— ଏଇ ସୁ-ଅବସରରେ ପ୍ରିୟାକୁ ଅପଲକ ଚକ୍ଷୁରେ ଦେଖିବି । କାରଣ, ଏ ବର୍ତ୍ତମାନ ପଦ-ରଚନାରେ ନିବିଷ୍ଟ ଅଛି, ଏହାର ମୁଖରେ ଗୋଟିଏ ଭ୍ରୂଲତା ଟିକିଏ ଉପରକୁ ଟେକି ହୋଇ ଯାଇଛି ଏବଂ କପୋଳରେ ପୁଲକ ଜାତ ହୋଇ ମୋ ପ୍ରତି ଅନୁରାଗ ବ୍ୟକ୍ତ କରୁଛି । ୧୪

ଶକୁ— ସଖୀ, ମୁଁ ଗୀତର ବିଷୟବସ୍ତୁ ଭାବିନେଲି । କିନ୍ତୁ ଲେଖିବାର ଉପକରଣ ଏଠାରେ କିଛି ନାହିଁ ।

प्रिय— णं इमस्सिं सुओदरसुउमारे णलिणीवत्ते पत्तच्छेदभत्तीए णहेहिं णिक्खित्तवण्णं करेहि। ( ननु एतस्मिन् शुकोदरसुकुमारे नलिनीपत्रे पत्रच्छेदभक्त्या नखैर् निक्षिप्तवर्णं कुरु। )

शकु—( यथोक्तं रूपयित्वा ) हला ! सुणुह दाव संगदत्थं ण वे त्ति। ( हला ! श्रृणुतं तावत्, संगतार्थं न वेति। )

उभे—अवहिदे म्ह। ( अवहिते स्वः। )

शकु—( वाचयति )

तुज्झ ण जाणे हिअअं मम उण मदणो दिवा वि रत्तिं वि।
णिग्घिण ! तवइ बलीअं तुइ वुत्तमणोरहाइँ अंगाइं ॥ १५ ॥
(तव न जाने हृदयं मम पुनः कामो दिवापि रात्रावपि।
निर्घृण ! तपति बलीयस्त्वयि वृत्तमनोरथान्यङ्गानि ॥ )

राजा—( सहसोपसृत्य )

तपति तनुगात्रि ! मदनस्त्वामनिशं मां पुनर्दहत्येव।
ग्लपयति यथा शशाङ्कं न तथा हि कुमुद्वतीं दिवसः ॥१६॥

सख्यौ—( सहर्षम् ) साअदं अविलंबिणो मणोरहस्स। ( स्वागतमविलम्बिनो मनोरथस्य। )

( शकुन्तलाऽभ्युत्थातुमिच्छति )

राजा—अलमलमायासेन

संदष्टकुसुमशयनान्याशु-विवर्णितमृणालवलयानि।
गुरुपरितापानि न ते गात्राण्युपचारमर्हन्ति ॥ १७ ॥

अन—इदो सिलातलेक्कदेसं अलंकरेदु महाराओ। ( इतः शिलातलैकदेशमलंकरोतु महाराजः )

( राजा उपविशति, शकुन्तला सलज्जा किञ्चिदपसरति )

प्रिय—महाराअ ! दुवेणम्पि वो अण्णोण्णाणुराओ पच्चक्खो। सखीसणेहो मं पुणरुत्तवादिणिं करेदि। ( महाराज ! द्वयोरपि युवयो रन्योऽन्यानुरागः प्रत्यक्षः। सखीस्नेहो मां पुनरुक्तवादिनीं करोति। )

राजा—भद्रे ! नैतत् परिहार्यम्। विवक्षितं हि अनुक्तमनुतापं जनयति।

ପ୍ରିୟ— ଶୁକପକ୍ଷୀର ଉଦର ପରି ସୁକୋମଳ ଏଇ ପଦ୍ମପତ୍ରରେ ନଖଦ୍ୱାର ଲେଖ ।

ଶକୁ— ( ସେହିପରି କରି ) ସଖୀ, ଅର୍ଥସଙ୍ଗତି ହୋଇଛି କି ନାହିଁ, ଶୁଣ ।

ସଖୀଦ୍ୱୟ—ହେଉ, ମନଯୋଗ ଦେଇ ଶୁଣୁଛୁଁ ।

ଶକୁ— (ପାଠ କଲେ) ହେ ନିଷ୍ଠୁର ! ନ ଜାଣେ ମୁ ହୃଦୟ ତୁମର

ତୁମପାଇଁ ମନ ମୋର ନିଶି ଦିବସ ଅର୍ଦ୍ଧିର

ଅଙ୍ଗେଅଙ୍ଗେ ତାପ ଦିଏ ନିଦାରୁଣ ମାର । ୧୩

ରଜା— ( ସହସା ନିକଟକୁ ଯାଇ )

ଗୋ କୃଶାଙ୍ଗୀ, କନ୍ଦର୍ପ ତୁମକୁ କେବଳ ତାପ ଦେଉଛି, କିନ୍ତୁ ମୋତେ ସେ ସର୍ବଦା ଦହନ କରୁଛି ! ଦିବସ ଚନ୍ଦ୍ରକୁ ଯେତେ ମ୍ଳାନ କରେ, କୁମୁଦିନୀକୁ ସେତେ ମ୍ଳାନ କରେନାହିଁ । ୧୪

ସଖୀଦ୍ୱୟ—( ଆନନ୍ଦରେ ) ଅବିଳମ୍ବେ ମନୋରଥ ସିଦ୍ଧି ! ସ୍ୱାଗତ ମହାରଜ !

( ଶକୁନ୍ତଳା ଉଠିବାକୁ ଋହିଁଲେ । )

ରଜା— ନା, ନା, ଉଠିବାରେ ପ୍ରୟୋଜନ ନାହିଁ !

ତୁମ ଦେହର ଉତ୍ତାପରେ ଫୁଲଶେଯ ମଉଳିଗଲଣି, ମୃଣାଳ ବଳୟ-ଗୁଡ଼ିକ ପିନ୍ଧାହେବା ସଙ୍ଗେ ସଙ୍ଗେ ଶୁଖିଯାଇଛି । ଏଭଳି ସନ୍ତାପିତ ଦେହରେ ଶିଷ୍ଟାଗ୍ତର ପ୍ରଦର୍ଶନ କରିବାର କୌଣସି ଆବଶ୍ୟକତା ନାହିଁ । ୧୫

ଅନ— ଭଦ୍ର, ଆପଣ ଏଇ ଶିଳାଖଣ୍ଡର ଏକ ଭଗରେ ବସନ୍ତୁ ।

( ରଜା ବସିଲେ । ଶକୁନ୍ତଳା ସଲଜ୍ଜ ଭବରେ ଟିକିଏ ଘୁଞ୍ଚିଗଲେ । )

ପ୍ରିୟ— ମହାରଜ ! ଆପଣଦୁହିଁଙ୍କର ପରସ୍ପର ପ୍ରେମ ପ୍ରକଟ ହୋଇ ସାରିଛି । ତଥାପି ସଖୀ ପ୍ରତି ଅତ୍ୟନ୍ତ ସ୍ନେହ ବଶତଃ ମୁଁ ପୁଣି କିଛି କହିବାକୁ ଯାଉଛି ।

ରଜା— ଭଦ୍ରେ, ନ କହିବା ଅନୁଚିତ । ଯାହା କହିବାକୁ ଇଚ୍ଛା ଥାଏ, ତାହା ନ କହିଲେ ପରେ ପଶ୍ଚାତ୍ତାପ ଭେଗିବାକୁ ପଡ଼େ ।

प्रिय—णणु आवण्णस्स विसअवासिणो जणस्स अत्तिहरेण रण्णा होदव्वम् । ( ननु आपन्नस्य विषयवासिनो जनस्य आर्त्तिहरेण राज्ञा भवितव्यम् ) ।

राजा—नन्वेष नो धर्मः ।

प्रिय—तेण हि इअं णो पिअसही तुमं उद्दिसिअ इमं अवत्थंतरं भअवता मअणेण आरोविदा । ता अरुहसि अब्भुववत्तीए जीविदं से अवलंबिदुं । ( तेन हि इयमावयोः प्रियसखी, त्वामुद्दिश्य इदमवस्थान्तरं भगवता मदनेनारोपिता । तन् अर्हसि अभ्युपपत्त्या जीवितमस्या अवलम्बितुम् । )

राजा—भद्रे ! साधारणोऽयं प्रणयः । सर्वथा अनुगृहीतोऽस्मि ।

शकु—( प्रियंवदामवलोक्य ) हला ! किं अंतेउर-विरहपज्जुस्सुअस्स राएसिणो उवरोहेण ? ( हला ! किमन्तःपुरविरहपर्युत्सुकस्य राजर्षेरुपरोधेन ? )

राजा—इदमनन्यपरायणमन्यथा हृदयसंनिहिते ! हृदयं मम ।
यदि समर्थयसे मदिरेक्षणे ! मदनबाणहतोऽस्मि हतः पुनः ॥ १८ ॥

अन—महाराअ ! बहुवल्लहा राआणो सुणीअंति । ता जहा इअं णो पिअसही बंधुअणसोअणिज्जा ण भोदि तह णिव्वत्तेहि । ( वयस्य ! बहुवल्लभा राजानः श्रूयन्ते । यथा इयं नो प्रियसखी बन्धुजनशोचनीया न भवति तथा निर्वर्तय । )

राजा—भद्रे ! किं बहुना—

परिग्रहबहुत्वेऽपि द्वे प्रतिष्ठे कुलस्य मे ।
समुद्ररसना चोर्वी सखी च युवयोरियम् ॥ १९ ॥

उभे—णिव्वुदेम्ह । ( निर्वृते स्वः । )

प्रिय—( सदृष्टिक्षेपम् ) अणसूए ! जह एसो इदो दिण्णदिट्ठी उस्सुओ मिअपोदओ मादरं अण्णेसदि । एहि, संजोएम णं ( अनसूये ! यथैष इतो दत्तदृष्टिरुत्सुको मातरमन्विष्यति । एहि, संयोजयाव एनम् । ) ( उभे प्रस्थिते )

शकु—हला ! असरण म्हि । अण्णदरा वो आअच्छदु ।
( हला ! अशरणास्मि । अन्यतरा युवयोरागच्छतु । )

ପ୍ରିୟ— ରାଜ୍ୟରେ କେହି ବିପଦରେ ପଡ଼ିଲେ ରାଜା ତାର ଦୁଃଖ ଦୂର କରନ୍ତି, ଏହା ରାଜାଙ୍କର ଧର୍ମ ।

ରାଜା— ହଁ, ଏହା ଆମର ଧର୍ମ ।

ପ୍ରିୟ— ଆମର ପ୍ରିୟ ସଖୀ ଆପଣଙ୍କୁ ଅଭିଳାଷ କରି ଭଗବାନ୍ କନ୍ଦର୍ପଙ୍କ ଦ୍ୱାରା ଏଭଳି ଅବସ୍ଥାରେ ପହଞ୍ଚିଲାଣି, ଦୟା କରି ତା'ର ଜୀବନ ରକ୍ଷା କରନ୍ତୁ ।

ରାଜା— ଭଦ୍ରେ, ଏ ଅନୁରୋଧ ଆମ ଦୁହିଁଙ୍କ ପାଇଁ ମଙ୍ଗଳକର ।ମୁଁ ଅତ୍ୟନ୍ତ ଅନୁଗୃହୀତ ହେଲି ।

ଶକୁ— ( ପ୍ରିୟମ୍ବଦାକୁ ଚାହିଁ ) ସଖୀ ! ରାଜା ଅନ୍ତଃପର ରମଣୀମାନଙ୍କ ବିଚ୍ଛେଦରେ ଅଧୀର । ତାଙ୍କୁ ଏ ପ୍ରକାର ଅନୁରୋଧ କରି ଲାଭ କଅଣ ?

ରାଜା— ଗୋ ଖଞ୍ଜନାକ୍ଷୀ ! ମୋର ହୃଦୟ ବିହାରିଣୀ ! କେବଳ ତୁମରି ପ୍ରତି ମୋର ହୃଦୟ ଅନୁରକ୍ତ । ମାତ୍ର ତୁମେ ଯଦି ଅନ୍ୟଥା ଭାବ, ତା ହେଲେ ମୁଁ ଏକେ ତ କନ୍ଦର୍ପ ଶରରେ ଆହତ, ଏବେ ନିହତ ହୋଇଯିବି । ୧୮

ଅନ— ବନ୍ଧୁ ! ଶୁଣାଯାଏ, ରାଜାମାନଙ୍କର ବହୁତ ରାଣୀ ଥାଆନ୍ତି । ତେଣୁ ଆମ ପ୍ରିୟସଖୀ ନିମନ୍ତେ ତାର ଆତ୍ମୀୟ ସ୍ୱଜନମାନେ ଯେପରି ଶୋଚନା ନ କରିବେ, ଆପଣ ସେହିପରି କରିବେ ;

ରାଜା— ଭଦ୍ରେ, ବେଶି କହିବା ନିଷ୍ପ୍ରୟୋଜନ । ମୋର ଅନେକ ପତ୍ନୀ ଥିଲେ ମଧ୍ୟ କେବଳ ଦୁଇଜଣ ମୋ ବଂଶକୁ ପ୍ରତିଷ୍ଠା ପ୍ରଦାନ କରିବେ । ସେ ଦୁହେଁ ହେଉଛନ୍ତି ସମୁଦ୍ରବେଷ୍ଟିତା ପୃଥିବୀ ଏବଂ ତୁମର ଏଇ ସଖୀ । ୧୯

ସଖୀଦ୍ୱୟ—ତା'ହାହେଲେ ଆମେ ସୁଖୀ ।

ପ୍ରିୟ— ( ବାହାରକୁ ଚାହିଁ ) ଅନସୂୟା, ଏଇ ହରିଣ ଶିଶୁଟି ଉତ୍ସୁକ ଦୃଷ୍ଟିରେ ଆମ ଆଡକୁ ଚାହିଁ ରହିଛି, ବୋଧହୁଏ ସେ ତା ମାଆକୁ ଖୋଜୁଛି । ଚାଲ, ତାକୁ ତା ମା' ପାଖରେ ପହଞ୍ଚାଇ ଦେବା ।

( ଦୁଇ ଜଣ ଯିବାକୁ ଉଦ୍ୟତ )

ଶକୁ— ସଖୀ, ତୁମେମାନେ ମୋତେ ଅସହାୟ କରି ଚାଲି ଯାଉଛ ? କେହି ଜଣେ ଆସ ।

उभे—पुहवीए जो सरणं सो तुह समीवे वट्टइ ।
( पृथिव्या यः शरणं स तव समीपे वर्तते । ) ( निष्क्रान्ते )

शकु—कहं गदाओ एव्व ? ( कथं गते एव । )

राजा—अलमावेगेन । नन्वयमाराधयिता जनस्तव समीपे वर्तते ।

किं शीकरैः क्लमविनोदिभिरार्द्रवातं
संचारयामि नलिनीदलतालवृन्तम् ?
अङ्के निधाय करभोरु ! यथासुखं ते
संवाहयामि चरणावुत पद्मताम्रौ ॥ २० ॥

शकु—ण माणणीएसु अत्ताणं अवराहइस्सं । (न माननीयेष्वात्मानमपराधयिष्ये । ) ( उत्थाय गन्तुमिच्छति )

राजा—सुन्दरि ! अनिर्वाणो दिवसः । । इयं च ते शरीरावस्था,

उत्सृज्य कुसुमशयनं नलिनीदलकल्पितस्तनावरणा ।
कथमातपे गमिष्यसि परिबाधा-पेलवैरङ्गैः ? ॥ २१ ॥

( बलादेनां निवर्तयति )

शकु—पोरव ! रक्ख विणअं । मअणसंतत्तावि ण हु अत्तणो पहवामि ।
(पौरव ! रक्ष विनयम् । मदनसंतप्तापि न खल्वात्मनः प्रभवामि ! )

राजा—भीरु ! अलं गुरुजनभयेन । दृष्ट्वा ते विदितधर्मा तत्रभवान्न तत्र दोषं ग्रहीष्यति कुलपतिः । अपि च—

गान्धर्वेण विवाहेन बह्व्यो राजर्षिकन्यकाः ।
श्रूयन्ते परिणीतास्ताः पितृभिश्चाभिनन्दिताः ॥ २२ ॥

शकु—मुंच दाव मं । भूओ वि सहीजणं अणुमाणइस्सं । ( मुञ्च तावन्माम् । भूयोऽपि सखीजनमनुमानयिष्ये । )

राजा—भवतु, मोक्ष्यामि ।

शकु—कदा ?

राजा—

अपरिक्षतकोमलस्य यावत् कुसुमस्येव नवस्य षट्पदेन ।
अधरस्य पिपासता मया ते सदय सुन्दरि ! गृह्यते रसोऽस्य ॥ २३ ॥

ସଖୀଦ୍ୱୟ—ଯେ ସମଗ୍ର ପୃଥିବୀର ସହାୟ, ସେ ତ ତୋ ପାଖରେ ଅଛନ୍ତି ।
( ଚାଲିଗଲେ )

ଶକୁ— କ'ଣ ଚାଲିଗଲ ?

ରଜା— ଚିନ୍ତା କର ନାହିଁ । ଏଇ ପରିଚାରକ ତୁମ ପାଖରେ ରହିଛି ।
ଗୋ ଗୁରୁଜଘନା, ତୁମର କ୍ଳାନ୍ତି ଦୂର କରିବାପାଇଁ କ'ଣ ଜଳବିନ୍ଦୁ-ଆର୍ଦ୍ର ପଦ୍ମପତ୍ରର ପଙ୍ଖାରେ ବାୟୁ ସଂଚାଳନ କରିବି, ନା ପଦ୍ମ ପରି ଆରକ୍ତ ତୁମର ପଦଯୁଗଳକୁ କୋଳରେ ରଖି ତୁମକୁ ସୁଖ ଲାଗିଲା ଭଳି ମର୍ଦ୍ଦନ କରିବି ? ୨୦

ଶକୁ— ନା, ନା, ମାନନୀୟ ବ୍ୟକ୍ତିଙ୍କଠାରେ ମୁଁ ନିଜକୁ ଏପରି ଅପରାଧିନୀ କରିବି ନାହିଁ ।
( ଉଠି ଚାଲିଯିବାକୁ ଚାହିଁଲେ )

ରଜା— ସୁନ୍ଦରୀ ! ବର୍ତ୍ତମାନ ଦିନ ଶେଷ ହୋଇନାହିଁ । ତୁମର ପୁଣି ଏଭଳି ଅବସ୍ଥା !
ପୁଷ୍ପଶଯ୍ୟାକୁ ଏବଂ ପଦ୍ମପତ୍ରର ସ୍ତନାବରଣକୁ ଛାଡ଼ି ଏଭଳି ତାପକ୍ଲିଷ୍ଟ ଦେହରେ କିପରି ତୁମେ ଖରାରେ ଯିବ ? ୨୧
( ବଳପୂର୍ବକ ଅଟକାଇଲେ )

ଶକୁ— ପୌରବ, ଶିଷ୍ଟତା ରକ୍ଷା କର । ମୁଁ ପ୍ରେମାକୁଳା ହେଲେ ମଧ୍ୟ ପରାଧୀନା ।

ରଜା— ଭୀରୁ ! ଗୁରୁଜନମାନଙ୍କୁ ବୃଥା ଡରୁଛ । ପୂଜନୀୟ କୁଳପତି ଧର୍ମ ବିଷୟରେ ଅଭିଜ୍ଞ ଅଟନ୍ତି । ସେ ଏହାକୁ ଦୋଷାବହ ମନେ କରିବେ-ନାହିଁ । ଆଉ ମଧ୍ୟ,
ଅନେକ ରାଜକନ୍ୟା ଗାନ୍ଧର୍ବ ବିଧିରେ ବିବାହ କରିଥିବାର ଏବଂ ସେମାନଙ୍କର ପିତାମାତାମାନେ ତାହା ଅନୁମୋଦନ କରି ଥିବାର ଦୃଷ୍ଟାନ୍ତ ରହିଛି । ୨୨

ଶକୁ— ମୋତେ ଛାଡ଼ିଦିଅ, ମୁଁ ପୁଣି ସଖୀମାନଙ୍କୁ ପଚାରିବି ।

ରଜା— ହେଉ, ଛାଡ଼ିଦେବି ।

ଶକୁ— କେତେବେଳେ ?

ରଜା— ଗୋ ସୁନ୍ଦରୀ, ଭ୍ରମର ଯେପରି ଅକ୍ଷତ, କୋମଳ, ନୂତନ ପୁଷ୍ପର ମଧୁ ପାନ କରେ, ସେହିପରି ତୁମର ଅକ୍ଷତ, ସୁକୁମାର ଅଧରରୁ ମୁଁ ପପାସୁ ଭାବରେ ଯେତେବେଳେ ଧୀରେ ଧୀରେ ରସ ପାନ କରିନେବି । ୨୩

( मुखमस्याः समुन्नमयितुमिच्छति, शकुन्तला नाट्येन परिहरति )

( नेपथ्ये )

चक्कवाकवहुए ! आमतेहि सहअरं । उवट्ठिआ रअणी ।
( चक्रवाकवधूः ! आमन्त्रयस्व सहचरम् । उपस्थिता रजनी । )

शकु—( ससंभ्रमम् ) पोरव ! असंसअं मम सरीरवुत्तंतोवलंभस्स अज्जा गोदमी इदो एव्व आअच्छदि । जाव विडवंतरिदो होहि । ( पौरव ! असंशयं मम शरीरवृत्तान्तोपलम्भाय आर्या गौतमी इत एवागच्छति । यावद् विटपान्तरितो भव । )

राजा—तथा । ( आत्मानमावृत्य तिष्ठति )

( ततः प्रविशति पात्रहस्ता गौतमी सख्यौ च )

सख्यौ—इदो इदो अज्जा गोदमी । ( इत इत आर्या गौतमी । )

गौत—( शकुन्तलामुपेत्य ) जादे ! अवि लहुसंदावाइं दे अंगाइं ?
( जाते ! अपि लघुसंतापानि ते अङ्गानि ? )

शकु—अत्थि मे विसेसो । ( अस्ति मे विशेषः । )

गौत—इमिणा दब्भोदएण णिराबाधं एव्व दे सरीरं भविस्सदि । ( शिरसि शकुन्तलामभ्युक्ष्य ) वच्छे ! परिणदो दिअहो । एहि, उडजं एव्व गच्छम्ह । (प्रस्थिताः) । ( अनेन दर्भोदकेन निराबाधमेव ते शरीरं भविष्यति । ( शकुन्तलामभ्युक्ष्य ) वत्से ! परिणतो दिवसः । एहि, उटजमेव गच्छामः ) ( प्रस्थिताः )

शकु—(आत्मगतम्) हिअअ ! पढमं एव्व सुहोवगदे मणोरहे कादरभावं ण मुंचसि । साणुसअ-विहडिअस्स कहं दे संपदं संदावो ? ( पदान्तरे स्थित्वा, प्रकाशम् ) लदावलअ संदावहारअ ! आमंतेमि तुमं भूओ वि परिभोअस्स । ( हृदय ! प्रथममेव सुखोपनते मनोरथे कातरभावं न मुञ्चसि । सानुशयविघटितस्य कथं सांप्रतं संतापः ? ( पदान्तरे स्थित्वा प्रकाशम् ) लतावलय संतापहारक ! आमन्त्रये त्वां भूयोऽपि परिभोगाय । )

( दुःखेन निष्क्रान्ता शकुन्तला सहेतराभिः )

( ରଜା ଶକୁନ୍ତଳାଙ୍କ ମୁହଁ ଉପରକୁ ଉଠାଇବାକୁ ଚାହୁଁଥାଆନ୍ତି, ଶକୁନ୍ତଳା ମୁହଁ ବୁଲାଇ ନେଉଥାଆନ୍ତି । )

( ନେପଥ୍ୟେ )

ଗୋ ଚକ୍ରବାକବଧୂ ! ସହଚର ପାଖରୁ ବିଦାୟ ନିଅ । ରାତ୍ରି ଉପସ୍ଥିତା ।

ଶକୁ— ( ସମ୍ଭ୍ରମର ସହିତ ) ପୌରବ' ଆର୍ଯ୍ୟା ଗୌତମୀ ମୋର ଦେହ କିପରି ଅଛି, ଦେଖିବା ପାଇଁ ବୋଧହୁଏ ଏଠାକୁ ଆସୁଛନ୍ତି । ତୁମେ ଶାଖା ଅନ୍ତରାଳରେ ଲୁଚିଯାଅ ।

ରଜା— ଆଚ୍ଛା ; ( ଲୁଚିଗଲେ )

( ଏହାପରେ ସଖୀଦ୍ୱୟ ଏବଂ ହାତରେ ପାତ୍ର ଧରିଥିବା ଗୌତମୀ ପ୍ରବେଶ କଲେ । )

ସଖୀଦ୍ୱୟ--ଏଣେ, ଏଣେ ଆସନ୍ତୁ ଆର୍ଯ୍ୟା ଗୌତମୀ !

ଗୌତମୀ--( ଶକୁନ୍ତଳା ନିକଟକୁ ଯାଇ) ଝିଅ, ତୋ ଦେହର ତାପ କିଛି କମିଲାଣି ?

ଶକୁ— ବର୍ତ୍ତମାନ ବିଶେଷ ତାପ ଅଛି ।

ଗୌତ— ଏଇ କୁଶୋଦକଦ୍ୱାରା ତୋ ଦେହ ସମ୍ପୂର୍ଣ୍ଣ ଭଲ ହୋଇଯିବ । (ଶକୁନ୍ତଳାଙ୍କ ମସ୍ତକରେ ଜଳ ସିଞ୍ଚିଲେ) ଝିଅ, ଦିନ ଶେଷ ହେଲାଣି । ଆ, କୁଟୀରକୁ ଯିବା ।

( ସମସ୍ତେ ଯିବାକୁ ଲାଗିଲେ )

ଶକ-- (ସ୍ୱଗତ) ହୃଦୟ, ଯେତେବେଳେ ତୋର ବାଞ୍ଛିତ ସ୍ୱତଃ ଉପସ୍ଥିତ ହୋଇଥିଲେ, ସେତେବେଳେ ତୁ ଲଜ୍ଜା ତ୍ୟାଗ କରିପାରିଲୁ ନାହିଁ, ବର୍ତ୍ତମାନ ତାଙ୍କ ବିଚ୍ଛେଦରେ କାହିଁକି ଏତେ ସନ୍ତାପିତ ହେଉଛୁ ? ( କେତେକ ପାଦ ଯାଇ ଠିଆ ହୋଇ ପ୍ରକାଶ୍ୟରେ ) ହେ ସନ୍ତାପହାରୀ ଲତାକୁଞ୍ଜ, ଆଉ ଥରେ ଉପଭୋଗ ନିମନ୍ତେ ତୁମକୁ ନିମନ୍ତ୍ରଣ ଦେଇ-ଯାଉଛି ।

( ଉଦାସଭାବରେ ଅନ୍ୟମାନଙ୍କ ସହିତ ଚାଲିଗଲେ )

राजा—( पूर्वस्थानमुपेत्य, सनिःश्वासम् ) अहो, विघ्नवत्यः प्रार्थितार्थसिद्धयः ।

मया हि—

मुहुरङ्गुलिसंवृताधरोष्ठं
प्रतिषेधाक्षरविक्लवाभिरामम् ।
मुखमंसविवर्ति पक्ष्मलाक्ष्याः
कथमप्युन्नमितं न चुम्बितं तु ॥ २४ ॥

क्व नु खलु संप्रति गच्छामि ? अथवा,—इहैव प्रियापरिभुक्तमुक्ते लतामण्डपे मुहूर्तं स्थास्यामि । ( सर्वतोऽवलोक्य )

तस्याः पुष्पमयी शरीरलुलिता शय्या शिलायामियं
क्लान्तो मन्मथलेख एष नलिनीपत्रे नखैरर्पितः ।
हस्ताद् भ्रष्टमिदं बिसाभरणमित्यासज्यमानेक्षणो
निर्गन्तुं सहसा न वेतसगृहाच्छक्नोमि शून्यादपि ॥ २५ ॥

( नेपथ्ये )

भो भो राजन् !

सायंतने सवनकर्मणि संप्रवृत्ते
वेदीं हुताशनवतीं परितः प्रकीर्णाः ।
छायाश्चरन्ति बहुधा भयमादधानाः
संध्यापयोदकपिशाः पिशिताशनानाम् ॥ २६ ॥

राजा—( आकर्ण्य, सावष्टम्भम् ) भो भोस्तपस्विनः ! मा भैष्ट, अयमहमागतोऽस्मि । ( निष्क्रान्तः )

॥॥ इति तृतीयोऽङ्कः ॥॥



ରଜା— ( ପୂର୍ବସ୍ଥାନକୁ ଆସି ଦୀର୍ଘଶ୍ୱାସ ପକାଇ ) ଓଃ ! ମନୋରଥ ପୂର୍ଣ୍ଣ ହେବା ପଥରେ କେତେ ବିଘ୍ନ !

ସେହି ରମ୍ୟନୟନା ଯେତେବେଳେ ଅଙ୍ଗୁଳିରେ ଅଧର ଆବୃତ କରି 'ନା' 'ନା' କହୁଥିଲା ଏବଂ ବାରମ୍ବାର ମୁଖକୁ ସ୍କନ୍ଧ ଆଡ଼କୁ ବୁଲାଇ ନେଉଥିଲା, ସେତେବେଳେ ତା'ର ସେହି ସୁନ୍ଦର ମୁଖଟିକୁ ମୁଁ କୌଣସି ପ୍ରକାରେ ଉତ୍ତୋଳନ କଲି, ମାତ୍ର ଚୁମ୍ବନ କରି ପାରିଲି-ନାହିଁ । ୨୪

ବର୍ତ୍ତମାନ କୁଆଡ଼େ ଯିବି ! ଅବା ପ୍ରିୟା ଏଇ ଲତାକୁଞ୍ଜରେ ବିହାର କରି ଯାଇଛି, ଏଠାରେ ମୁହୂର୍ତ୍ତେ ସମୟ କଟାଇବି । ( ଚାରି-ଆଡକୁ ଚାହିଁ )

ଏଇ ଶିଳା ଉପରେ ପୁଷ୍ପଶଯ୍ୟା ତା'ର ଶରୀରର ତାପରେ ଶୁଷ୍କ ହୋଇ ପଡିଛି । ଏଇ ସେଇ ପ୍ରଣୟପତ୍ର, ଯାହାକୁ ସେ ପଦ୍ମପତ୍ର-ଉପରେ ନଖରେ ଲେଖିଥିଲା । ଏଇ ତାର ହସ୍ତଚ୍ୟୁତ ମୃଣାଳ ବଳୟ । ମୋର ଦୃଷ୍ଟି ଏହି ବସ୍ତୁଗୁଡ଼ିକ ଉପରେ ଲାଖିରହୁଛି । ତେଣୁ ଏ ବେତସକୁଞ୍ଜ ଶୂନ୍ୟ ପଡ଼ିଥିଲେ ମଧ୍ୟ ମୁଁ ଏଠାରୁ ଶୀଘ୍ର ଚାଲିଯିବାକୁ ଅକ୍ଷମ । ୨୫

( ନେପଥ୍ୟେ )

ମହାରାଜ ! ମହାରାଜ !

ବର୍ତ୍ତମାନ ସନ୍ଧ୍ୟାକାଳୀନ ଯଜ୍ଞକର୍ମ ଆରମ୍ଭ ହୁଅନ୍ତେ ଯଜ୍ଞାଗ୍ନି ଜଳୁଥିବା ବେଦୀର ଚାରି ପାଖରେ ରାକ୍ଷସମାନଙ୍କର ଭୟଙ୍କର, ଦୀର୍ଘ ତଥା ସନ୍ଧ୍ୟାକାଳୀନ ମେଘଭଳି ପିଙ୍ଗଳବର୍ଣ୍ଣ ଛାୟାସବୁ ବିଚରଣ କଲଣି । ୨୬

ରଜା— ( କାନ ଡେରି ଶୌର୍ଯ୍ୟର ସହିତ ) ହେ ହେ ତପସ୍ୱୀଗଣ ! ଭୟ କରନାହିଁ । ଏଇ ମୁଁ ଆସୁଛି । ( ଚାଲିଗଲେ )

।। ତୃତୀୟ ଅଙ୍କ ସମାପ୍ତ ।।

—o—

# युग्मविष्कम्भकः

( १ )

( प्रविशतः कुसुमावचयं नाटयन्त्यौ सख्यौ )

अन—प्रिअंवदे ! जइ वि गंधव्वेण विहिणा णिव्वुत्तकल्लाणा सउंदला अणुरूवभत्तुगामिणी संवुत्तेति निव्वुदं मे हिअअं, तह वि एत्तिअं चिंतणिज्जं । ( प्रियंवदे ! यद्यपि गान्धर्वेण विधिना निर्वृत्तकल्याणा शकुन्तला अनुरूपभर्तृगामिनी संवृत्तेति निर्वृतं मे हृदयम्, तथाप्येतावच्चिन्तनीयम् । )

प्रिय—कहं विअ ? ( कथमिव ? )

अन—अज्ज सो राएसी इट्ठिं परिसमाविअ इसीहिं विसज्जिओ अत्तणो णअरं पविसिअ अंतेउरसमागदो इदोगदं वुत्तंत्तं सुमरदि वा ण वेत्ति ? ( अद्य स राजर्षिरिष्टिं परिसमाप्य ऋषिभिर्विसर्जित आत्मनो नगरं प्रविश्य अन्तःपुरसमागतः इतोगतं वृतान्तं स्मरति वा न वेति ? )

प्रिय—वीसद्धा होहि । ण तादिसा आकिदिविसेसा गुणविरोहिणो होंति । तादो दाणिं इमं वुत्तंतं सुणिअ, ण आणे किं पडिवज्जिस्सदि त्ति । ( विस्रब्धा भव । न तादृशा आकृतिविशेषा गुणविरोधिनो भवन्ति । तात इदानीमिमं वृत्तान्तं श्रुत्वा न जाने किं प्रतिपत्स्यत इति । )

अन—जह अहं पेक्खामि, तस्स अणुमदं भवे ।
( यथाहं पश्यामि, तस्यानुमतं भवेत् । )

प्रिय—कहं विअ ? ( कथमिव )

अन—गुणवदे कण्णआ पडिवादणिज्जे त्ति अअं दाव पढमो संकप्पो । तं जइ देव्वं एव्व संपादेदि णं अप्पआसेण किदत्थो गुरुअणो । (गुणवते कन्यका प्रतिपादनीयेत्ययं तावत् प्रथमः संकल्पः । तं यदि दैवमेव संपादयति ननु अप्रयासेन कृतार्थो गुरुजनः । )

प्रिय—( पुष्पभाजनं विलोक्य ) सहि ! अवइदाइं बलिकम्मपज्जत्ताइं कुसुमाइं । ( पुष्पभाजनं विलोक्य ) सखि ! अवचितानि बलिकर्मपर्याप्तानि कुसुमानि । )

# ଯୁଗ୍ମ ବସ୍ଥାନ୍ତ୍ମକ

( ୧ )

( ଫୁଲତୋଳା ଅଭିନୟରେ ସଖୀଦୁହିଁଙ୍କର ପ୍ରବେଶ )

ଅନ— ପ୍ରିୟମ୍ବଦା, ଶକୁନ୍ତଳା ଗାନ୍ଧର୍ବ ବିଧିରେ ବିବାହ କରି ନିଜର ଅନୁରୂପ ପତି ପାଇଛି ଏବଂ ଏହାଦ୍ୱାରା ତାର ମଙ୍ଗଳ ସାଧିତ ହୋଇଛି । ଏଥିରେ ମୁଁ ଅତ୍ୟନ୍ତ ସୁଖୀ ; ତଥାପି ଏହା ଚିନ୍ତାର ବିଷୟ ।

ପ୍ରିୟ— କାହିଁକି ?

ଅନ— ଆଜି ଯଜ୍ଞସମାପ୍ତି ପରେ ସେହି ରାଜର୍ଷି ମୁନିମାନଙ୍କଠାରୁ ବିଦାୟ ନେଇ ନିଜ ନଗରକୁ ଗଲେ । ସେଠାରେ ଅନ୍ତଃପୁରରେ ପ୍ରବେଶ କରି ସେ ଏଠାକାର କଥା ମନେ ରଖିବେ କି ନାହିଁ !

ପ୍ରିୟ— ନିଶ୍ଚିନ୍ତରେ ରହ । ତାଙ୍କ ଭଳି ଆକୃତିର ବ୍ୟକ୍ତି ବିପରୀତ ଗୁଣର ହୋଇ ନ ପାରନ୍ତି । କିନ୍ତୁ ପିତା ଏ ବୃତ୍ତାନ୍ତ ଶୁଣି କି ଧାରଣା କରିବେ କେଜାଣି !

ଅନ— ମୋତେ ଦେଖାଯାଉଛି, ସେ ଏହାକୁ ନିଶ୍ଚୟ ଅନୁମୋଦନ କରିବେ ।

ପ୍ରିୟ— କିପରି ?

ଅନ— ଗୁଣବାନ୍ ପାତ୍ର ହସ୍ତରେ କନ୍ୟା ସଂପ୍ରଦାନ କରିବା ହେଉଛି ପିତା-ମାତାଙ୍କର ପ୍ରଥମ ଇଛା । ଯଦି ଦୈବ ଏହା ସଂପାଦନ କରେ, ତେବେ ପିତାମାତା ତ ବିନା ପ୍ରୟାସରେ କୃତାର୍ଥ !

ପ୍ରିୟ — ( ପୁଷ୍ପପାତ୍ରକୁ ଚାହିଁ ) ସଖୀ, ପୂଜା ନିମନ୍ତେ ଯଥେଷ୍ଟ ଫୁଲ ହୋଇ-ଗଲଣି ।

अन—णं सहीए सउंदलाए सोहग्गदेवआ अच्चणीआ।
(ननु सख्याः शकुन्तलायाः सौभाग्यदेवताऽर्चनीया।)
प्रिय—जुज्जदि। (युज्यते।) (तदेव कर्मारभेते)

(नेपथ्ये)

अयमहं भो!
अन—(कर्णं दत्त्वा) सहि! अदिधीणं विअ णिवेदिदं।
(सखि! अतिथीनामिव निवेदितम्।)
प्रिय—णं उडजसंणिहिदा सउंदला। (ननु उटजसंनिहिता शकुन्तला।) (आत्मगतम्) अज्ज उण हिअएण असंणिहिदा। (अद्य पुनर्हृदयेनासंनिहिता।)
अन—होदु, अलं एत्तिएहिं कुसुमेहिं। (भवतु, अलमेतावद्भिः कुसुमैः।) (प्रस्थिते)
(नेपथ्ये) आः अतिथिपरिभाविनि!

विचिन्तयन्ती यमनन्यमानसा
तपोधनं वेत्सि न मामुपस्थितम्।
स्मरिष्यति त्वां न स बोधितोऽपि सन्
कथां प्रमत्तः प्रथमं कृतामिव ॥ १ ॥

प्रिय—हद्धी। अप्पिअं जेव्व संवुत्तं। कस्सिं पि पुज्जारिहे अवरद्धा सुण्णहिअआ सउन्दला।
(हा धिक्, अप्रियमेव संवृत्तम्। कस्मिंश्चित् पूजार्हे अपराद्धा शून्यहृदया शकुन्तला।)
अन—(पुरोऽवलोक्य) णहु जस्सिं कस्सिं क्खु। एसो दुव्वासो सुलहकोवो महेसी। तह सविअ वेअबलुप्फुल्लाए दुव्वाराए गईए पडिणिवुत्तो। (न हि यस्मिन् कस्मिन् खलु। एष दुर्वासाः सुलभकोपो महर्षिः। तथा शप्त्वा वेगबलोत्फुल्लया दुर्वारया गत्या प्रतिनिवृत्तः।)
प्रिय—को अण्णो हुदवहादो दहिदुं पहवदि?
(कोऽन्यो हुतवहाद् दग्धुं प्रभवति!)
अन—गच्छ, पायेसु पणमिअ णिवत्तेहि णं, जाव अहं अग्घोदअं उवकप्पेमि। (गच्छ, पादयोः प्रणम्य निवर्त्तय एनम्, यावदहम् अर्घोदकमुपकल्पयामि।)

ଅନ— ଆଜି ଶକୁନ୍ତଳାର ସୌଭାଗ୍ୟଦେବୀଙ୍କର ପୂଜା କରଯିବ ପର !

ପ୍ରିୟ— ଠିକ୍ ତ ! ( ଫୁଲ ତୋଳିବାରେ ଲାଗିଲେ )

( ନେପଥ୍ୟେ )

ଆହେ ! ମୁଁ ଆସିଛି ।

ଅନ— ( କାନ ଡେରି ) **ସଖୀ,** କୋଣସି ଅତିଥିଙ୍କ ପାଟି ଭଳି ଶୁଭୁଛି ।

ପ୍ରିୟ— ଶକୁନ୍ତଳା ତ କୁଟୀରରେ ଅଛି । (ସ୍ୱାଗତ) କିନ୍ତୁ ତାର ହୃଦୟ ଯେ ସେଠାରେ ନାହିଁ !

ଅନ— ହେଉ, ଆଉ ଅଧିକ ଫୁଲ ଦରକାର ନାହିଁ । (ଦୁହେଁ ପ୍ରସ୍ଥାନ କଲେ)

( ନେପଥ୍ୟେ )

ଆଃ ଦୁଷ୍ଟା ! ଅତିଥିଙ୍କୁ ଅବମାନନା କଲୁ ? ମୁ ତପସ୍ୱୀ ଆସି ଉପସ୍ଥିତ, ତୁ ବସି କ'ଣ ଭାବିବାରେ ଲାଗିଛୁ ! ତୁ ନିବିଷ୍ଟ ମନରେ ଯାହା କଥା ଭାବୁଛୁ, ତାକୁ ତୋ କଥା ସ୍ମରଣ କରାଇ ଦେଲେ ମଧ୍ୟ ସେ ତୋତେ ସ୍ମରଣ କରିପାରିବ ନାହିଁ, ଯେପରି ପାଗଳ ବ୍ୟକ୍ତି ନିଜର ଉଚ୍ଚାରିତ କଥାକୁ ଆଉ ସ୍ମରଣ କରିପାରେ ନାହିଁ । ୧

ପ୍ରିୟ— ହାୟ ! ହାୟ ! ଅନିଷ୍ଟ ଘଟିଲା ! ଶକୁନ୍ତଳା ଅନ୍ୟମନସ୍କା ରହି ବୋଧହୁଏ କୌଣସି ପୂଜ୍ୟ ବ୍ୟକ୍ତିଙ୍କ ପ୍ରତି ଅପରାଧ କରିଛି !

ଅନ— ( ଆଗକୁ ଦୃଷ୍ଟି ଦେଇ ) ପୁଣି ଏପରି ସେପରି ବ୍ୟକ୍ତିଙ୍କ ପ୍ରତି ନୁହେଁ ! ହେଇ, କ୍ଷଣକୋପୀ ଦୁର୍ବାସା ମହର୍ଷି ଅଭିଶାପ ଦେଇ ଅତି ବେଗରେ ଦୁର୍ବାର ଗତିରେ ଫେରି ଯାଉଛନ୍ତି !

ପ୍ରିୟ— ଅଗ୍ନି ଭିନ୍ନ ଆଉ କାହାର ଦହନ ଶକ୍ତି ଅଛି ?

ଅନ— ପ୍ରିୟମ୍ୱଦା, ଯାଅ, ତାଙ୍କୁ ପାଦତଳେ ପଡ଼ି ଫେରାଇ ଆଣ । ମୁଁ ଅର୍ଘ୍ୟଜଳ ଯୋଗାଡ଼ କରୁଛି ।

प्रिय—तह। (तथा।) (निष्क्रान्ता)

अन—(पदान्तरे स्खलितं निरूप्य) अव्वो! आवेगक्खलिदाए गईए पब्भट्टं मे अग्गहत्थादो पुप्फभाअणं। (अहो! आवेग-स्खलितया गत्या प्रभ्रष्टं ममाग्रहस्तात् पुष्पभाजनम्।)

(पुष्पोच्चयं रूपयति)

प्रिय—(प्रविश्य) सहि! पकिदिवक्को सो कस्स अणुणअं पडि-गेण्हदि? किं वि उण साणुक्कोसो किदो। (सखि! प्रकृतिवक्रः स कस्यानुनयं प्रतिगृह्णाति? किमपि पुनः सानुक्रोशः कृतः।)

अन—(सस्मितम्) तस्सिं वहु एदं वि! कहेहि। (तस्मिन् वह्वेतदपि, कथय।)

प्रिय—जदा णिवत्तिदुं ण इच्छदि तदा विण्णविदो मए—भअवं! पढम त्ति पेक्खिअ अविण्णादतवप्पहावस्स दुहिदुजणस्स एक्को अवराहो मरिसिदव्वोत्ति। (यदा निवर्तितुं नेच्छति तदा विज्ञापितो मया—भगवन्! प्रथम इति प्रेक्ष्य अविज्ञाततपः-प्रभावस्य दुहितृजनस्य भगवता एकोऽपराधो मर्षितव्य इति)

अन—तदो तदो? (ततस्ततः?)

प्रिय—तदो मे वअणं अण्णहाभविदुं णारिहदि। किंदु अहिण्णाणा-भरणदंसणेण सावो णिवत्तिस्सदि त्ति मंतअंतो सअं अंत-रिहिदो। (ततो मे वचनमन्यथाभवितुं नार्हति, किंत्वभि-ज्ञानाभरणदर्शनेन शापो निवर्तिष्यत इति मन्त्रयन् स्वयमन्तर्हितः।)

अन—सक्कं दाणिं अस्ससिदुं। अत्थि तेण राएसिणा संपत्थिदेण सणामहेअंकिअं अंगुलीअअं सुमरणीअंत्ति सअं पिणद्धं। तस्सिं साहीणोवाआ सउंदला भविस्सदि। (शक्यमिदानी-माश्वसितुम्। अस्ति तेन राजर्षिणा संप्रस्थितेन स्वनामधेया-ङ्कितमङ्गुलीयकं स्मरणीयमिति स्वयं पिनद्धम्। तस्मिन् स्वाधीनोपाया शकुन्तला भविष्यति।)

प्रिय—सहि! एहि, देवकज्जं दाव णिव्वत्तेम्ह। (सखि! एहि, देवकार्यं तावन्निर्वर्तयावः।)

ପ୍ରିୟ— ହେଉ । ( ଚାଲିଗଲା )

( ଅନସୂୟା କିଛି ବାଟ ଯାଇ, ଗୋଡ ଖସି ଯିବାରୁ ) ଉଃ ! ତରତରରେ ପଡ଼ିଗଲି ! ହାତରୁ ଫୁଲଡାଲା ବି ପଡ଼ିଗଲା ! (ପଡ଼ିଥିବା ଫୁଲ ସବୁ ତୋଳିବାରେ ଲାଗିଲା ।)

ପ୍ରିୟ— ( ପ୍ରବେଶ କରି ) ସଖୀ, ସେ ତ ସ୍ୱଭବତଃ ରୁକ୍ଷ, ତଥାପି ତାଙ୍କୁ କେତେକାଂଶରେ ସନ୍ତୁଷ୍ଟ କଲି ।

ଅନ— (ଟିକିଏ ହସ ହସ ମୁଖରେ) ତାଙ୍କ ପାଖରେ ତ ସେତିକି ବହୁତ ! ଆଚ୍ଛା, କଅଣ ହେଲା ?

ପ୍ରିୟ— ଯେତେବେଳେ ସେ ଫେରି ଆସିବାକୁ ନାରଜ ହେଲେ,ମୁଁ ନିବେଦନ କଲି——"ଭଗବାନ୍ ! ଆପଣଙ୍କ ତପସ୍ୟାର ପ୍ରଭବ ଜାଣିନଥିବା ଝିଅପିଲାଟିର ଏହି ଅପରାଧକୁ ପ୍ରଥମ ଅପରାଧ ବୋଲି ବିବେଚନା କରି କ୍ଷମା କରିବା ହୁଅନ୍ତୁ ।"

ଅନ— ତା'ପରେ ?

ପ୍ରିୟ— ତା'ପରେ ସେ କହିଲେ—"ମୋର କଥା ଅନ୍ୟଥା ହେବାର ନୁହେଁ । କିନ୍ତୁ ସ୍ମୃତିଚିହ୍ନସ୍ୱରୂପ କୋଣସି ଆଭରଣ ଦେଖାଇଦେଲେ ଶାପ ଦୂର ହୋଇଯିବ" ଏହା କହି ସେ ଅନ୍ତର୍ଦ୍ଧାନ ହୋଇଗଲେ ।

ଅନ— ତା'ହେଲେ ଆଶ୍ୱସ୍ତି ମିଳିଲା । ସେହି ରାଜର୍ଷି ଯିବାବେଳେ ଗୋଟିଏ ମୁଦି ଦେଇ ଯାଇଛନ୍ତି । ମୁଦିଟି ଉପରେ ତାଙ୍କର ନାମ ଲେଖା ହୋଇଛି । ତାହାକୁ ଶକୁନ୍ତଳାର ହାତରେ ପିନ୍ଧାଇ ଦେବାବେଳେ ସେ କହିଥିଲେ—'ଏହାକୁ ଦେଖି ମୋତେ ସ୍ମରଣ କରୁଥିବ ।' ବର୍ତ୍ତମାନ ସେହି ମୁଦିଦ୍ୱାରା ଶକୁନ୍ତଳାର ଶାପର ପ୍ରତିକାର କରଯାଇ-ପାରିବ ।

ପ୍ରିୟ— ସଖୀ, ଆ । ଦେବକାର୍ଯ୍ୟ ସଂପାଦନ କରିବା । ( ଦୁହେଁ ଚାଲିଲେ )

प्रिय—( विलोक्य ) अणसूए ! पेक्ख दाव । वामहत्थोवहिदवअणा आलिहिदा विअ पिअसही । भत्तुगदाए चिंताए अत्ताणं पि एसा ण विभावेदि, किं उण आअंतुअं ? (अनसूये ! पश्य तावत्, वामहस्तोपहितवदना आलिखितेव प्रियसखी । भर्तृगतया चिन्तया आत्मानमपि नैषा विभावयति, किं पुनरागन्तुकम् ? )

अन—पिअंवदे ! दुवेणं एव्व णं णो मुहे एसो वुत्तंतो चिट्ठदु । रक्खिदव्वा खु पकिदिपेलवा पिअसही । ( प्रियंवदे ! द्वयोरेव ननु नौ मुखे एष वृत्तान्तस्तिष्ठतु । रक्षितव्या खलु प्रकृतिपेलवा प्रियसखी । )

प्रिय—को णाम उण्होदएण णोमालिअं सिंचेदि ? ( को नामोष्णोदकेन नवमालिकां सिञ्चति ? ) ( उभे निष्क्रान्ते )

## युग्मविष्कम्भकः

( २ )

( ततः प्रविशति सुप्तोत्थितः शिष्यः )

शिष्यः—वेलोपलक्षणार्थमादिष्टोऽस्मि तत्रभवता प्रभासप्रवासादुपावृत्तेन काश्यपेन । प्रकाशं निर्गतस्तावदवलोकयामि कियदवशिष्टं रजन्या इति । ( परिक्रम्यावलोक्य च ) हन्त प्रभातम् । तथा हि—

यात्येकतोऽस्तशिखरं पतिरोषधीना-
माविष्कृतोऽरुणपुरःसर एकतोऽर्कः ।
तेजोद्वयस्य युगपद् व्यसनोदयाभ्यां
लोको नियम्यत इवात्मदशान्तरेषु ॥ २ ॥

ପ୍ରିୟ— (ଦୃଷ୍ଟି ନିକ୍ଷେପ କରି) ଅନସୂୟା, ଏଇ ଦେଖ, ପ୍ରିୟ ସଖୀ ଶକୁନ୍ତଳା ବାମହାତ ଉପରେ ମୁହଁ ରଖି ଚିତ୍ର ପ୍ରତିମାଟି ପରି ବସିଛି । ସ୍ୱାମୀଙ୍କୁ ଭାବି ଭାବି ସେ ନିଜକୁ ମଧ୍ୟ ଭୁଲିଯାଇଛି, ଅତିଥିଙ୍କ କଥା ବା କ'ଣ ଜାଣିବ ?

ଅନ— ପ୍ରିୟମ୍ବଦା, ଏ କଥା ଆମ ଦୁହିଁଙ୍କ ଭିତରେ ଥାଉ । କୋମଳହୃଦୟା ଶକୁନ୍ତଳାକୁ ରକ୍ଷା କରିବା ଆମର କର୍ତ୍ତବ୍ୟ ।

ପ୍ରିୟ— କିଏ ନବମାଳିକା ଲତାରେ ଉଷ୍ଣଜଳ ସେଚନ କରେ ?

( ଉଭୟଙ୍କର ପ୍ରସ୍ଥାନ )



## ଯୁଗ୍ମ ବିଷ୍କମ୍ଭକ

( ୨ )

( ତାହାପରେ ନିଦ୍ରାରୁ ଉତ୍ଥିତ ଜଣେ ଶିଷ୍ୟଙ୍କର ପ୍ରବେଶ )

ଶିଷ୍ୟ— ପ୍ରଭାସତୀର୍ଥରୁ ପ୍ରତ୍ୟାଗତ ମହର୍ଷି କଣ୍ୱ ମୋତେ ସମୟ ଦେଖିବା ନିମନ୍ତେ ଆଦେଶ ଦେଇଛନ୍ତି । ତେଣୁ ବାହାରକୁ ଯାଇ ଦେଖେଁ ରାତି ଆଉ କେତେ ଅଛି । ( କିଛି ବାଟଯାଇ ଏବଂ ନିରୀକ୍ଷଣ କରି ) ଆରେ ! ସକାଳ ହୋଇଗଲାଣି ତ ! କାରଣ—

ଏକ ଦିଗରେ ଚନ୍ଦ୍ର ଅସ୍ତାଚଳକୁ ଯାଉଛନ୍ତି ଏବଂ ଅନ୍ୟ ଦିଗରେ ସୂର୍ଯ୍ୟ ଅରୁଣକୁ ଆଗରେ ରଖି ଉଦୟାଚଳରୁ ବାହାରି ଆସୁଛନ୍ତି । ଏହି ଦୁଇଟି ଜ୍ୟୋତିଷ୍କ ଏକ ସମୟରେ ଉଦୟ ଓ ଅସ୍ତ ହୋଇ ସତେ-ଯେପରି ସୂଚାଇ ଦେଉଛନ୍ତି ଯେ, ଲୋକମାନେ ଏହିପରି ସୁଖ ଦୁଃଖର ଅଧୀନ । ୨

अपि च— अन्तर्हिते शशिनि सैव कुमुद्वतीयं
दृष्टिं न नन्दयति संस्मरणीयशोभा ।
इष्टप्रवासजनितान्यबलाजनस्य
दुःखानि नूनमतिमात्रसुदुःसहानि ॥ ३ ॥

यावदुपस्थितां होमवेलां गुरवे निवेदयामि ।

( निष्क्रान्तः )

( प्रविश्यापटीक्षेपेण )

अन—णं प्रभादा रअणी । ता लहु पडिवुद्धम्हि । अथवा पडिवुद्धा वि किं करिस्सं ? ण मे उइदेसु वि णिअकरणिज्जेसु हत्थपाआ पसरंति । कामो दाणिं सकामो होदु । जेण असच्चसंधे जणे सुण्णहिअआ सही पदं कारिदा । विसअपरम्मुहस्स वि जणस्स एदं ण विदिअं जह तेण रण्णा सउंदलाए अणज्जं आअरिदं । अहवा, दुव्वाससो कोवो एसो विआरेदि । अण्णहा कहं सो राएसी तारिसाणि मंतिअ एत्तिअस्स कालस्स लेहमेत्तं पि ण विसज्जेदि ? ता इदो अहिण्णाणं अंगुलीअअं से विसज्जेम । दुक्खसीले तवस्सिजणे को अब्भत्थीअदु ? णं सहीगामी दोसो त्ति व्ववसिदा वि ण पारेमि, पवासपडिणिउत्तस्स तादकस्सवस्स दुस्संतपरिणोदं आवण्णसत्तं सउंदलं णिवेदिदुं एत्थगए अम्हेहिं किं करणिज्जं ? ( ननु प्रभाता रजनी, तत् लघु प्रतिबुध्ये । अथवा प्रतिबुद्धापि किं करिष्ये ? न मे उचितेष्वपि निजकार्येषु हस्तपादं प्रसरति । कामः इदानीं सकामो भवतु । येन असत्यसंधे जने शून्यहृदया सखी पदं कारिता । विषयपराङ्मुखस्यापि जनस्य, एतन्न विदितं यथा तेन राज्ञा शकुन्तलायामनार्यमाचरितम् । अथवा, दुर्वाससः कोप एष विकारयति । अन्यथा कथं स राजर्षिस्तादृशानि मन्त्रयित्वा एतावत् कालस्य लेखमात्रमपि न विसृजति ? तदितः अभिज्ञानमङ्गुलीयकं

ଆଉ ମଧ୍ୟ ଚନ୍ଦ୍ର ଅସ୍ତ ହେବାରୁ କୁମୁଦିନୀର ସୌନ୍ଦର୍ଯ୍ୟ କେବଳ ସ୍ମୃତିରେ ରହିବ । ଆଉ ସେ ଦୃଷ୍ଟିର ଆନନ୍ଦଦାୟିନୀ ହେବ ନାହିଁ । ଏହିପରି, ପ୍ରବାସକୁ ଗଲେ ପ୍ରିୟତମା ପକ୍ଷରେ ବିରହ ବେଦନା ଅସହ୍ୟ ହୋଇ ଉଠେ । ଆ

ଯାଉଛି । ହୋମ ବେଳା ହୋଇଗଲାଣି, ଗୁରୁଙ୍କୁ ଜଣାଇଦେବି । ( ପ୍ରସ୍ଥାନ କଲେ )

ଅନ— ( ପରଦା ଆଡେଇ ପ୍ରବେଶ କରି ) ରତି ପାହିଲାଣି । ଶୀଘ୍ର ଉଠେଁ । ଶୀଘ୍ର ଉଠି ବା କଅଣ କରିବି ? ମୋର ନିଜର କର୍ତ୍ତବ୍ୟ କର୍ମରେ ମଧ୍ୟ ହସ୍ତପଦ ଚଳୁନାହିଁ । କନ୍ଦର୍ପ ବର୍ତ୍ତମାନ ସଫଳକାମ ହେଉ । ଯେହେତୁ, ସଖୀ ଶକୁନ୍ତଳା କିଛି ନ ବିଗ୍ରରି ଏକ ମିଥ୍ୟାବାଦୀ ବ୍ୟକ୍ତିଙ୍କ ପ୍ରତି ମନ ବଳାଇଛି । ସଂସାରବିମୁଖ ବ୍ୟକ୍ତକୁ ଯଦିଓ ଏସବୁ କଥା ଅଜଣା, ତଥାପି ଏଥିରେ ସନ୍ଦେହ ନାହିଁ ଯେ, ରଜା ଶକୁନ୍ତଳା ପ୍ରତି ଅଶିଷ୍ଟ ଆଚରଣ କରିଛନ୍ତି । ଅବା ଏହା ଦୁର୍ବାସାଙ୍କ ଶାପର ଫଳ । ତା ନ ହେଲେ ସେହି ରଜର୍ଷି ଏତେ ମଧୁର କଥା କହିଗଲେ, ଅଥଚ ଏ ପର୍ଯ୍ୟନ୍ତ ପତ୍ରଖଣ୍ଡେ ଦେଲେନାହିଁ ! ତେବେ କଅଣ ସ୍ମରଣ ଚିହ୍ନ-

तस्य विसृजावः। दुःखशीले तपस्विजने कोऽभ्यर्थ्यताम् ? ननु सखीगामी दोष इति व्यवसितापि न पारयामि प्रवासप्रतिनिवृत्तस्य तातकाश्यपस्य दुष्यन्तपरिणीताम् आपन्नसत्त्वां शकुन्तलां निवेदयितुम्। इत्थंगते अस्माभिः किं करणीयम् ?)

( प्रविश्य )

प्रिय—(सहर्षम्) सहि ! तुवर सउंदलाए पत्थाण कोदुअं णिव्वत्तिदुं। ( सखि ! त्वरस्व शकुन्तलायाः प्रस्थानकौतुकं निर्वर्तयितुम्। )

अन—( सविस्मयम् ) सहि ! कहं एदं ? ( सखि ! कथमेतत् ? )

प्रिय—सुणाहि, दाहिं सुहसइदपुच्छिआ सउंदलासआसं गदम्हि। तदो जाव एणं लज्जावणदमुहिं परिस्सजिअ तादकस्सवेण एव्वं अहिणंदिदं—दिट्ठिआ धूमाउलिददिट्ठिणो वि जअमाणस्स पाअए एव्व आहुदी पडिदा। वच्छे ! सुसिस्सपरिदिण्णा विज्जा विअ असोअणिज्जा सि संवुत्ता। अज्ज एव्व इसिरक्खिदं तुमं भत्तुणो सआसं विसज्जेमि—त्ति। ( शृणु। इदानीं सुखशयितपृच्छिका शकुन्तलासकाशं गतास्मि। ततो यावदेनां लज्जावनतमुखीं परिष्वज्य तातकाश्यपेनैवमभिनन्दितम्—दिष्ट्या धूमाकुलितदृष्टेरपि यजमानस्य पावक एवाहुतिः पतिता। वत्से ! सुशिष्यपरिदत्ता विद्येव अशोचनीयाऽसि संवृत्ता। अद्यैव ऋषिरक्षितां त्वां भर्तुः सकाशं विसर्जयामि—इति। )

अन—अह केण सूइदो तादकस्सवस्स अअं वुत्तंतो ? ( अथ केन सूचितः तातकाश्यपस्य अयं वृत्तान्तः ? )

प्रिय—अग्गिसरणं पविट्ठस्स सरीरं विणा छंदोमईए अणआ वाणिआए। ( अग्निशरणं प्रविष्टस्य शरीरं विना छन्दोमय्या अनया वाण्या—) ( संस्कृतमाश्रित्य )

दुष्यन्तेनाहितं तेजो दधानां भूतये भुवः।
अवेहि तनयां ब्रह्मन्नग्निगर्भां शमीमिव ॥ ४ ॥

ସ୍ୱରୂପ ସେହି ମୁଦିଟିକୁ ତାଙ୍କ ପାଖରୁ ପଠାଇଦେଲେ ହେବ ? କିନ୍ତୁ ତପସ୍ୱୀମାନଙ୍କ ମଧ୍ୟରୁ କାହାକୁ ବା ଏ ବିଷୟରେ ଅନୁରୋଧ କରାଯାଇ ପାରିବ ? ସେମାନେ ତ ସଂଯମଶୀଳ । ପିତା କଣ୍ୱ ପ୍ରବାସରୁ ଫେରିଆସିଛନ୍ତି । ତାଙ୍କୁ ଶକୁନ୍ତଳାର ଅପରାଧ କଥା କହନ୍ତି, କିନ୍ତୁ କିପରି କହିବି ଯେ ଦୁଷ୍ୟନ୍ତଙ୍କ ସହିତ ତା'ର ବିବାହ ହୋଇଛି ଏବଂ ସେ ବର୍ତ୍ତମାନ ଅନ୍ତଃସତ୍ତ୍ୱା ! ଏଭଳି ଅବସ୍ଥାରେ କଅଣ କରିବାକୁ ହେବ !

ପ୍ରିୟ– ( ପ୍ରବେଶ କରି ଆନନ୍ଦରେ ) ଅନସୂୟା, ଶୀଘ୍ର ଆସ । ଶକୁନ୍ତଳାକୁ ବିଦାୟ ଦେବାର ଆୟୋଜନ କରିବାକୁ ହେବ ।

ଅନ– ( ବିସ୍ମୟରେ ) ସଖୀ, କିପରି ?

ପ୍ରିୟ– ଶୁଣ, ବର୍ତ୍ତମାନ ମୁଁ ଶକୁନ୍ତଳା ପାଖକୁ ପଚାରିବାକୁ ଯାଇଥିଲି, ତାକୁ ରାତିରେ ଭଲ ନିଦ ହୋଇଥିଲା କି ନାହିଁ । ଦେଖିଲି, ଶକୁନ୍ତଳା ଲଜ୍ଜାରେ ମୁହଁ ତଳକୁ କରି ଠିଆ ହୋଇଛି, ପିତା ତାହାକୁ ଆଲିଙ୍ଗନ କରି କହୁଛନ୍ତି—

"ଯଜମାନର ଚକ୍ଷୁ ଧୂମରେ ଆକୁଳିତ ହେଲେ ମଧ୍ୟ ସୌଭାଗ୍ୟକ୍ରମେ ଆହୁତି ଅଗ୍ନିରେ ହିଁ ପଡ଼ିଛି । ଉପଯୁକ୍ତ ଶିଷ୍ୟଠାରେ ଅର୍ପିତ ବିଦ୍ୟା ଭଳି ତୋ ପାଇଁ ମୋର ଆଉ କୌଣସି ଶୋଚନା କରିବାର ନାହିଁ । ଆଜି ତୋତେ ଋଷିମାନଙ୍କ ସହିତ ତୋର ସ୍ୱାମୀ-ଗୃହକୁ ପଠାଇ ଦେବି ।" ୩ ।

ଅନ– ପିତାଙ୍କୁ ଏ କଥା କିଏ ଜଣାଇଲା ?

ପ୍ରିୟ– ସେ ଯେତେବେଳେ ଯଜ୍ଞଶାଳାରେ ପ୍ରବେଶ କଲେ, ସେତେବେଳେ ଛନ୍ଦୋବଦ୍ଧ ଏକ ଶୂନ୍ୟବାଣୀ ଶୁଭିଲା—

ଆହେ ମୁନିବର, ଯଥା ବୈଶ୍ୱାନର
ଶମୀରେ ଥାଏ ଗୁପତେ
ତଥା ଦୁଷ୍ୟନ୍ତଙ୍କ ତେଜ ତୁମ ସୁତା
ଧରିଛି ଜଗତ ହିତେ । ୪ ।

अन—(प्रियंवदामाश्लिष्य) सहि ! पिअं मे, किंदु अज्ज एव्व सउंदला णीअदित्ति उक्कंठासाधारणं परितोसं अणुहोमि। (सखि ! प्रियं मे, किंतु अद्यैव शकुन्तला नीयत इति उत्कण्ठासाधारणं परितोषमनुभवामि।)

प्रिय—सहि ! अम्हं कधं वि उक्कंठं विणोदइस्सामो। सा तवस्सिणी णिव्वुदा होदु। (सखि ! आवां कथमपि उत्कण्ठां विनोदयिष्यावः। सा तपस्विनी निर्वृता भवतु।)

अन—तेण हि एदस्सिं चूदसाहावलंविदे णारिएरसमुग्गए एतण्णिमित्तं जेव्व कालहरणक्खमा णिक्खित्ता मए केसरमालिआ। तुमं इमं हत्थसंणिहिदं करेहि। अहंपि से गोलोअणं तित्थ-मिट्टिअं दुव्वाकिसलअणित्ति मंगलसमालंभणाणि विरएमि। (तेन हि एतस्मिन् चूतशाखावलम्बिते नारिकेलसमुद्गके एतन्निमित्तमेव कालहरणक्षमा निक्षिप्ता मया केशरमालिका। त्वम् इमां हस्तसंनिहितां कुरु, अहमपि तस्यै गोरोचनां तीर्थमृत्तिकां दूर्वाकिसलयानीति मङ्गलसमालम्भनानि विरचयामि।)

प्रिय—तह करीअदु। (तथा क्रियताम्।)

(अनसूया निष्क्रान्ता, प्रियंवदा नाट्येन सुमनसो गृह्णाति)

(नेपथ्ये)

गौतमि ! आदिश्यन्तां शार्ङ्गरवमिश्राः शकुन्तला-नयनाय।

प्रिय—(कर्णं दत्त्वा) अनसूए तुवरसु, एदे खु हत्थिणाउर-गामिणो इसीओ आआरीअंति। (अनसूये ! त्वरस्व, एते खलु हस्तिनापुरगामिन ऋषय आकार्यन्ते।)

अन—(प्रविश्य समालम्भनहस्ता) सहि ! एहि, गच्छम्ह। (सखि ! एहि, गच्छाव।) (परिक्रामतः)

प्रिय—(विलोक्य) एसा सुज्जोदए एव्व सिहामज्जिदा पडिच्छिद-णीवारहत्थाहिं सोत्थि-वाअणिकाहिं तावसीहिं अहिणंदीअ-माणा सउंदला चिट्ठइ। उवसप्पम्ह णं। (एषा सूर्योदय एव शिखामज्जिता प्रतिष्ठित नीवारहस्ताभिः स्वस्तिवाचनि-काभिस्तापसीभिरभिनन्द्यमाना शकुन्तला तिष्ठति। उपसर्पाव एनाम्।) (उपसर्पतः)

॥॥ इति युग्मविष्कम्भकः ॥॥

ଅନ– ( ପ୍ରିୟମ୍ବଦାକୁ ଆଲିଙ୍ଗନ କରି ) ସଖୀ, ଶୁଭ ସମ୍ବାଦ ଦେଲୁ । କିନ୍ତୁ ଶକୁନ୍ତଳା ଆଜି ଚାଲିଯିବ, ଏଥିପାଇଁ ଆନନ୍ଦ ଭିତରେ ଦୁଃଖ ବି ଲାଗୁଛି ।

ପ୍ରିୟ– ସଖୀ, ଆମେ କୌଣସି ପ୍ରକାରେ ଦୁଃଖ ସହିନେବା । ସେହି ଦୁଃଖିନୀଟି ଶାନ୍ତି ଲାଭ କରୁ ।

ଅନ– ତା'ହେଲେ ଏଇ ଚୂତ ବୃକ୍ଷର ଶାଖାରେ ଯେଉଁ ନାରିକେଳ ପାତ୍ରଟି ଝୁଲୁଛି, ସେଥିରେ ମୁଁ ଆଜିର ଦିନ ଉଦ୍ଦେଶ୍ୟରେ ବହୁଦିନ ଧରି ରହି ପାରିବା ଭଳି ବଉଳ ଫୁଲର ମାଳାଟିଏ ରଖିଛି । ତାହା ତୁ ଘେନି ଆ । ମୁଁ ମଧ୍ୟ ଗୋରୋଚନା, ତୀର୍ଥମୃତ୍ତିକା ଏବଂ ଦୂର୍ବା, କିଶଳୟ ପ୍ରଭୃତି ମଙ୍ଗଳ ସାମଗ୍ରୀ ପ୍ରସ୍ତୁତ କରେଁ ।

ପ୍ରିୟ– ଆଚ୍ଛା, ତାହା କର । ( ଅନସୂୟା ଚାଲିଗଲେ, ପ୍ରିୟମ୍ବଦା ପୁଷ୍ପ ସଂଗ୍ରହ କଲେ । )

( ନେପଥ୍ୟେ )

ଗୌତମୀ, ଶାର୍ଙ୍ଗରବ ପ୍ରଭୃତି ଋଷିମାନଙ୍କୁ କହିଦିଅ, ସେମାନେ ଶକୁନ୍ତଳାର ସଙ୍ଗରେ ଯିବେ ।

ପ୍ରିୟ– ( କାନ ଡେରି ) ଅନସୂୟା ଶୀଘ୍ର ଆସ । ଯେଉଁ ଋଷିମାନେ ହସ୍ତିନାପୁରକୁ ଯିବେ, ସେମାନଙ୍କୁ ପିତା ଡାକିଲେଣି ।

ଅନ– ( ଅଙ୍ଗରାଗ ସାମଗ୍ରୀ ଧରି ପ୍ରବେଶ କରି ) ସଖୀ, ଆସ ଯିବା । ( ଉଭୟେ ଚାଲିଲେ )

ପ୍ରିୟ– ( ଆଗକୁ ଚାହିଁ ) ହେଇ, ଶକୁନ୍ତଳା ସୂର୍ଯ୍ୟୋଦୟରୁ ମୁଣ୍ଡ ବୁଡ଼ାଇ ସ୍ନାନ କରି ଏଠାରେ ବସିଛି । ତପସ୍ୱୀମାନେ ଧାନ୍ୟହସ୍ତରେ ସ୍ୱସ୍ତିବାଚନ କରି ତାକୁ ଆଶୀର୍ବାଦ ପ୍ରଦାନ କରୁଛନ୍ତି । ଆସ, ତା' ନିକଟକୁ ଯିବା । ( ଦୁହେଁ ଶକୁନ୍ତଳା ନିକଟକୁ ଗଲେ )

॥ ଯୁଗ୍ମବିଷ୍କମ୍ଭକ ଶେଷ ॥

# चतुर्थोऽङ्कः

( ततः प्रविशति यथोद्दिष्टव्यापाराऽऽसनस्था शकुन्तला )

शकु—भवदीओ ! वन्दामि । ( भगवत्यः ! वन्दे । )

एका—(शकुन्तलां प्रति) जादे ! भत्तुणो बहुमाणसूअअं देईसद्दं लहेहि ।
( जाते ! भर्त्तुः बहुमानसूचकं देवीशब्दं लभस्व )

द्विती—वच्छे ! वीरपसविणी होहि । ( वत्से ! वीरप्रसविनी भव । ) .

तृती—अच्छे ! भत्तुणो बहुमदा होहि । ( वत्से ! भर्तुर्बहुमता भव । )
( आशिषो दत्त्वा गौतमीवर्जं निष्क्रान्ताः )

सख्यौ—( उपसृत्य ) सहि ! सुहमज्जणं दे होदु ।
( सखि ! सुखमज्जनं ते भवतु । )

शकु—साअयं मे पिअसहीणं । इदो णिसीदह ।
( स्वागतं मे प्रियसख्योः । इतो निषीदतम् । )

उभे—( मङ्गलपात्राण्यादाय उपविश्य ) हला ! सज्जा होहि । जाव मंगलसमालंभणं विरएम । ( हला ! सज्जा भव । यावन्मङ्गल-समालम्भनं विरचयाव । )

शकु—उइदं वि एदं अज्ज बहु मंदव्वं । दुल्लहं दाणिं मे सहीमंडणं भविस्सदि त्ति । ( उचितमपि इदमद्य बहु मन्तव्यम् । दुर्लभ-मिदानीं मे सखीमण्डनं भविष्यतीति । ) ( वाष्पं विसृजति )

उभे—सहि ! ण जुत्तं मंगलकाले रोइदुं । ( सखि ! न युक्तं मङ्गलकाले रोदितुम् । ) ( अश्रूणि प्रमृज्य नाट्येन प्रसाधयतः )

प्रिय—आहरणोइदं रूवं अस्समसुलहेहि पसाहणेहि विप्पआरीअदि ।
( आभरणोचितं रूपमाश्रमसुलभैः प्रसाधनर्विप्रकार्यते । )

( प्रविश्योपायनहस्तौ ऋषिकुमारकौ )

एक—इदमलंकरणम् । अलंक्रियतामत्रभवती ।
( सर्वा विलोक्य विस्मिताः )

गौत—वच्छ णारअ ! कुदो एदं ? ( वत्स नारद ! कुत एतत् ? )

# ଚତୁର୍ଥ ଅଙ୍କ

( ତା'ପରେ ପୂର୍ବ ବର୍ଣ୍ଣନା ଅନୁସାରେ ଆସନରେ
ବସିଥିବା ଶକୁନ୍ତଳାଙ୍କର ପ୍ରବେଶ )

ଶକୁ— ମାଆମାନେ, ମୋର ପ୍ରଣତି ଗ୍ରହଣ କରନ୍ତୁ ।

୧ମ ତାପସୀ—ବତ୍ସେ, ସ୍ୱାମୀଙ୍କ ଆଦରସୂଚକ 'ମହାଦେବୀ' ପଦ ଲଭ କର ।

୨ୟ ତାପସୀ—ବତ୍ସେ, ବୀରପ୍ରସବିନୀ ହୁଅ ।

୩ୟ ତାପସୀ—ବତ୍ସେ, ସ୍ୱାମୀଙ୍କ ସ୍ନେହ ଲଭ କର ।

( ଆଶୀର୍ବାଦ୍ ଦେଇ ଗୌତମୀଙ୍କ ବ୍ୟତୀତ ସମସ୍ତେ ଚାଲିଗଲେ । )

ସଖୀଦ୍ୱୟ—( ପାଖକୁ ଆସି ) ସଖୀ, ତୋର ଏଇ ସ୍ନାନ ମଙ୍ଗଳମୟ ହେଉ ।

ଶକୁ— ସ୍ୱାଗତ ମୋର ପ୍ରିୟ ସଖୀ । ଆସ, ଦୁହେଁ ଏଠାରେ ବସ ।

ଉଭୟେ—( ମଙ୍ଗଳପାତ୍ର ଧରି ବସିଲେ ) ସଖୀ, ସଜ ହୁଅ, ବର୍ତ୍ତମାନ ତୋତେ ମଙ୍ଗଳ ଅଙ୍ଗରାଗ ଲଗାଇ ଦେବୁଁ ।

ଶକୁ— ଏ ପାରମ୍ପରିକ ବିଧାନ ଗୌରବମୟ । କିନ୍ତୁ ଆଜିଠାରୁ ସଖୀମାନଙ୍କ ହାତରେ ବେଶ ହେବା ସରିଲା । ( କାନ୍ଦିଲେ )

ସଖୀଦ୍ୱୟ—ସଖୀ, ଶୁଭ ସମୟରେ କାନ୍ଦିବା ଉଚିତ ନୁହେଁ ।

( ଅଶ୍ରୁ ପୋଛି ଦେଇ ବେଶ କରିବାରେ ଲାଗିଲେ )

ପ୍ରିୟ— ସଖୀ, ତୋର ସୁନ୍ଦର ଶରୀର ଅଳଙ୍କାରରେ ମଣ୍ଡିତ ହେବା ଉଚିତ । ଆଶ୍ରମ-ସୁଲଭ ପ୍ରସାଧନରେ ତାହା ବିକୃତ ହେଉଛି ମାତ୍ର ।

( ଉପହାର ଧରି ଦୁଇଜଣ ମୁନିକୁମାର ପ୍ରବେଶ କଲେ )

ଋଷିକୁମାର ଦ୍ୱୟ—ଏଇ ଭୂଷଣସାମଗ୍ରୀ । ଏଗୁଡ଼ିକରେ ଶକୁନ୍ତଳାଙ୍କୁ ବେଶ କରି ଦିଅନ୍ତୁ ।

( ସମସ୍ତେ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ )

ଗୌତମୀ—ବତ୍ସ ନାରଦ, ଏସବୁ କେଉଁଠୁ ମିଳିଲା ?

प्रथ—तातकाश्यपप्रभावात् ।

गौत—किं माणसी सिद्धी ? ( किं मानसी सिद्धिः ? )

द्विती—न खलु । श्रूयताम् । तत्रभवता वयमाज्ञप्ताः शकुन्तलाहेतो-र्वनस्पतिभ्यः कुसुमान्याहरत इति । तत इदानीं—

क्षौमं केनचिदिन्दुपाण्डु तरुणा माङ्गल्यमाविष्कृतं
निष्ठ्यूतश्चरणोपभोगसुलभो लाक्षारसः केनचित् ।
अन्येभ्यो वनदेवताकरतलैरापर्वभागोत्थितै-
र्दत्तान्याभरणानि तत्किसलयोद्भेद-प्रतिद्वन्द्विभिः ॥ ५ ॥

प्रिय—( शकुन्तलां विलोक्य ) हला ! इमाए अब्भुववत्तीए सूइया दे भत्तुणो गेहे अणुहोदव्वा राअलच्छित्ति । ( हला ! अनया अभ्युपपत्त्या सूचिता, ते भर्तुर्गेहे अनुभवितव्या राजलक्ष्मीरिति । )

( शकुन्तला व्रीडां रूपयति )

प्रथ—गौतम ! एह्येहि, अभिषेकोत्तीर्णाय भगवते काश्यपाय निवेदयाव यावदिमां वनस्पतिसेवाम् ।

द्विती—तथा । ( निष्क्रान्तौ )

सख्यौ—अए ! अणुवजुत्तभूसणो अअं जणो । ता चित्तकम्मपरिअएण अंगेसु दे आहरणविणिओअं करेम्ह । ( अये ! अनुपयुक्त-भूषणोऽयं जनः । तत् चित्रकर्मपरिचयेन, अङ्गेषु ते आभरण-विनियोगं कुर्वः । )

शकु—जाणे वो णेउणं । ( जाने वां नैपुणम् । ) ( उभे नाट्येनालंकुरुतः )

( ततः प्रविशति स्नानोत्तीर्णः काश्यपः )

काश्यपः—यास्यत्यद्य शकुन्तलेति हृदयं संस्पृष्टमुत्कण्ठया
कण्ठः स्तम्भितबाष्पवृत्तिकलुषश्चिन्ताजडं दर्शनम् ।
वक्लव्यं मम तावदीदृशमिदं स्नेहादरण्यौकसः
पीड्यन्ते गृहिणः कथं नु तनयाविश्लेषदुःखैर्नवैः ॥ ६ ॥

( परिक्रामति )

୧ମ-- ପିତା କଣ୍ୱଙ୍କ ପ୍ରଭାବରୁ ମିଳିଛି ।

ଗୌତମୀ--ସେ କଅଣ ଏହାକୁ ମାନସ ଶକ୍ତିରୁ ସୃଷ୍ଟି କଲେ ?

୨ୟ-- ନା, ଶୁଣନ୍ତୁ । ସେ ଆମକୁ ଶକୁନ୍ତଳାଙ୍କ ନିମନ୍ତେ ବୃକ୍ଷମାନଙ୍କରୁ ଫୁଲ ତୋଳି ଆଣିବାକୁ ଆଦେଶ ଦେଇଥିଲେ । ଆମେ ଗଲାକ୍ଷଣି— କେଉଁ ବୃକ୍ଷ ଚନ୍ଦ୍ରପରି ଶୁଭ୍ର ରେଶମୀ ମଙ୍ଗଳ-ବସ୍ତ୍ର ପ୍ରଦାନ କଲା । କିଏ ବା ପାଦରଞ୍ଜନ ପାଇଁ ସୁନ୍ଦର ଲାକ୍ଷାରସ ନିଃସୃତ କରିଦେଲା । ଅନ୍ୟାନ୍ୟ ବୃକ୍ଷମାନଙ୍କରୁ ବନଦେବତାଗଣ ସେମାନଙ୍କର କିଶଳୟ-ସଦୃଶ ହସ୍ତ ମଣିବନ୍ଧ ଯାଏ ବାହାର କରି ଆଭରଣମାନ ଅର୍ପଣ କଲେ । ୫

ପ୍ରିୟ - ( ଶକୁନ୍ତଳାକୁ ଚାହିଁ ) ସଖୀ, ବନଦେବତାମାନଙ୍କ ଅନୁଗ୍ରହରୁ ଜଣାଯାଉଛି ଯେ, ତୁ ସ୍ୱାମୀଗୃହରେ ରାଜଲକ୍ଷ୍ମୀ ଭୋଗ କରିବୁ ।

(ଶକୁନ୍ତଳା ଲଜ୍ଜିତା ହେଲେ)

୧ମ - ଗୌତମ, ଆସ ଯିବା । ମହର୍ଷି ସ୍ନାନ କରିସାରିବେଣି । ତାଙ୍କୁ ବନସ୍ପତିମାନଙ୍କର ଏଇ ସେବାକଥା ଜଣାଇବା ।

୨ୟ-- ହେଉ । ( ଉଭୟେ ପ୍ରସ୍ଥାନ କଲେ )

ସଖୀଦ୍ୱୟ--ସଖୀ, ଆମେ ଭୂଷଣର ବ୍ୟବହାର ଜାଣୁନା । ତଥାପି, ଚିତ୍ରରେ ଯେଉଁଭଳି ଦେଖୁଛୁ, ସେଇଭଳି ତୋ ଦେହରେ ପିନ୍ଧାଇ ଦେଉଛୁ ।

ଶକୁ-- ତୁମ ଦୁହିଁଙ୍କ ନିପୁଣତା ମୁଁ ଜାଣେ ।

( ସଖୀ ଦୁହେଁ ଭୂଷଣ ପିନ୍ଧାଇ ଦେଲେ )

( ସଦ୍ୟସ୍ନାତ ମହର୍ଷି କଣ୍ୱଙ୍କର ପ୍ରବେଶ ]

କଣ୍ୱ - ଆଜି ଶକୁନ୍ତଳା ତା ସ୍ୱାମୀଗୃହକୁ ଯିବ । ତେଣୁ ମୋର ହୃଦୟ ଉତ୍‌କଣ୍ଠିତ, କଣ୍ଠ ବାଷ୍ପରୁଦ୍ଧ ହୋଇଯାଉଛି । ଚିନ୍ତାରେ ଚକ୍ଷୁ ଉଦାସ ହୋଇ ଉଠୁଛି । ମୁଁ ଅରଣ୍ୟବାସୀ ; ମୋର ଯଦି ସ୍ନେହ ବଶତଃ ଏଭଳି ଅଧୀର ଅବସ୍ଥା, ତେବେ ଗୃହସ୍ଥମାନେ କନ୍ୟାମାନଙ୍କ ବିଚ୍ଛେଦରେ କେଡେ ଅଧୀର ହେଉ ନ ଥିବେ ! )

[ ଯିବାକୁ ଲାଗିଲେ ]

सख्यौ—हला सउंदले ! अवसिदमडणासि । परिधेहि संपदं विचित्तं खोमजुअलं । ( हला शकुन्तले ! अवसितमण्डनासि । परिधत्स्व सांप्रतं विचित्रं क्षौमयुगलम् । )

( शकुन्तलोत्थाय परिधत्ते )

गौत—जादे ! एसो दे आणंदपरिवाहिणा चक्खुणा परिस्सजतो विअ गुरू उवट्ठिदो । आआरं दाव पडिवज्जस्स । ( जाते ! एष ते आनन्दपरिवाहिणा चक्षुषा परिष्वजमान इव, गुरुरुपस्थितः, आचारं तावत् प्रतिपद्यस्व । )

शकु—( सव्रीडम् ) ताद ! वंदामि । ( तात ! वन्दे । ) ( वन्दते )

काश्यपः—वत्से !

ययातेरिव शर्मिष्ठा भर्तुर्बहुमता भव ।
सुतं त्वमपि सम्राजं सेव पूरुमवाप्नुहि ॥ ७ ॥

गौतमी—भअवं ! वरो खु एसो, ण आसिसा ।
( भगवन् । वरः खल्वेषः, नाशिषः । )

काश्यपः—वत्से ? इतः सद्योहुताग्नीन् प्रदक्षिणीकुरुष्व ।

( सर्वे परिक्रामन्ति )

काश्यपः—( ऋक्छन्दसाऽऽशास्ते )

अमी वेदिं परितः क्लृप्तधिष्ण्याः
समिद्वन्तः प्रान्तसंस्तीर्णदर्भाः ।
अपघ्नन्तो दुरितं हव्यगन्धैर्
वैतानास्त्वां वह्नयः पावयन्तु ॥ ८ ॥

प्रतिष्ठस्वेदानीम् ( सदृष्टिक्षेपम् ) क्व ते शार्ङ्गरवमिश्राः ?

( प्रविश्य )

शिष्यौ—भगवन् ? इमौ स्वः ।

काश्यपः—भगिन्यास्ते मार्गमादेशय ।

शार्ङ्ग—इत इतो भवती । ( सर्वे परिक्रामन्ति )

ସଖୀଦ୍ୱୟ—ସଖୀ, ତୋର ବେଶ ଶେଷ ହେଲା । ବର୍ତ୍ତମାନ ପାଟଲୁଗା ଯୋଡ଼ିକ ପିନ୍ଧି ନେ ।

( ଶକୁନ୍ତଳା ଠିଆ ହୋଇ ପିନ୍ଧିଲେ )

ଗୌତମୀ— ଝିଅ, ଏଇ ତୋର ପିତା ଉପସ୍ଥିତ । ଆନନ୍ଦାଶ୍ରୁପୂର୍ଣ୍ଣ ଚକ୍ଷୁରେ ସେ ଯେପରି କି ତୋତେ ଆଲିଙ୍ଗନ କରୁଛନ୍ତି ! ତାଙ୍କର ପାଦ ବନ୍ଦନ କର ।

ଶକୁ— ( ଲଜ୍ଜାର ସହିତ ) ପିତା, ଆପଣଙ୍କର ପଦ ବନ୍ଦନା କରୁଛି ।

କଣ୍ୱ— ବତ୍ସେ, ଶର୍ମିଷ୍ଠା ଯେପରି ଯଯାତିଙ୍କର ପ୍ରିୟ ପତ୍ନୀ ହୋଇଥିଲେ, ତୁ ସେହିପରି ସ୍ୱାମୀଙ୍କର ପ୍ରିୟ ପତ୍ନୀ ହୁଅ ଏବଂ ସେ ଯେପ୍ରରି ପୂରୁ ନାମକ ଚକ୍ରବର୍ତ୍ତୀ ପୁତ୍ର ପାଇଥିଲେ, ତୁ ସେହିପରି ଚକ୍ରବର୍ତ୍ତୀ ପୁତ୍ର ଲାଭ କର । ୭

ଗୌତମୀ—ପ୍ରଭୁ, ଏ ହେଉଛି ବର ; ଆଶୀର୍ବାଦମାତ୍ର ନୁହେଁ ।

କଣ୍ୱ— ବତ୍ସେ, ଏଣେ ସଦ୍ୟ-ଆହୁତିପ୍ରାପ୍ତ ଅଗ୍ନିକୁ ପ୍ରଦକ୍ଷିଣ କର ।

( ସମସ୍ତେ ଅଗ୍ନି ପ୍ରଦକ୍ଷିଣ କଲେ )

କଣ୍ୱ— (ବୈଦିକ ଛନ୍ଦରେ ଆଶୀର୍ବାଦ ଦେଲେ)

ଅମୀ ବେଦିଂ ପରିତଃ କ୍ଳୃପ୍ତଧିଷ୍ଣ୍ୟାଃ
ସମିଦ୍‌ବନ୍ତଃ ପ୍ରାନ୍ତସଂସ୍ତୀର୍ଣ୍ଣଦର୍ଭାଃ ।
ଅପଘ୍ନନ୍ତୋ ଦୁରିତଂ ହବ୍ୟଗନ୍ଧୈ
ର୍ବୈତାନାସ୍ତ୍ୱାଂ ବହ୍ନୟଃ ପାବୟନ୍ତୁ ।। ୮

( ଏଇ ଯଜ୍ଞ-ଅଗ୍ନିଗଣ ବେଦୀର ଚତୁର୍ଦ୍ଦିଗରେ ସମିଧ ଭକ୍ଷଣ କରି ପ୍ରଜ୍ୱଳିତ । ଏମାନଙ୍କ ପ୍ରାଂତ ଭଗରେ କୁଶ ଆସ୍ତରଣ ରହିଛି ଏବଂ ଆହୁତି ଗନ୍ଧରେ ପାପ ଦୂର ହେଉଛି । ଏମାନେ ତୋତେ ପବିତ୍ର କରନ୍ତୁ । ) ୮

ବର୍ତ୍ତମାନ ଯାତ୍ରା କର । ( ଦୃଷ୍ଟି ନିକ୍ଷେପ କରି ଶାର୍ଙ୍ଗରବ ପ୍ରଭୃତି କାହାନ୍ତି ?

ଶିଷ୍ୟଦ୍ୱୟ—( ପ୍ରବେଶ କରି ) ଭଗବାନ୍, ଆମେ ଉପସ୍ଥିତ ।

କଣ୍ୱ— ତୁମ୍ଭ ଭଉଣୀକୁ ବାଟ ଦେଖାଇ ଚାଲ ।

ଶାର୍ଙ୍ଗରବ—ଏଣେ ଆସ ଶକୁନ୍ତଳା । ( ସମସ୍ତେ ଚାଲିଲେ )

काश्यपः—भो भोः संनिहितास्तपोवनतरवः ।

पातुं न प्रथमं व्यवस्यति जलं युष्मास्वपीतेषु या
नादत्ते प्रियमण्डनापि भवतां स्नेहेन या पल्लवम् ।
आद्ये वः कुसुमप्रसूतिसमये यस्या भवत्युत्सवः
सेयं याति शकुन्तला पतिगृहं सर्वैरनुज्ञायताम् ॥ ९ ॥

( कोकिलरवं सूचयित्वा )

अनुमतगमना शकुन्तला तरुभिरियं वनवासबन्धुभिः ।
परभृतविरुतं कलं यथा प्रतिवचनीकृतमेभिरीदृशम् ॥ १० ॥

( आकाशे )

रम्यान्तरः कमलिनीहरितैः सरोभिः,
छायाद्रुमैर्नियमितार्कमयूखतापः ।
भूयात् कुशेशयरजोमृदुरेणुरस्याः
शान्तानुकूलपवनश्च शिवश्च पन्थाः ॥ ११ ॥

( सर्वे सविस्मयमाकर्णयन्ति )

गौत—जादे ! णादिजणसिणिद्धाहिं अब्भणुण्णादासि तवोवण-देवदाहिं । पणम भअवदीणं (जाते ! ज्ञातिजनस्निग्धाभिरनुज्ञातासि तपोवनदेवताभिः । प्रणम भगवतीः । )

शकु—( सप्रणामं परिक्रम्य जनान्तिकम् ) हला पिअंवदे ! णं अज्ज-उत्तदंसणुस्सुआए वि अस्समपदं परिच्चअंतीए दुक्खदुक्खेण मे चलणा पुरदो पवट्टंति । ( हला प्रियंवदे ! ननु आर्यपुत्र-दर्शनोत्सुकाया अपि आश्रमपदं परित्यजन्त्या दुःखदुःखेन मे चरणौ पुरतः प्रवर्तेते । )

प्रिय—ण केवलं तवोवणविरहकादरा सही जेव्व, तुए उवट्ठिदविओ-अस्स तवोवणस्स वि दाव समवत्था दीसइ । ( न केवलं तपोवनविरहकातरा सख्येव, त्वयोपस्थितवियोगस्य तपोवन-स्यापि तावत् समवस्था दृश्यते । )

କଣ୍ୱ— ହେ ହେ ସମୀପବର୍ତ୍ତୀ ତପୋବନତରୁଗଣ—
ଯେ ତୁମ୍ଭମାନଙ୍କୁ ଜଳ ନ ଦେଲେ କଦାପି ଜଳ ଗ୍ରହଣ କରେ ନାହିଁ, ଯେ ଭୂଷଣପ୍ରିୟା ହେଲେ ମଧ୍ୟ ତୁମମାନଙ୍କ ପ୍ରତି ଅତ୍ୟନ୍ତ ସ୍ନେହ-ବଶତଃ ତୁମମାନଙ୍କର ପତ୍ରଟିଏ ଛିଣ୍ଡାଏ ନାହିଁ ଏବଂ ତୁମମାନଙ୍କର ପ୍ରଥମ ପୁଷ୍ପ ବିକଶିତ ହେଲେ ଯାହାର ଆନନ୍ଦ-ଉତ୍ସବ ଲାଗିଯାଏ, ସେହି ଶକୁନ୍ତଳା ଆଜି ତା' ସ୍ୱାମୀଗୃହକୁ ଯାଉଛି, ତୁମେମାନେ ଅନୁମତି ଦିଅ । ୯

( କୋକିଳସ୍ୱରର ସୂଚନା ଦେଇ )

ବନବାସ-ବନ୍ଧୁ ବୃକ୍ଷମାନେ ଶକୁନ୍ତଳାକୁ ଯିବା ପାଇଁ ଅନୁମତି ଦେଉଛନ୍ତି । କାରଣ, ଏମାନେ ମଧୁର କୋକିଳ-ସ୍ୱର ଦ୍ୱାରା ପ୍ରତ୍ୟୁତ୍ତର ଜଣାଉଛନ୍ତି । ୧୦

[ ଶୂନ୍ୟରୁ ]

ଶକୁନ୍ତଳାର ଯାତ୍ରାପଥ ମଙ୍ଗଳମୟ ହେଉ । ସେହି ପଥର ମଧ୍ୟେ-ମଧ୍ୟେ ସବୁଜ ପଦ୍ମଲତାପୂର୍ଣ୍ଣ ସୁନ୍ଦର ପୁଷ୍କରିଣୀମାନ ପଡୁ । ଛାୟାପ୍ରଦ ବୃକ୍ଷମାନେ ସୂର୍ଯ୍ୟତାପ ନିବାରଣ କରନ୍ତୁ । ପଥରେ ଧୂଳି ପଦ୍ମପରାଗ ଭଳି କୋମଳ ହେଉ ଏବଂ ଧୀର ଅନୁକୂଳ ପବନ ବହୁ । ୧୧

( ସମସ୍ତେ ବିସ୍ମୟରେ ଶୁଣିଲେ )

ଗୌତମୀ—ଝିଅ, ଜ୍ଞାତିବନ୍ଧୁମାନଙ୍କ ଭଳି ସ୍ନେହଶୀଳା ତପୋବନଦେବୀମାନେ ତୋତେ ଯିବାକୁ ଅନୁମତି ଦେଲେଣି । ଏମାନଙ୍କୁ ପ୍ରଣାମ କର ।

ଶକୁ— ( ପ୍ରଣାମାନ୍ତେ ପ୍ରିୟମ୍ବଦା ପ୍ରତି ଚୁପ୍ ଚୁପ୍ ) ପ୍ରିୟମ୍ବଦା, ଆର୍ଯ୍ୟପୁତ୍ରଙ୍କୁ ଦେଖିବା ପାଇଁ ମୋ ମନ ଯଦିଓ ଉତ୍କଣ୍ଠିତ, ତଥାପି ଆଶ୍ରମ ଛାଡ଼ି ଯିବାକୁ ମୋର ପାଦ ଆଗକୁ ପଡୁନାହିଁ ।

ପ୍ରିୟ— ସଖୀ, କେବଳ ତୁ ଯେ ତପୋବନର ବିଚ୍ଛେଦରେ ଅଧୀର, ଏହା ନୁହେଁ । ତୋ ବିଚ୍ଛେଦରେ ଏ ତପୋବନର ମଧ୍ୟ ସେଇ ଭଳି ଅବସ୍ଥା ଦେଖାଯାଉଛି ।

उग्गलिअदब्भकवला मिआ परिच्चत्तणच्चणा मोरा ।
ओसरिअपंडुपत्ता मुंअंति अस्सू विअ लदाओ ॥ १२ ॥
( उद्गलितदर्भकवला मृग्यः परित्यक्तनर्तना मयूराः ।
अपसृतपाण्डुपत्रा मुञ्चन्त्यश्रूणीव लताः ॥ )

शकु—(स्मृत्वा) ताद ! लदावहिणिअं वणजोसिणिं दाव आमंतइस्सं ।
( तात ! लताभगिनीं वनज्योत्स्नां तावदामन्त्रयिष्ये । )

काश्य—अवैमि ते तस्यां सोदरस्नेहम् । इयं सा दक्षिणेन ।

शकु—( लतामुपेत्यालिङ्ग्य ) वणजोसिणि ! चूदसंगता वि मं पच्चालिंग इदोगदाहिं साहावाहाहिं । अज्जप्पहुदि दूरपरिवत्तिणी भविस्सम्हि । ( वनज्योत्स्ने ! चूतसंगतापि मां प्रत्यालिङ्ग इतोगताभिः शाखाबाहाभिः । अद्यप्रभृति दूरपरिवर्तिनी भविष्यामि । )

काश्य—
संकल्पितं प्रथममेव मया त्वदर्थे
भर्तारमात्मसदृशं सुकृतैर्गता त्वम् ।
चूतेन संश्रितवती नवमालिकेय-
मस्यामहं त्वयि च संप्रति वीतचिन्तः ॥ १३ ॥

इतः पन्थानं प्रतिपद्यस्व ।

शकु—( सख्यौ प्रति ) हला ! एसा दुवेणं वो हत्थे णिक्खेवो ।
( हला ! एषा, द्वयोर्युवयोर्ननु हस्ते निक्षेपः । )

सख्यौ—अअं जणो कस्स हत्थे समप्पिदो ?
( अयं जनः कस्य हस्ते समर्पितः ? ) ( बाष्पं विहरतः )

काश्य—अनसूये ! अलं रुदित्वा । ननु भवतीभ्यामेव स्थिरीकर्तव्या शकुन्तला । ( सर्वे परिक्रामन्ति )

काश्य—( आत्मगतम् ) किं नु खलु तत्रभवतो दुष्यन्तस्य युक्तरूपमस्माभिः संदेष्टव्यम् ? ( चिन्तयति )

शकु—( जनान्तिकम् ) हला ! पेक्ख, णलिणीपत्तंतरिदं वि सहअरं अपेक्खंती आदुरा चक्कवाई आरडदि, दुक्करं अहं करेमि त्ति तक्केमि । ( हला ! पश्य, नलिनीपत्रान्तरितमपि सहचरमपश्यन्ती आतुरा चक्रवाकी आरौति । दुष्करमहं करोमीति तर्कयामि । )

ମୃଗମାନଙ୍କ ମୁହଁରୁ କୁଶଗ୍ରାସ ଖସି ପଡୁଛି । ମୟୂରମାନେ ନୃତ୍ୟ ଛାଡ଼ି ଦେଇଛନ୍ତି ଏବଂ ଲତାମାନେ ପାଣ୍ଡୁରବର୍ଣ୍ଣ ପତ୍ର ପରିତ୍ୟାଗ କରି ସତେ ଯେପରି ତୋ ନିମନ୍ତେ ଅଶ୍ରୁ ଝରାଉଛନ୍ତି । ୧୨

ଶକୁ— ( ସ୍ମରଣ କରି ) ପିତା, ଲତା ଭଉଣୀ 'ବନଜ୍ୟୋସ୍ନା' ଠାରୁ ବିଦାୟ ନେବି ।

କଣ୍ୱ— ତା' ସହିତ ତୋର ନିଜ ଭଉଣୀ ଭଳି ସ୍ନେହ ଥିବାର ମୁଁ ଜାଣେ । ଏଇ ସେ ତୋ ଦକ୍ଷିଣରେ ଅଛି ।

ଶକୁ— ( ଲତା ନିକଟକୁ ଯାଇ ) ବନଜ୍ୟୋସ୍ନା, ତୁ ଯଦିଓ ସହକାର ସହିତ ମିଳିତା ହୋଇଛୁ, ତଥାପି ତୋର ଦୀର୍ଘ ଶାଖା-ବାହୁରେ ମୋତେ ଆଲିଙ୍ଗନ କର । ଆଜିଠାରୁ ମୁଁ ବହୁ ଦୂରରେ ରହିବି ।

କଣ୍ୱ— ବତ୍ସେ, ମୁଁ ତୋ ନିମନ୍ତେ ଯାହା ଅଭିଳାଷ ପୋଷଣ କରିଥିଲି, ତୁ ତୋ ପୁଣ୍ୟବଳରେ ନିଜ ଅନୁରୂପ ସ୍ୱାମୀ ଲାଭ କରିଛୁ । ଏହି ନବମାଳିକା ମଧ୍ୟ ଚୂତବୃକ୍ଷ ସହିତ ମିଳିତା ହୋଇଛି । ବର୍ତ୍ତମାନ ତୋ ବିଷୟରେ ଏବଂ ତା' ବିଷୟରେ ମୁଁ ନିଶ୍ଚିନ୍ତ ! ୧୩

ଆସ, ଏହିଠାରୁ ରାସ୍ତା ଧର ।

ଶକୁ— ( ସଖୀ ଦୁହିଁଙ୍କ ପ୍ରତି ) ସଖୀ, ଏ ବନଜ୍ୟୋସ୍ନାକୁ ତୁମ ଦୁହିଁଙ୍କ ହାତରେ ସମର୍ପି ଦେଇଯାଉଛି ।

ସଖୀଦ୍ୱୟ--ଆଉ ଆମକୁ କାହା ହାତରେ ସମର୍ପି ଦେଇଯାଉଛୁ ? (କାନ୍ଦିଲେ)

କଣ୍ୱ— ଅନସୂୟା, କାନ୍ଦ ନାହିଁ । ଶକୁନ୍ତଳାକୁ ଧୈର୍ଯ୍ୟ ଦେବା ତୁମ୍ଭମାନଙ୍କର କର୍ତ୍ତବ୍ୟ । ( ସମସ୍ତେ ଚାଲିଲେ )

ଶକୁ— ପିତା, କୁଟୀର ନିକଟରେ ଯେଉଁ ହରିଣୀଟି ଗର୍ଭଭରରେ ଧୀରେ ଧୀରେ ବିଚରଣ କରୁଛି, ତାର ଯେତେବେଳେ ନିର୍ବିଘ୍ନରେ ଶିଶୁ ଜାତ ହେବ, ସେହି ଶୁଭ ସମ୍ବାଦ ଜଣାଇବା ପାଇଁ ଆପଣ ନିଶ୍ଚୟ କାହାକୁ ମୋ ନିକଟକୁ ପଠାଇବେ ।

କଣ୍ୱ— ଆଚ୍ଛା, ଭୁଲିବି ନାହିଁ ।

शकु—( गतिभङ्गं रूपयित्वा ) को णु खु एसो णिवसणे मे सज्जइ ?
( को नु खल्वेष निवसने मे सज्जते ? ) (परावर्तते)

काश्य—वत्से !

यस्य त्वया व्रणविरोपणमिङ्गुदीनां
तैलं न्यषिच्यत मुखे कुशसूचिविद्धे ।
श्यामाकमुष्टिपरिवर्धितको जहाति
सोऽयं न पुत्रकृतकः पदवीं मृगस्ते ॥ १४ ॥

शकु—वच्छ ! किं सहवासपरिच्चाइणिं मं अणुसरसि ? अचिर-प्पसूदाए जणणीए विणा वड्ढिदो । दाणिं पि मए विरहिदं तुमं तादो चिंतइस्सदि । णिवत्तेहि वच्छ, णिवत्तेहि । ( वत्स ! किं सहवासपरित्यागिनीं मामनुसरसि ? अचिर-प्रसूतया जनन्या विना वर्धितोऽसि । इदानीमपि मया विरहितं त्वां तातश्चिन्तयिष्यति । निवर्त्तस्व वत्स, निवर्त्तस्व ।)
( रुदती प्रस्थिता )

काश्य—

उत्पक्ष्मणोर्नयनयोरुपरुद्धवृत्ति
बाष्पं कुरु स्थिरतया विरतानुबन्धम् ।
अस्मिन्नलक्षितनतोन्नतभूमिभागे
मार्गे पदानि खलु ते विषमीभवन्ति ॥ १५ ॥

शार्ङ्ग—भगवन् ! ओदकान्तं स्निग्धो जनोऽनुगन्तव्य इति श्रूयते । तदिदं सरस्तीरम् । अत्र संदिश्य प्रतिगन्तुमर्हसि ।

काश्य—तेन हीमां अश्वत्थवृक्षच्छायामाश्रयामः । ( सर्वे परिक्रम्य स्थिताः )

काश्य—( आत्मगतम् ) किं नु खलु तत्रभवतो दुष्यन्तस्य युक्तरूपम-स्माभिः संदेष्टव्यम् ? ( चिन्तयति )

शकु—( जनान्तिकम् ) हला ! पेक्ख, णलिणीपत्तंतरिदं वि सहअरं अपेक्खंती आदुरा चक्कवाई आरडदि, दुक्करं अहं करेमि त्ति तक्केमि । ( हला ! पश्य, नलिनीपत्रान्तरितमपि सहचरम-पश्यन्ती आतुरा चक्रवाकी आरौति । दुष्करमहं करोमीति तर्कयामि । )

ଶକୁ— ( ଚାଲିବାରେ ବାଧା ପାଇବା ସୂଚିତ କରି ) କିଏ ମୋ ବସ୍ତ୍ରରେ ଆସି ଗୁଡ଼େଇ ହେଉଛି ! ( ବୁଲିପଡ଼ି ଚାହିଁଲେ )

କଣ୍ୱ— ବତ୍ସେ, ତୁ ଯାହାକୁ ପୁଅପରି ପାଳିଥିଲୁ, କୁଶକଣ୍ଟାରେ ଯାହାର ମୁଖ କ୍ଷତ ହୋଇଯିବାରୁ ତୁ ସେଥିରେ ଇଙ୍ଗୁଦି ତୈଳ ଲଗାଇଥିଲୁ ଏବଂ ଯାହାକୁ ଅଞ୍ଜଳିରେ ସୁଆଁ ଶସ୍ୟ ଖୁଆଇ ବଢାଇଛୁ, ଏ ସେହି ମୃଗ, ତୋତେ ଯିବାକୁ ବାଟ ଛାଡ଼ି ଦେଉନାହିଁ । ୧୪

ଶକୁ— ବତ୍ସ, ମୁଁ ତୋର ସାଙ୍ଗ ଛାଡି ଯାଉଛି । ତୁ ମୋ ପଛେ ପଛେ କାହିଁକି ଆସୁଛୁ ? ତୋ ମା ତୋତେ ଜନ୍ମ ଦେବାର ଅଳ୍ପକ୍ଷଣ ପରେ ମରି ଯାଇଥିଲା । ମା ବିନା ତୁ ବଢିଛୁ । ମୁଁ ଚାଲିଯାଉଛି, ବର୍ତ୍ତମାନ-ଠାରୁ ପିତା ତୋର ଯତ୍ନ ନେବେ । ତୁ ଫେରି ଯା । ( କାନ୍ଦି କାନ୍ଦି ଆଗକୁ ଚାଲିଲେ )

କଣ୍ୱ— ବତ୍ସେ, ଆଉ କାନ୍ଦ ନାହିଁ । ତୋର ପଲକ ଖୋଲା ଥିଲେ ମଧ୍ୟ ଅଶ୍ରୁ ଝରି ଦୃଷ୍ଟି ଅବରୁଦ୍ଧ କରି ଦେଉଛି । ଏଠାକାର ଭୂମି ଉଚ୍ଚ ନୀଚ । ଭଲ କରି ନ ଦେଖି ଚାଲିବା ହେତୁ ତୋର ପାଦ ଅସମରେ ପଡୁଛି । ୧୫

ଶାର୍ଙ୍ଗ— ପ୍ରଭୁ, ପ୍ରଥା ଅଛି ଯେ ଜଳାଶୟ ପର୍ଯ୍ୟନ୍ତ ପ୍ରିୟଜନଙ୍କର ଅନୁଗମନ କରଯାଏ । ଏଇ ତ ସରୋବର ତୀର, ଏଠାରୁ ଆପଣ ବାର୍ତ୍ତା ଦେଇ ଫେରିଯାଆନ୍ତୁ ।

କଣ୍ୱ— ତା'ହେଲେ ଆସ, ଏହି ଅଶ୍ୱତ୍ଥ ବୃକ୍ଷ-ଛାୟାକୁ ଯିବା ।
( ସମସ୍ତେ ଯାଇ ଛାୟାରେ ଠିଆ ହେଲେ )

କଣ୍ୱ— ( ସ୍ୱଗତ ) ମହାରଜା ଦୁଷ୍ୟନ୍ତଙ୍କ ପ୍ରତି କି ବାର୍ତ୍ତା ଉପଯୁକ୍ତ ହେବ ? ( ଚିନ୍ତା କଲେ )

ଶକୁ— ( ଚୁପ୍ ଚୁପ୍ ) ସଖୀ ଦେଖ, ଚକୋରଟି ପଦ୍ମପତ୍ର ଭିତରେ ଲୁଚି ଯାଇଛି ବୋଲି ତାକୁ ନ ଦେଖି ଚକୋରୀଟି କିପରି କ୍ରନ୍ଦନ କରି ଡାକୁଛି । ମୁଁ ତେବେ ( ଦୀର୍ଘ କାଳ ହେଲା ପ୍ରିୟବିଚ୍ଛେଦରେ ) କି ଦୁଃଖ ସହ୍ୟ ନ କରୁଛି !

अन—सहि ! मा एव्वं मंतेहि ।

एसा वि पिएण विणा गमअइ रअणिं विसाअदीहअरं ।
गरुअं पि विरहदुक्खं आसावंधो सहावेदि ॥ १६ ॥

सखि ! मैवं मन्त्रय । )

एषापि प्रियेण विना गमयति रजनीं विषाददीर्घतराम् ।
गुर्वपि विरहदुःखमाशाबन्धः साहयति ॥

काश्य—शार्ङ्गरव ! इति त्वया मद्वचनात् स राजा शकुन्तलां पुरस्कृत्य वक्तव्यः ।

शार्ङ्ग—आज्ञापयतु भवान् ।

काश्य—अस्मान् साधु विचिन्त्य संयमधनानुच्चैःकुलं चात्मन-
स्त्वय्यस्याः कथमप्यबान्धवकृतां स्नेहप्रवृत्तिं च ताम् ।
सामान्य प्रतिपत्तिपूर्वकमियं दारेषु दृश्या त्वया
भाग्यायत्तमतः परं न खलु तद् वाच्यं वधूबन्धुभिः ॥ १७ ॥

शार्ङ्ग—गृहीतः संदेशः ।

काश्य—वत्से ! त्वमिदानीमनुशासनीयासि । वनौकसोऽपि सन्तो लौकिकज्ञा वयम् ।

शार्ङ्ग—न खलु धीमतां कश्चिदविषयो नाम ।

काश्य—सा त्वमितः पतिकुलं प्राप्य—

शुश्रूषस्व गुरून् कुरु प्रियसखीवृत्तिं सपत्नीजने
भर्तुर्विप्रकृतापि रोषणतया मा स्म प्रतीपं गमः ।
भूयिष्ठं भव दक्षिणा परिजने भोगेष्वनुत्सेकिनी
यान्त्येवं गृहिणीपदं युवतयो वामाः कुलस्याधयः ॥ १८ ॥

कथं वा गौतमी मन्यते ?

ଅନ— ସଖୀ, ଏପରି କହ ନାହିଁ ।

ପ୍ରିୟବିଚ୍ଛେଦଦୁଃଖରେ ଚକୋରୀକୁ ରାତି ଅତ୍ୟନ୍ତ ଦୀର୍ଘ ଜଣାପଡୁଥିଲେ ମଧ୍ୟ ସେ ତାହା ଅତିବାହିତ କରି ନେଉଛି । ବିରହଦୁଃଖ ଯେତେ ତୀବ୍ର ହେଲେ ମଧ୍ୟ ମିଳନ-ଆଶାରେ ତାହାକୁ ସହ୍ୟ କରଯାଏ । ୧୬

କଣ୍ୱ— ଶାର୍ଙ୍ଗରବ, ଶକୁନ୍ତଳାକୁ ଆଗରେ ଠିଆ କରାଇ ତୁମେ ମୋ କଥା ଅନୁସାରେ ରଜାଙ୍କୁ କହିବ—

ଶାର୍ଙ୍ଗ— କଅଣ କହିବୁଁ, ଆଜ୍ଞା ଦିଅନ୍ତୁ ।

କଣ୍ୱ— କହିବ—ଆମ୍ଭେମାନେ ତପସ୍ୱୀ ଏବଂ ତୁମ୍ଭେ ସମ୍ଭ୍ରାନ୍ତବଂଶୀୟ । ଶକୁନ୍ତଳା ପ୍ରତି ତୁମର ଯେଉଁ ସ୍ନେହ ପ୍ରକଟିତ ହୋଇଛି, ତାହା ଜ୍ଞାତି-ବନ୍ଧୁମାନଙ୍କ ଅଜ୍ଞାତରେ ହୋଇଛି । ଏ ସମସ୍ତ ବିଚାର କରି ତୁମେ ଅନ୍ୟ ପତ୍ନୀମାନଙ୍କୁ ଯେଉଁ ଦୃଷ୍ଟିରେ ଦେଖୁଛ, ଏହାକୁ ମଧ୍ୟ ସେହି ଦୃଷ୍ଟିରେ ଦେଖିବ । ଏହାଠାରୁ ଅଧିକ ସ୍ନେହ ଲାଭ କରିବା ଏହାର ଭାଗ୍ୟ-ଉପରେ ନିର୍ଭର କରେ । ସେ ସମ୍ବନ୍ଧରେ ବଧୂର ସମ୍ପର୍କୀୟ-ମାନେ କିଛି କହିବା ଅନୁଚିତ । ୧୭

ଶାର୍ଙ୍ଗ— ଆପଣଙ୍କ ବାର୍ତ୍ତା ମନେ ରଖିଲି ।

କଣ୍ୱ—( ଶକୁନ୍ତଳାକୁ ) ବତ୍ସେ, ତୋତେ ମଧ୍ୟ କିଛି ବୁଝାଇବି । ଆମେ ଅରଣ୍ୟବାସୀ ହେଲେ ମଧ୍ୟ ଲୋକାଚାର ଜାଣୁଁ ।

ଶାର୍ଙ୍ଗ-- ଜ୍ଞାନୀମାନଙ୍କୁ କିଛି ଅବିଦିତ ନଥାଏ ।

କଣ୍ୱ— ବତ୍ସେ, ଏଠାରୁ ସ୍ୱାମୀଗୃହକୁ ଯାଇ--

ଗୁରୁଜନମାନଙ୍କର ସେବା କରିବୁ । ସପତ୍ନୀମାନଙ୍କ ସହିତ ପ୍ରିୟସଖୀ ଭଳି ବ୍ୟବହାର କରିବୁ । ସ୍ୱାମୀ ଅବହେଳା କଲେ ମଧ୍ୟ ତୁ ରାଗି-ଯାଇ ପ୍ରତିକୂଳ ଆଚରଣ କରିବୁ ନାହିଁ । ପରିଜନମାନଙ୍କ ପ୍ରତି ଦାକ୍ଷିଣ୍ୟ ( ଉଦାର ) ଆଚରଣ କରିବୁ । ନିଜର ସୌଭାଗ୍ୟରେ ଗର୍ବିତା ହେବୁ ନାହିଁ । ଏହି ଭଳି ଆଚରଣ କରି ଯୁବତୀମାନେ 'ଗୃହିଣୀ' ପଦବାଚ୍ୟ ହୁଅନ୍ତି । ଯେଉଁମାନେ ଏହାର ବିପରୀତ ପଥରେ ଯାଆନ୍ତି, ସେମାନେ ଗୃହର ବ୍ୟାଧି ସ୍ୱରୂପ । ୧୮

ଗୌତମୀ କଅଣ ମନେ କରୁଛନ୍ତି ?

गौत—एत्तिओ वहूजणस्स उवदेसो । जादे ! एदं खु सव्वं ओधारेहि ।
( एतावान् वधूजनस्योपदेशः । जाते ! एतत् खलु अर्थमवधारय । )

काश्य—एहि वत्से ! परिष्वजस्व मां सखीजनं च ।

शकु—ताद ! इदो एव्व किं पिअंवदामिस्साओ सहीओ णिवत्तिस्संति ? ( तात ! इत एव किं प्रियंवदामिश्राः सख्यो निवर्तिष्यन्ते ? )

काश्य—वत्से ! इमे अपि प्रदेये । न युक्तमनयोस्तत्र गन्तुम् । त्वया सह गौतमी गमिष्यति ।

शकु—( पितरमाश्लिष्य ) कहं दाणिं तादस्स अङ्कादो परिब्भट्ठा मलअपव्वदुम्मूलिआ चंदणलदा विअ देसंतरे जीविअं धारइस्सं ? ( कथमिदानीं तातस्य अङ्कात् परिभ्रष्टा मलयपर्वतोन्मूलिता चन्दनलतेव देशान्तरे जीवितं धारयिष्यामि । )

काश्य—वत्से ! किमेवं कातरासि ?

अभिजनवतो भर्तुः श्लाघ्ये स्थिता गृहिणीपदे
विभवगुरुभिः कृत्यैस्तस्य प्रतिक्षणमाकुला ।
तनयमचिरात् प्राचीवार्कं प्रसूय च पावनं
मम विरहजां वत्से ! न त्वं शुचं गणयिष्यसि ॥ १९ ॥

शकु—( पितुः पादयोः अवनम्य ) ताद ! वंदामि ( तात ! वन्दे )

काश्य—यदिच्छामि ते तदस्तु ।

शकु—( सख्यावुपेत्य ) सहीओ ! दुवे वि मं समं जेव्व परिस्सजह ।
( हला ! द्वे अपि मां सममेव परिष्वजेथाम् । )

सख्यौ—( तथा कृत्वा ) सहि ! जइ णाम सो राआ पच्चहिण्णाणमंथरो भवे तदो से इमं अत्तणामहेअअंकिअं अंगुलीअअं दंसेहि । ( सखि ! यदि नाम स राजा प्रत्यभिज्ञानमन्थरो भवेत्, ततः तस्य इमाम् आत्मनामधेयाङ्कितमङ्गुलीयकं दर्शय । )

ଗୌତ— ବଧୂମାନଙ୍କ ପ୍ରତି ଏହିଭଳି ଉପଦେଶ ଯଥାର୍ଥ ( ଶକୁନ୍ତଳାଙ୍କୁ ) ଝିଅ, ତୁ ଏହି କଥାଗୁଡିକୁ ମନେରଖିବୁ ।

କଣ୍ୱ— ବତ୍ସେ, ଆସ, ମୋତେ ଏବଂ ସଖୀମାନଙ୍କୁ ଆଲିଙ୍ଗନ କର ।

ଶକୁ— ପିତା, ପ୍ରିୟମ୍ବଦା ପ୍ରଭୃତି ସଖୀମାନେ କଅଣ ଏହିଠାରୁ ଫେରିଯିବେ ?

କଣ୍ୱ— ବତ୍ସେ, ଏ ଦୁହିଁଙ୍କୁ ମଧ୍ୟ ପ୍ରଦାନ କରିବାକୁ ହେବ । ଏମାନଙ୍କର ସେଠାକୁ ଯିବା ଉଚିତ ନୁହେଁ । ତୋ ସହିତ ଗୌତମୀ ଯିବେ ।

ଶକୁ— ( ପିତାଙ୍କୁ କୁଣ୍ଢେଇ ଧରି ) ହାୟ ! ମଳୟ ପର୍ବତରୁ ଚନ୍ଦନ ଲତାଟିଏ ଉନ୍ମୂଳିତା ହେଲ ପରି ମୁଁ ପିତାଙ୍କ କୋଳରୁ ବିଚ୍ଛିନ୍ନା ହୋଇ କିପରି ଦେଶାନ୍ତରରେ ଜୀବନ ଧାରଣ କରିବି ?

କଣ୍ୱ— ବତ୍ସେ, କାହିଁକି ଏତଳି ଅଧୀର ହେଉଛୁ ?
ତୁ ଯେତେବେଳେ ତୋ ଅଭିଜାତ ସ୍ୱାମୀଙ୍କର ସୁଗୃହିଣୀ ହୋଇ ତାଙ୍କର ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟମାନଙ୍କରେ ପ୍ରତିକ୍ଷଣ ବ୍ୟସ୍ତ ରହିବୁ ଏବଂ ପୂର୍ବଦିଗ ସୂର୍ଯ୍ୟରୂପୀ ପୁତ୍ର ପ୍ରସବ କଲ ଭଳି ତୁ ଏକ କୁଳପାବନ ପୁତ୍ର ପ୍ରସବ କରିବୁ, ସେତେବେଳେ ତୋତେ ମୋର ବିଚ୍ଛେଦ ଜନିତ ଦୁଃଖ ଆଉ ବାଧିବ ନାହିଁ । ୧୯

ଶକୁ— ( ପିତାଙ୍କ ପାଦତଳେ ପଡ଼ି ) ପିତା, ମୁଁ ଆପଣଙ୍କର ପଦବନ୍ଦନା କରୁଛି ।

କଣ୍ୱ— ମୁଁ ତୋ ପାଇଁ ଯାହା ଇଚ୍ଛା କରୁଛି, ତାହା ହେଉ ।

ଶକୁ— ( ସଖୀଦୁହିଁଙ୍କ ପାଖକୁ ଯାଇ ) ସଖୀ, ଦୁହେଁ ମୋତେ ଏକ ସଙ୍ଗରେ ଆଲିଙ୍ଗନ କର ।

ସଖୀଦ୍ୱୟ—(ଆଲିଙ୍ଗନ କରି)ସଖୀ, ସେ ରଜା ତୋତେ ଚିହ୍ନିବାରେ ଯଦି ବିଳମ୍ବ କରନ୍ତି, ତେବେ ତାଙ୍କୁ ତାଙ୍କର ଏଇ ନାମାଙ୍କିତ ମୁଦିଟି ଦେଖାଇବୁ ।

शकु—इमिणा संदेहेण वो आकंपिद म्हि । ( अनेन संदेहेन वामाकम्पितास्मि । )

सख्यौ—मा भाआहि, सिणेहो पावसंकी । ( मा भैषीः स्नेहः पापशङ्की । )

शार्ङ्ग—युगान्तरमारूढः सविता । त्वरतामत्रभवती ।

शकु—( आश्रमाभिमुखी स्थित्वा ) ताद ! कदा णु भूओ तवोवणं पेक्खिस्सं ? ( तात ! कदा नु भूयस्तपोवनं प्रेक्षिष्ये ? )

काश्य—वत्से ! श्रूयताम्—

भूत्वा चिराय चतुरन्तमहीसपत्नी
दौष्यन्तिमप्रतिरथं तनयं निवेश्य ।
भर्त्रा तदर्पितकुटुम्बभरेण सार्धं
शान्ते करिष्यसि पदं पुनराश्रमेऽस्मिन् ॥ २० ॥

गौत—जादे परिहीअदि गमनवेला । णिवत्तेहि पिदरं । अहवा चिरेण वि पुणो पुणो एसा एव्वं मंतइस्सदि । णिवत्तदु भवं । ( जाते ! परिहीयते गमनवेला । निवर्तय पितरम् । अथवा चिरेणापि पुनः पुनरेषा एवं मन्त्रयिष्यते । निवर्ततां भवान् । )

काश्य—वत्से ! उपरुध्यते तपोऽनुष्ठानम् ।

शकु—( भूयः पितरमाश्लिष्य ) तवच्चरणपीडिदं तादसरीरं । ता मा अदिमेत्तं मम किदे उक्कंठिदुं । ( तपश्चरणपीडितं तातशरीरम् । तन्मातिमात्रं मम कृते उत्कण्ठितुम् । )

काश्य—( सनिःश्वासम् )

शममेष्यति मम शोकः कथं नु वत्से ! त्वया रचितपूर्वम् ।
उटजद्वारविरूढं नीवारबलिं विलोकयतः ॥ २१ ॥

ଶକୁ— ତୁମ ଦୁହିଁଙ୍କର ଏହି କଥାରେ ମୋ ହୃଦୟ ଥରି ଉଠୁଛି ।

ସଖୀଦ୍ୱୟ—ଭୟ କର ନାହିଁ । ସ୍ନେହରୁ ଅନିଷ୍ଟ-ଆଶଙ୍କା ଜାତ ହୁଏ ।

ଶାର୍ଙ୍ଗ— ସୂର୍ଯ୍ୟ ଉଦୟ ହେବାର ଏକ ପ୍ରହର ହୋଇଗଲଣି । ଶକୁନ୍ତଳା, ଶୀଘ୍ର ଚାଲ ।

ଶକୁ— (ଆଶ୍ରମ ଆଡକୁ ଚାହିଁ) ପିତା, ମୁଁ ପୁଣି କେବେ ଏହି ତପୋବନକୁ ଦେଖିବି ?

କଣ୍ୱ— ବତ୍ସେ, ଶୁଣ —
ତୁ ଦୀର୍ଘକାଳ ସସାଗର ପୃଥିବୀର ସପତ୍ନୀ ହୋଇ, ତା'ପରେ ନିଜର ବୀର ପୁତ୍ରକୁ ରାଜପଦରେ ଅଭିଷିକ୍ତ କରି ଏବଂ ପୁତ୍ର ଉପରେ କୁଟୁମ୍ବଭର ନ୍ୟସ୍ତ କରି ତୁ ପୁଣି ସ୍ୱାମୀଙ୍କ ସହିତ ଏଇ ଶାନ୍ତ ଆଶ୍ରମ ଭୂମିରେ ପ୍ରବେଶ କରିବୁ । ୨୦

ଗୌତମୀ—ଝିଅ, ଯିବାବେଳ ଡେରି ହେଉଛି । ପିତାଙ୍କୁ ଫେରି ଯିବାକୁ କହ । (କଣ୍ୱଙ୍କୁ) ନା,ବିଳମ୍ବ ହେଉଥିଲେ ମଧ୍ୟ ଏ ଏଭଳି କହୁଥିବ । ତେଣ ଆପଣ ଫେରି ଯାଆନ୍ତୁ ।

କଣ୍ୱ— ବତ୍ସେ, ତପସ୍ୟା କାର୍ଯ୍ୟ ବିଳମ୍ବ ହେଉଛି ।

ଶକୁ— (ପୁଣି କୁଣ୍ଢେଇ ଧରି) ମୋ ପିତାଙ୍କ ଦେହ ତପସ୍ୟା କରି ଦୁର୍ବଳ । ମୋ ପାଇଁ ଆପଣ ବେଶି ଉତ୍‌କଣ୍ଠିତ ହେବେ ନାହିଁ ।

କଣ୍ୱ— ( ଦୀର୍ଘ ନିଃଶ୍ୱାସ ପକାଇ )
ବତ୍ସେ, ତୁ କୁଟୀର ଆଗରେ ଯେଉଁ ପୂଜା-ଶସ୍ୟ ପକାଇଥିଲୁ, ସେଥିରୁ ଗଛସବୁ ଉଠିଛି । ଯେ ପର୍ଯ୍ୟନ୍ତ ତାହା ମୋ ଦୃଷ୍ଟିପଥରେ ପଡୁଥିବ, ସେ ପର୍ଯ୍ୟନ୍ତ କିପରି ମୋର ଶୋକ ଉପଶମ ହେବ ? ଯାଅ, ତୋର ପଥ ମଙ୍ଗଳମୟ ହେଉ । ୨୧

गच्छ, शिवास्ते पन्थानः सन्तु। ( निष्क्रान्ता शकुन्तला सहयायिनश्च )

सख्यौ—( शकुन्तलां विलोक्य ) हद्धी हद्धी। अंतरिदा सउंदला वणराईए। ( हा धिक् हा धिक्। अन्तर्हिता शकुन्तला वनराज्यात्। )

काश्य—( सनिःश्वासम् ) अनसूये! प्रियम्वदे! गतवती वां सहधर्मचारिणी। निगृह्य शोकमनुगच्छतं मां प्रस्थितम्।

( सर्वे प्रस्थिताः )

उभे—ताद! सउंदलाविरहिदं सुण्णं विअ तवोवणं कहं पविसावो?
( तात! शकुन्तलाविरहितं शून्यमिव तपोवनं कथं प्रविशाव? )

काश्य—स्नेहप्रवृत्तिरेवंदर्शिनी। ( सविमर्शं परिक्रम्य ) हन्त भोः! शकुन्तलां पतिकुलं विसृज्य लब्धमिदानीं स्वास्थ्यम्। कुतः—

अर्थो हि कन्या परकीय एव
तामद्य संप्रेष्य परिग्रहीतुः।
जातो ममायं विशदः प्रकामं
प्रत्यर्पितन्यास इवान्तरात्मा ॥ २२ ॥

( निष्क्रान्ताः सर्वे )

॥॥ इति चतुर्थोऽङ्कः ॥॥



( ଶକୁନ୍ତଳା ଏବଂ ତାର ସହଯାତ୍ରୀମାନେ ଗ୍ଲିଲେ )

ସଖୀଦ୍ୱୟ–( ଶକୁନ୍ତଳା ଆଡକୁ ଗ୍ହିଁ ) ହାୟ ! ହାୟ ! ଶକୁନ୍ତଳା ବନ-ଭୂମିରୁ ଅଦୃଶ୍ୟ ହୋଇଗଲଣି ।

କଣ୍ୱ– (ଦୀର୍ଘଶ୍ୱାସ ପକାଇ) ଅନସୂୟା, ପ୍ରିୟମ୍ବଦା, ତୁମ୍ଭମାନଙ୍କର ସଖୀ ଗଲଣି । ଆଉ କାନ୍ଦ ନାହିଁ । ମୋ ସାଙ୍ଗରେ ତପୋବନକୁ ଫେରି ଆସ ।

( ସମସ୍ତେ ଫେରିଗଲେ )

ସଖୀଦ୍ୱୟ–ପିତା, ଶକୁନ୍ତଳା ବିନା ତପୋବନ ଶୂନ୍ୟ । ଆମେ କିପରି ସେଠାକୁ ଯିବୁଁ ?

କଣ୍ୱ– ସ୍ନେହ ବଶତଃ ଏହିପରି ଦେଖାଯାଏ । ( ବିଗ୍ରରମଗ୍ନ ଭବରେ ଯାଉଁ ଯାଉଁ ) ଯାହା ହେଉ, ଶକୁନ୍ତଳାକୁ ତା' ସ୍ୱାମୀଗୃହକୁ ପଠାଇ ମୁଁ ନିଶ୍ଚିନ୍ତ । କାରଣ,

ଯେତେହେଲେ କନ୍ୟା ହେଉଛି ପରକୀୟ ଧନ । ତାକୁ ତା' ସ୍ୱାମୀଙ୍କ ନିକଟକୁ ପଠାଇ ଦେଇ ମୁଁ ନିଶ୍ଚିନ୍ତ ହୋଇଛି । ଯେଉଁ ବହୁମୂଲ୍ୟ ଧନ ମୋ ଦାୟିତ୍ୱରେ ଥିଲ, ମୁଁ ତାକୁ ତାହାର ଅଧିକାରୀଙ୍କୁ ପ୍ରତ୍ୟର୍ପଣ କରି ଦେଇଛି । ୨୨

( ସମସ୍ତଙ୍କର ପ୍ରସ୍ଥାନ )

।। ଚତୁର୍ଥ ଅଙ୍କ ସମାପ୍ତ ।।



# पञ्चमोऽङ्कः

[ ततः प्रविशति आसनस्थो राजा विदूषकश्च ]

विदू—( कर्णं दत्त्वा ) भो वअस्स ! संगीदसालंतरे अवधाणं देहि। लअविशुद्धाए गीदीए सरसंजोओ सुणीअदि। जाणे तत्तहोदी हंसवदिआ वण्णपरिअअं करेदि त्ति। ( भो वयस्य ! संगीतशालान्तरे अवधानं देहि। लयविशुद्धाया गीतेः स्वरसंयोगः श्रूयते। जाने तत्रभवती हंसपादिका वर्णपरिचयं करोतीति। )

राजा—तूष्णीं भव यावदाकर्णयामि। ( आकाशे गीयते )

अहिणव-महु-लोलुवो भवं तह परिचुंबिअ चूअमंजरिं।
कमलवसइमेत्तणिव्वुदो महुअर ! विम्हरिओ सि णं कहं ॥ १ ॥
( अभिनवमधुलोलुपस्त्वं तथा परिचुम्ब्य चूतमञ्जरीम् ।
कमलवसतिमात्रनिर्वृतो मधुकर विस्मृतोऽसि एनां कथम् ॥ )

राजा—अहो रागपरिवाहिणी गीतिः।

विदू—किं दाव गीदीए अवगओ अक्खरत्थो ?
( किं तावत् गीतेरवगतः अक्षरार्थः ? )

राजा—( स्मितं कृत्वा ) सकृत् कृतप्रणयोऽयं जनः। तस्याः देवीं वसुमतीमन्तरेण महदुपालम्भमवगतोऽस्मि। सखे ! माधव्य ! मद्वचनादुच्यतां हंसपदिका 'निपुणमुपालब्धोऽस्मीति।

विदू—जं भवं आणवेदि ( उत्थाय ) भो वअस्स ! गहीदस्स ताए परकीएहिं हत्थेहिं सिहण्डए ताडीअमाणस्स अच्छराए वीदराअस्स विअ णत्थि दाणिं मे मोक्खो। ( यद् भवान् आज्ञापयति ( उत्थाय ) भो वयस्य ! गृहीतस्य तया परकीयैः हस्तैः शिखण्डके ताड्यमानस्य अप्सरसां वीतरागस्येव नास्ति इदानीं मे मोक्षः। )

राजा—गच्छ, नागरकवृत्त्या संज्ञापय एनाम्।

विदू—का गई ? ( का गतिः ? ) ( निष्क्रान्तः )

## ପଞ୍ଚମ ଅଙ୍କ

( ଆସନରେ ଉପବିଷ୍ଟ ରଜା ଏବଂ ବିଦୂଷକଙ୍କର ପ୍ରବେଶ )

ବିଦୂ– ( କାନ ଡେରି ) ମିତ୍ର, ସଙ୍ଗୀତଶାଳା ଆଡକୁ ଟିକିଏ ଦୃଷ୍ଟି ଦିଅନ୍ତୁ, କିପରି ଲୟ-ମଧୁର ସଙ୍ଗୀତର ସ୍ୱର ଶୁଣାଯାଉଛି ! ବୋଧହୁଏ ରାଣୀ ହଂସପଦିକା ସ୍ୱରସାଧନା କରୁଛନ୍ତି ।

ରଜା– ନୀରବ ରୁହ, ଶୁଣିବା ।

( ଗୀତ ଶୁଭିଲା )

ଭ୍ରମର, ତୁ ଯେ ନିତି ନୂଆ ମଧୁ ଚାଖିବାରେ ବଡ ଚତୁର ।
ଚୂତମଂଜରୀଟି ଫୁଟି ତା ମହକ ଛୁଟାଏ
ତାକୁ ଚୁମ୍ବନ କଲୁ ତୁ ଥରଟିଏ,
କମଳ ବନରେ ସଂତୋଷ ଲଭିଲୁ
ଭୁଲି ତାକୁ ଏଡ଼େ ସତ୍ୱର ! ୧

ରଜା– ଆହା, ଗୀତଟି କି ଅନୁରାଗଭରା !

ବିଦୂ - ଗୀତର ଅର୍ଥ କଅଣ ବୁଝିଲ ?

ରଜା- ( ମୃଦୁ ହସି ) ରାଣୀ ହଂସପଦିକାଙ୍କ ସହିତ ମୁଁ ଥରେ ମାତ୍ର ପ୍ରଣୟ କରିଛି । ରାଣୀ ବସୁମତୀଙ୍କୁ ଲକ୍ଷ୍ୟ କରି ଏହି ଗୀତରେ ମୋତେ ତିରସ୍କାର କରାଯାଇଛି । ମିତ୍ର ମାଧବ୍ୟ, ତୁମେ ଯାଇ ରାଣୀ ହଂସପଦିକାଙ୍କୁ ମୋ କଥାନୁସାରେ କୁହ ଯେ, ସେ ମୋତେ ବଡ଼ କୌଶଳରେ ତିରସ୍କାର କରିଛନ୍ତି ।

ବିଦୂ-- ଆପଣଙ୍କର ଯାହା ଆଜ୍ଞା । ( ଉଠି ) ବନ୍ଧୁ, ତାଙ୍କ ଦାସୀମାନେ ଯଦି ମୋତେ ଚୁଟି ଧରି ବାଡେଇବେ, ତେବେ ଅପ୍‌ସରା ହାତରୁ ଅନାସକ୍ତ ଲୋକ ମୁକ୍ତି ପାଇବା ଯେପରି ସହଜ ହୁଏ ନାହିଁ, ସେମାନଙ୍କ ହାତରୁ ମୁଁ ସେହିପରି ମୁକ୍ତି ପାଇପାରିବି ନାହିଁ ।

ରଜା-- ଯାଅ, ତାଙ୍କୁ ରସିକତାର ସହିତ ଡାକ ।

ବିଦୂ- ଆଉ ଉପାୟ କଅଣ ? ( ଚାଲିଗଲେ )

राजा—( आत्मगतम् ) किं नु खलु गीतमेवंविधमाकर्ण्य इष्टजनविरहादृतेऽपि बलवदुत्कण्ठितोऽस्मि । अथवा—

रम्याणि वीक्ष्य मधुरांश्च निशम्य शब्दान्
पर्युत्सुकीभवति यत्सुखितोऽपि जन्तुः ।
तच्चेतसा स्मरति नूनमबोधपूर्वं
भावस्थिराणि जननान्तरसौहृदानि ॥ २ ॥

( पर्याकुलस्तिष्ठति )

कञ्चु—( प्रविश्य ) अहो नु खल्वीदृशीमवस्थां प्रतिपन्नोऽस्मि ।

आचार इत्यवहितेन मया गृहीता
या वेत्रयष्टिरवरोधगृहेषु राज्ञः ।
काले गते बहुतिथे मम सैव जाता
प्रस्थानविक्लवगतेरवलम्बनार्था ॥ ३ ॥

भोः ! कामं धर्मकार्यमनतिपात्यं देवस्य, तथापीदानीमेव धर्मासनादुत्थिताय पुनरुपरोधकारि कण्वशिष्यागमनमस्मै नोत्सहे निवेदयितुम् । अथवा अविश्रमोऽयं लोकतन्त्राधिकारः । कुतः—

भानुः सकृद् युक्ततुरङ्ग एव रात्रिन्दिवं गन्धवहः प्रयाति ।
शेषः सदैवाहितभूमिभारः षष्ठांशवृत्तेरपि धर्म एषः ॥ ४ ॥

यावन्नियोगमनुतिष्ठामि । (परिक्रम्यावलोक्य च) एष देवः—

प्रजाः प्रजाः स्वा इव तन्त्रयित्वा
निषेवते शान्तमना विविक्तम् ।
यूथानि संचार्य रविप्रतप्तः
शीतं दिवा स्थानमिव द्विपेन्द्रः ॥ ५ ॥

ରଜା— (ସ୍ୱଗତ) ବର୍ତ୍ତମାନ ତ କୌଣସି ପ୍ରିୟ ବ୍ୟକ୍ତିଠାରୁ ବିଚ୍ଛେଦ ଘଟିଥିବାର ଦୁଃଖ ନାହିଁ ! ତଥାପି ଏ ଗୀତ ଶୁଣି ମୁଁ କାହିଁକି ବଡ ଉତ୍କଣ୍ଠା ଅନୁଭବ କରୁଛି ! ହୋଇପାରେ—

ଯେତେବେଳେ ସୁଖୀ ବ୍ୟକ୍ତି ମଧ୍ୟ ରମଣୀୟ ଦୃଶ୍ୟ ଦେଖି କିମ୍ବା ମଧୁର ଶବ୍ଦ ଶୁଣି ଉତ୍କଣ୍ଠିତ ହୋଇଉଠେ, ସେତେବେଳେ ସେ ବୋଧହୁଏ ହୃଦୟ ଭିତରେ ଅଙ୍କିତ ରହିଥିବା ପୂର୍ବଜନ୍ମର କୌଣସି ସ୍ନେହ ମମତାର ସମ୍ବନ୍ଧ ସ୍ମରଣ କରୁଥାଏ ; ମାତ୍ର କିଛି ବୁଝି ପାରୁନ ଥାଏ । ୨ ।।

( ଉତ୍କଣ୍ଠିତ ଅବସ୍ଥାରେ ଥାଆନ୍ତି )

କଞ୍ଚୁକୀ— (ପ୍ରବେଶ କରି) ଓହୋ ! ମୋର ଅବସ୍ଥା ଆସି ଏଭଳି ହୋଇଗଲଣି !

ରଜ-ଅନ୍ତଃପୁରରେ କଞ୍ଚୁକୀକୁ ବେତବାଡ଼ି ଧରିବାକୁ ପଡେ, ଏଇ ଆଗ୍ରହ ହେତୁ ମୁଁ ଏଠାରେ ଯେଉଁ ବେତ ଖଣ୍ଡିକ ସାବଧାନତାର ସହିତ ଗ୍ରହଣ କରିଥିଲି,ସେ ଖଣ୍ଡିକ ବର୍ତ୍ତମାନ ମୋର ଯିବା ଆସିବାର ଅବଲମ୍ବନ ହୋଇଗଲଣି । କାରଣ, ଏଥି ମଧ୍ୟରେ ବହୁକାଳ ବିତିଯାଇଛି ଏବଂ ବାର୍ଦ୍ଧକ୍ୟ ଯୋଗୁ ଆଜି ମୋତେ ଥରି ଥରି ଯିବା ଆସିବା କରିବାକୁ ପଡୁଛି । ୩

ଆହେ ! ରଜ୍ୟର ସମସ୍ତ କାର୍ଯ୍ୟ ବୁଝିବା ରଜାଙ୍କର କର୍ତ୍ତବ୍ୟ, ଏହା ଠିକ୍ । ତଥାପି ମହାରଜ ଏହିକ୍ଷଣି ଧର୍ମ-ଆସନରୁ ଉଠି ଆସିଛନ୍ତି । କଣ୍ୱଙ୍କ ଶିଷ୍ୟମାନେ ଆସିଛନ୍ତି ବୋଲି ଶୁଣାଇ ପୁଣି ତାଙ୍କ ବିଶ୍ରାମରେ ବାଧା ଦେବାକୁ ଇଚ୍ଛା ହେଉନାହିଁ । ହଁ, ଲୋକତନ୍ତ୍ର-କ୍ଷମତାରେ ବିଶ୍ରାମ ବା କାହିଁ ?

ସୂର୍ଯ୍ୟ ଥରେ ମାତ୍ର ଅଶ୍ୱ ଯୋଚି ସର୍ବଦା ପରିଭ୍ରମଣ କରୁଛନ୍ତି । ବାୟୁ ଦିନରାତି ବହୁଛି । ଶେଷନାଗ ସର୍ବଦା ପୃଥିବୀର ଭର ବହନ କରି ରହିନ୍ତି । ଷଷ୍ଠାଂଶଜୀବୀର (ରାଜାର) ଧର୍ମ ମଧ୍ୟ ଏହିଭଳି । ୪

ଯାଉଛି, ଦାୟିତ୍ୱ ନିର୍ବାହ କରିବି । ( କିଛିବାଟ ଯାଇ ଓ ନିରୀକ୍ଷଣ କରି ) ଏହି ତ ମହାରଜ । ଯେପରି ଯୂଥପତି ହସ୍ତୀ ହସ୍ତୀଯୂଥକୁ ଦିନସାରା ପରିଚାଳିତ କରି ଖରାରେ କ୍ଳାନ୍ତ ହୋଇପଡେ ଏବଂ ଶୀତଳ ସ୍ଥାନରେ ବିଶ୍ରାମ ନିଏ, ମହାରଜ ସେହିପରି ପ୍ରଜାମାନଙ୍କୁ ସନ୍ତାନସନ୍ତତି ପରି ପାଳନ କରି କରି ଶ୍ରାନ୍ତ ହୋଇ ଏକାକୀ ବିଶ୍ରାମ ନେଇଛନ୍ତି । ୫

(उपगम्य) जयतु जयतु देवः। एते खलु हिमगिरेरुपत्यकारण्य-वासिनः काश्यपसंदेशमादाय सस्त्रीकास्तपस्विनः संप्राप्ताः। श्रुत्वा देवः प्रमाणम्।

राजा—( सादरम् ) किं काश्यपसंदेशहारिणः ?

कञ्चु—अथ किम् ?

राजा—तेन हि मद्वचनाद् विज्ञाप्यतामुपाध्यायः सोमरातः—अमूनाश्रमवासिनः श्रौतेन विधिना सत्कृत्य, स्वयमेव प्रवेशयितुमर्हति-इति। अहमप्यत्र तपस्विदर्शनोचिते प्रदेशे स्थितः प्रतिपालयामि।

कञ्चु—यदाज्ञापयति देवः। ( निष्क्रान्तः )

राजा—( उत्थाय ) वेत्रवति! अग्निशरणमार्गमादेशय।

प्रती—इदो इदो देवो। ( इत इतो देवः। )

राजा—( परिक्रामति, अधिकारखेदं निरूप्य ) सर्वः प्रार्थितमर्थमधिगम्य सुखी संपद्यते जन्तुः। राज्ञां तु चरितार्थता दुःखान्तरैव।

औत्सुक्यमात्रमवसाययति प्रतिष्ठा
क्लिश्नाति लब्धपरिपालनवृत्तिरेनम्।
नातिश्रमापनयनाय यथा श्रमाय
राज्यं स्वहस्तधृतदण्डमिवातपत्रम्॥ ६॥

( नेपथ्ये वैतालिकौ )

विजयतां देवः।

प्रथमः— स्वसुखनिरभिलाषः खिद्यसे लोकहेतोः
प्रतिदिनमथवा ते वृत्तिरेवंविधैव।

(ନିକଟକୁ ଯାଇ) ମହାରାଜାଙ୍କର ଜୟ ହେଉ । ହିମାଳୟ-ଉପତ୍ୟକା-ଅରଣ୍ୟ-ନିବାସୀ କେତେକ ତପସ୍ୱୀ ମହର୍ଷି କଣ୍ୱଙ୍କର ବାର୍ତ୍ତା ଘେନି ସସ୍ତ୍ରୀକ ଆସିଛନ୍ତି । ଏହା ଶୁଣି ମଣିମାଙ୍କର ଯାହା କର୍ତ୍ତବ୍ୟ, ତାହା କରନ୍ତୁ ।

ରାଜା— ( ଆଦର ସହିତ ) କ'ଣ କଣ୍ୱଙ୍କ ପାଖରୁ ସମ୍ବାଦ ଘେନି ଆସିଛନ୍ତି ?

କଞ୍ଚୁକୀ— ହଁ ।

ରାଜା— ତାହା ହେଲେ ମୋର କଥାନୁସାରେ ଉପାଧ୍ୟାୟ ସୋମରତଙ୍କୁ କୁହ, ସେ ବିଧି ଅନୁଯାୟୀ ଆଶ୍ରମବାସୀମାନଙ୍କର ଅଭ୍ୟର୍ଥନା କରି ନିଜେ ପ୍ରବେଶ କରନ୍ତୁ । ମୁଁ ମଧ୍ୟ ତପସ୍ୱୀମାନଙ୍କ ସହିତ ସାକ୍ଷାତ୍ କରିବାର ଉପଯୁକ୍ତ ସ୍ଥାନରେ ରହି ଅପେକ୍ଷା କରୁଛି ।

କଞ୍ଚୁକୀ—ଯଥାଜ୍ଞା ମଣିମା । ( ଚାଲିଗଲେ )

ରାଜା— ବେତ୍ରବତୀ, ଯଜ୍ଞଶାଳକୁ ଚାଲ ।

ପ୍ରତିହାରୀ—ଏଣେ ଆସନ୍ତୁ ମହାରାଜ !

ରାଜା— ( ଚାଲିଚାଲି, ରାଜ୍ୟ ପାଳନ-କ୍ଲେଶ ଅନୁଭବ କରି ) ସମସ୍ତେ ନିଜ ନିଜର ଅଭିଳଷିତ ପଦାର୍ଥ ପାଇ ସୁଖୀ ହୁଅନ୍ତି ; କିନ୍ତୁ ରାଜାଙ୍କର ଅଭିଳାଷ ପୂର୍ଣ୍ଣ ହେଲା ପରେ ଦୁଃଖ ଦିଏ ।
ରାଜପଦରେ ପ୍ରତିଷ୍ଠା ରାଜାଙ୍କର କେବଳ ଉତ୍ସୁକତାର ଅବସାନ କରେ । ଲବ୍ଧ ରାଜ୍ୟକୁ ପାଳନ କରିବା ତାଙ୍କୁ କଷ୍ଟ ଦିଏ । ଯେପରି ସ୍ୱହସ୍ତଧୃତ ଛତ୍ର ଯେତିକି ଶ୍ରମ ଦୂର କରେ, ତାଠାରୁ ଅଧିକ ଶ୍ରମ ଦିଏ, ରାଜପଦ ଠିକ ସେହିପରି ।)

( ନେପଥ୍ୟେ )

ସ୍ତୁତିପାଠକ ଦ୍ୱୟ—ମହାରାଜାଙ୍କର ଜୟ ହେଉ ।

୧ମ ସ୍ତୁତିପାଠକ—

ଆହେ ନରପତି, ନିଜ ସୁଖ ତେଜି
ସାଧୁଛ ସଂସାର କର୍ମ,
ପ୍ରଜା ଜନ ହିତେ ଦୁଃଖ ବରିନେବା
ରାଜାର ପରମ ଧର୍ମ ।

अनुभवति हि मूर्ध्ना पादपस्तीव्रमुष्णं
शमयति परितापं छायया संश्रितानाम् ॥ ७ ॥

द्वितीयः— नियमयसि विमार्गप्रस्थितानात्तदण्डः
प्रशमयसि विवादं कल्पसे रक्षणाय ।
अतनुषु विभवेषु ज्ञातयः सन्तु नाम
त्वयि तु परिसमाप्तं बन्धुकृत्यं प्रजानाम् ॥ ८ ॥

राजा—एते क्लान्तमनसः पुनर्नवीकृताः स्मः । ( परिक्रामति )

प्रती—एसो अहिणवसम्मज्जणसस्सिरीओ सण्णिहिदहोमधेणू अग्गि-सरणालिंदो । आरुहदु देवो । ( एष अभिनवसंमार्जनसश्रीकः संनिहितहोमधेनुरग्निशरणालिन्दः । आरोहतु देवः । )

राजा—( आरुह्य परिजनांसावलम्बी तिष्ठति ) वेत्रवति ! किमुद्दिश्य भगवता काश्यपेन मत्सकाशमृषयः प्रेषिताः स्युः ?

किं तावद् व्रतिनामुपोढतपसां विघ्नैस्तपो दूषितं
धर्मारण्यचरेषु केनचिदुत प्राणिष्वसच्चेष्टितम् ।
आहोस्वित् प्रसवो ममापचरितैर्विष्टम्भितो वीरुधा-
मित्यारूढबहुप्रतर्कमपरिच्छेदाकुलं मे मनः ॥ ९ ॥

प्रती—सुचरिदणंदिणो इसीओ देवं सभाजइदुं आअदेत्ति तक्केमि । (सुचरितनन्दिन ऋषयो देवं सभाजयितुमागता इति तर्कयामि । )

( ततः प्रविशन्ति गौतमीसहितौ शकुन्तलां पुरस्कृत्य कण्वशिष्यौ पुरश्च कञ्चुकी पुरोहितश्च )

कञ्चु—इत इतो भवन्तः ।

( शार्ङ्गरव-शारद्वतौ परस्परम् )

ଦାରୁଣ ନିଦାଘେ ପାଦପ ମସ୍ତକେ
ସହଇ ତାପ ପ୍ରଖର,
ମାତର ଶୀତଳ ଛାୟା ଦାନ କରି
ଦୁଃଖ ହରେ ପଥିକର । ୭

୨ୟ ସ୍ତୁତିପାଠକ—

ବିପଥେ ଯେ ଜନ ଗମଇ ତାଙ୍କୁ ଦେଇଣ ଦଣ୍ଡ,
ଦମନ କରୁଛ ନୃପତି, ତବ ଶକ୍ତି ଅଖଣ୍ଡ ।
ତୁଟାଉଛ ବ ଦ ବିବାଦ ବସି ନ୍ୟାୟ ଆସନେ,
ଶାନ୍ତି ସୁଖେ ରହି ଅଛନ୍ତି ପ୍ରଜା ତବ ଶାସନେ ।
ଜ୍ଞାତି ବନ୍ଧୁ ପଛେ ମିଳନ୍ତୁ ସୁଖ ସଂପତ୍ତି ବେଳେ,
ପ୍ରଜାଙ୍କ ପ୍ରକୃତ ବନ୍ଧୁ ତ ତୁମେ ସକଳ କାଳେ । ୮

ରଜା— ମୁଁ କ୍ଳାନ୍ତ ହୋଇ ପଡ଼ିଥିଲେ ସୁଦ୍ଧା ଏମାନଙ୍କର କଥା ଶୁଣି ପୁର୍ଣ ଉତ୍ସାହ ବୋଧ କରୁଛି । ( ଯିବାକୁ ଲଗିଲେ )

ପ୍ରତିହାରୀ—ମହାରଜ, ଏହି ଯଜ୍ଞଶାଳର ଅଳିନ୍ଦ । ବର୍ତ୍ତମାନ ପରିଷ୍କାର କରାଯ ଇଥିବାରୁ ଏହା ଅତ୍ୟନ୍ତ ସୁନ୍ଦର ଦେଖାଯାଉଛି । ଏହାର ସମ୍ମୁଖ ଭଗରେ ଅଛି ହୋମଧେନୁ । ଆପଣ ଆରୋହଣ କରନ୍ତୁ ।

ରଜା— ( ଆରୋହଣ କରି ପରିଜନଙ୍କ କାନ୍ଧରେ ଭର ଦେଇ ଠିଆ ହେଲେ । ) ବେତ୍ରବତୀ, ଭଗବାନ୍ କଣ୍ୱ କି ଉଦ୍ଦେଶ୍ୟରେ ମୋ ନିକଟକୁ ଋଷିମାନଙ୍କୁ ପଠାଇଛନ୍ତି ? ତପସ୍ୱୀ ମୁନିମାନଙ୍କ ତପସ୍ୟାରେ କଅଣ ବିଘ୍ନ ପଡୁଛି ? କିମ୍ବା କେହି ତପୋବନବାସୀମାନଙ୍କ ପ୍ରତି ଦୁଷ୍ଟ ଆଚରଣ କରୁଛି ? ଅଥବା ମୋର କୌଣସି ପାପ ହେତୁ ବୃକ୍ଷଲତାରେ ଫଳପୁଷ୍ପ ଉତ୍ପନ୍ନ ହେଉନାହିଁ ? ଏହିପରି ନାନା ପ୍ରକାର ସମ୍ଭାବନାରେ କିଛି ନିଶ୍ଚୟ କରି ନପାରି ମନ ବଡ ଅସ୍ଥିର ହୋଇଉଠୁଛି । ୯

ପ୍ରତିହାରୀ—ମୋର ମନେହେଉଛି, ଆପଣଙ୍କ ସୁଚରିତରେ ପ୍ରୀତ ହୋଇ ଋଷିମାନେ ଅଭିନନ୍ଦନ ଜଣାଇବାକୁ ଆସିଛନ୍ତି ।

( ତାହାପରେ ଗୌତମୀଙ୍କ ସହିତ କଣ୍ୱଙ୍କର ଶିଷ୍ୟଦ୍ୱୟ ପ୍ରବେଶ କଲେ । ସେମାନଙ୍କ ଆଗରେ ଶକୁନ୍ତଳା ଏବଂ ସମସ୍ତଙ୍କ ଆଗରେ ଥିଲେ କଞ୍ଚୁକୀ ଏବଂ ପୁରୋହିତ । )

କଞ୍ଚୁକୀ—ଆପଣମାନେ ଆସନ୍ତୁ ।

( ଶାର୍ଙ୍ଗରବ ଓ ଶାରଦ୍ୱତ ପରସ୍ପର କଥା ହେଲେ )

शार्ङ्ग—शारद्वत !

महाभागः कामं नरपतिरभिन्नस्थितिरहो
न कश्चिद् वर्णानामपथमपकृष्टोऽपि भजते ।
तथापीदं शश्वत् परिचितविविक्तेन मनसा
जनाकीर्णं मन्ये हुतवहपरीतं गृहमिव ॥ १० ॥

शार—जाने भवान् पुरप्रवेशादित्थंभूतः संवृत्तः । अहमपि—

अभ्यक्तमिव स्नातः शुचिरशुचिमिव प्रबुद्ध इव सुप्तम् ।
बद्धमिव स्वैरगतिर्जनमिह सुखसङ्गिनमवैमि ॥ ११ ॥

शकु—( अनिमित्तं सूचयित्वा ) अम्महे, किं मे वामेदरं णअणं विप्फुरदि ? ( अहो, किं मे वामेतरं नयनं विस्फुरति ? )

गौत—जादे ! पडिहदं अमंगलं । सुहाइं दे भत्तुकुलदेवदाओ वितरंदु । ( जाते ! प्रतिहतममङ्गलम् । सुखानि ते भर्तृकुल-देवता वितरन्तु । )

पुरो—( राजानं निर्दिश्य ) भो भोस्तपस्विनः ! असावत्रभवान् वर्णाश्रमाणां रक्षिता प्रागेव मुक्तासनो वः प्रतिपालयति । पश्यतैनम् ।

शार्ङ्ग—काममेतदभिनन्दनीयं तथापि वयमत्र मध्यस्थाः । कुतः—

भवन्ति नम्रास्तरवः फलोद्गमै-
र्नवाम्बुभिर्दूरविलम्बिनो घनाः ।
अनुद्धताः सत्पुरुषाः समृद्धिभिः
स्वभाव एवैष परोपकारिणाम् ॥ १२ ॥

प्रती—देव ! पसण्णमुहवण्णा दीसंति । जाणामि विसद्धकाज्जा इसोओ । ( देव ! प्रसन्नमुखवर्णा दृश्यन्ते । जानामि विस्रब्ध-कार्या ऋषयः । )

ଶାର୍ଙ୍ଗ– ଶାରଦ୍‌ବତ,

ମହାଭାଗ ଦୁଷ୍ୟନ୍ତ ଧର୍ମରେ ରାଜ୍ୟ ଶାସନ କରୁଛନ୍ତି । ଏହାଙ୍କ ରାଜ୍ୟରେ ନୀଚ ବର୍ଣ୍ଣର କୌଣସି ବ୍ୟକ୍ତି ମଧ୍ୟ କୁପଥଗାମୀ ନୁହେଁ । ତଥାପି ଏ ଜନାକୀର୍ଣ୍ଣ ନଗର ମୋତେ ଅଗ୍ନିବେଷ୍ଟିତ ଗୃହଭଳି ଜଣାପଡୁଛି । ଯେହେତୁ, ମୁଁ ସର୍ବଦା ନିର୍ଜନତା ସହିତ ପରିଚିତ । ୧୦

ଶାରଦ୍‌ବତ–ମୁଁ ଜାଣୁଛି, ଆପଣ ନଗରରେ ପ୍ରବେଶ କରିଥିବା ହେତୁ ଏଭଳି ମନେ କରୁଛନ୍ତି । ମୁଁ ମଧ୍ୟ—

ସ୍ନାନ କରିଥିବା ବ୍ୟକ୍ତି ତୈଳ ଲଗାଇଥିବା ବ୍ୟକ୍ତିକୁ, ପବିତ୍ର ବ୍ୟକ୍ତି ଅପବିତ୍ରକୁ, ଜାଗ୍ରତ ବ୍ୟକ୍ତି ନିଦ୍ରିତକୁ ଏବଂ ସ୍ୱଚ୍ଛନ୍ଦବିହାରୀ ବ୍ୟକ୍ତି ଆବଦ୍ଧକୁ ଦେଖି ଯେଭଳି ବୋଧ କରେ, ମୁଁ ଏହି ସଂସାରାସକ୍ତ ବ୍ୟକ୍ତିମାନଙ୍କୁ ଦେଖି ସେହିଭଳି ବୋଧ କରୁଛି । ୧୧

ଶକୁ– ( ଅଶୁଭ ଲକ୍ଷଣର ସୂଚନା ଦେଇ ) ଏ କଅଣ ! ମୋର ଦକ୍ଷିଣ ଚକ୍ଷୁ କାହିଁକି ଘନ ଘନ ସ୍ଫୁରୁଛି !

ଗୌତ– ଝିଅ, ତୋର ଅମଙ୍ଗଳ ଦୂର ହେଉ । ସ୍ୱାମୀକୁଳର ଦେବତାମାନେ ତୋତେ ସୁଖ ଦାନ କରନ୍ତୁ ।

ପୁରୋ– ( ରାଜାଙ୍କୁ ଦେଖାଇ ଦେଇ ) ହେ ତପସ୍ୱୀଗଣ, ଦେଖନ୍ତୁ, ସମସ୍ତ ବର୍ଣ୍ଣାଶ୍ରମର ରକ୍ଷକ ମହାରାଜ ଦୁଷ୍ୟନ୍ତ ପୂର୍ବରୁ ଆସନ ପରିତ୍ୟାଗ କରି ଆପଣମାନଙ୍କ ପ୍ରତୀକ୍ଷାରେ ଅଛନ୍ତି ।

ଶାର୍ଙ୍ଗ– ପ୍ରକୃତରେ ଏହା ପ୍ରଶଂସାର କଥା ; ତଥାପି ଆମ୍ଭେମାନେ ଏଥିରେ ଆଶ୍ଚର୍ଯ୍ୟ ବୋଧ କରୁନାହୁଁ । କାରଣ—

ଫଳଜାତ ହେଲେ ବୃକ୍ଷମାନେ ନଇଁ ଆସନ୍ତି । ନୂତନ ଜଳକଣାରେ ପୂର୍ଣ୍ଣ ହେଲେ ମେଘମାନେ ତଳକୁ ନଇଁ ଆସନ୍ତି । ସେହିପରି, ଐଶ୍ୱର୍ଯ୍ୟରେ ସଜ୍ଜନମାନେ ବିନମ୍ର ହୁଅନ୍ତି । ପରୋପକାରୀମାନଙ୍କର ଏହା ହିଁ ସ୍ୱଭାବ । ୧୨

ପ୍ରତୀ– ମହିମା, ଋଷିମାନଙ୍କ ମୁଖରୁ ଜଣାପଡୁଛି ଯେ, ସେମାନେ ପ୍ରସନ୍ନ ଅଛନ୍ତି । ସେମାନଙ୍କ କାର୍ଯ୍ୟରେ କିଛି ବିଘ୍ନ ନାହିଁ ।

राजा—( शकुन्तलां दृष्ट्वा ) अथात्रभवती—

> का स्विदवगुण्ठनवती नातिपरिस्फुटशरीरलावण्या ।
> मध्ये तपोधनानां किसलयमिव पाण्डुपत्राणाम् ॥ १३ ॥

प्रती—देव ! कुतूहलगब्भोपहिदो ण मे तक्को पसरदि । णं दंसणीआ उण से अकिदी लक्खीअदि । ( देव ! कुतूहलगर्भोपहितो न मे तर्कः प्रसरति । ननु दर्शनीया पुनरस्या आकृतिर्लक्ष्यते । )

राजा—भवतु, अनिर्वर्णनीयं परकलत्रम् ।

शकु—( हस्तमुरसि कृत्वा, आत्मगतम् ) हिअअ ! किं एव्वं वेवसि ? अज्जउत्तस्स भाववंधं ओहारिअ धीरं दाव होहि । ( हृदय ! किमेवं वेपसे ? आर्यपुत्रस्य भावबन्धमवधार्य धीरं तावद् भव । )

पुरो—( पुरो गत्वा ) एते विधिवदर्चितास्तपस्विनः । कश्चिदेषामुपाध्यायसंदेशः । तं देवः श्रोतुमर्हति ।

राजा—अवहितोऽस्मि ।

शिष्यौ—( हस्तानुद्यम्य ) स्वस्ति भवते ।

राजा—अभिवादये वः ।

शिष्यौ—इष्टेन युज्यस्व ।

राजा—अपि निर्विघ्नतपसो मुनयः ?

शिष्यौ— कुतो धर्मक्रियाविघ्नः सतां रक्षितरि त्वयि ।
तमस्तपति घर्मांशौ कथमाविर्भविष्यति ? ॥ १४ ॥

राजा—( आत्मगतम् ) अर्थवान् खलु मे राजशब्दः । ( प्रकाशम् ) अथ भगवाँल्लोकानुग्रहाय कुशली काश्यपः ?

शिष्यौ—स्वाधीनकुशलाः सिद्धिमन्तः । स भवन्तमनामयप्रश्नपूर्वकमिदमाह ।

राजा—किमाज्ञापयति भगवान् ?

ରଜା– ( ଶକୁନ୍ତଳାଙ୍କୁ ଚାହିଁ ) ଏ ଅବଗୁଣ୍ଠନବତୀ ଯୁବତୀଟି କିଏ ? ଏହାର ଶରୀରଲାବଣ୍ୟ ପରିସ୍ଫୁଟ ଭାବରେ ଦିଶୁନାହିଁ । ପାଚିଲା ପତ୍ରଗୁଡ଼ିକ ମଧ୍ୟରେ ନବପଲ୍ଲବଟିଏ ଯେପରି ଦେଖାଯାଏ, ଋଷି-ମାନଙ୍କ ମଧ୍ୟରେ ଏ ସେହିପରି ଦେଖାଯାଉଛି । ୧୩

ପ୍ରତି– ମହାରଜ, କୌତୁହଳରେ ମୁଁ ମଧ୍ୟ କିଛି ଭାବିପାରୁ ନାହିଁ । ତେବେ ଜଣାପଡୁଛି, ଏହାର ରୂପ ଅତ୍ୟନ୍ତ ରମଣୀୟ ।

ରଜା– ହେଉ, ପର ସ୍ତ୍ରୀ ପ୍ରତି ଦୃଷ୍ଟିପାତ କରିବା ଅନୁଚିତ ।

ଶକୁ– (ଛାତିଉପରେ ହାତ ରଖି ସ୍ୱଗତ) ହୃଦୟ;ତୁ ଏପରି କଂପିତ ହୋଇ-ଉଠୁଛୁ କାହିଁକି ? ଆର୍ଯ୍ୟପୁତ୍ରଙ୍କ ଅନୁରଗ ସ୍ମରଣ କରି ସ୍ଥିର ହୁଅ ।

ପୁରେ– ( ଆଗକୁ ଯାଇ ) ମହାରଜ, ଏହି ତପସ୍ୱୀମାନଙ୍କର ଯଥାବିଧି ଅଭ୍ୟର୍ଥନା କରଯାଇଛି । ଏମାନଙ୍କର ଗୁରୁ କୌଣସି ବାର୍ତ୍ତା ପ୍ରେରଣ କରିଛନ୍ତି ; ଆପଣ ତାହା ଶୁଣିବା ହୁଅନ୍ତୁ ।

ରଜା– ମନଯୋଗୀ ହେଲି ।

ଶିଷ୍ୟଦ୍ୱୟ–( ହସ୍ତ ଉତ୍ତୋଳନ କରି ) ଆପଣଙ୍କର ମଙ୍ଗଳ ହେଉ ।

ରଜା– ଆପଣମାନଙ୍କୁ ମୁଁ ଅଭିବାଦନ ଜଣାଉଛି ।

ଶିଷ୍ୟଦ୍ୱୟ–-ଆପଣଙ୍କର ମନସ୍କାମନା ପୂର୍ଣ୍ଣ ହେଉ ।

ରଜା– ମୁନିମାନଙ୍କର ତପସ୍ୟା ନିର୍ବିଘ୍ନରେ ଚାଲିଛି ତ ?

ଶିଷ୍ୟଦ୍ୱୟ– ସଜ୍ଜନମାନଂକର ରକ୍ଷକ ମହରଜ ଦୁଷ୍ୟନ୍ତ ଥାଉଁ ଥାଉଁ ଧର୍ମ-କାର୍ଯ୍ୟରେ କଅଣ ବିଘ୍ନ ପଡ଼ିପାରେ ? ସୂର୍ଯ୍ୟ କିରଣ ଦେଉଥିବା ବେଳେ ଅନ୍ଧାରର ଆବିର୍ଭାବ କଅଣ ସମ୍ଭବ ? ୧୪

ରାଜା– (ସ୍ୱଗତ) ତାହାହେଲେ ମୋର ରାଜପଦ ସାର୍ଥକ । (ପ୍ରକାଶ୍ୟରେ) ଜଗଦ୍‌ବାସୀଙ୍କୁ ଅନୁଗୃହୀତ କରିବା ନିମନ୍ତେ ମହାତ୍ମା କଣ୍ୱ କୁଶଳରେ ଅଛନ୍ତି ତ ?

ଶିଷ୍ୟଦ୍ୱୟ–ସିଦ୍ଧିସଂପନ୍ନ ବ୍ୟକ୍ତିମାନଂକର ମଙ୍ଗଳ ସ୍ୱ-ଆୟତ୍ତାଧୀନ । ମହର୍ଷି ଆପଣଙ୍କର କୁଶଳ ସମାଚାର କାମନା କରି କହିଛନ୍ତି—

ରାଜା– କି ଆଦେଶ ଦେଇଛନ୍ତି ?

शाङ्‌र्ग—यन्मिथःसमयाद् इमां मदीयां दुहितरं भवानुपायंस्त, तन्मया प्रीतिमता युवनोरनुज्ञातम् । कुतः ?—

त्वमर्हतां प्राग्रसरः स्मृतोऽसि नः
शकुन्तला मूर्तिमती च सत्क्रिया ।
समानयंस्तुल्यगुणं वधूवरं
चिरस्य वाच्यं न गतः प्रजापतिः ॥ १५ ॥

तदिदानीमापन्नसत्त्वा प्रतिगृह्यतां सहधर्मचरणायेति ।

गौत—भद्दमुह ! किंपि वत्तुकाम म्हि । ( भद्रमुख ! किमपि वक्तुकामास्मि । )

अहवा ण मे वअणवसरो अत्थि । जदो

णावेक्खिओ गुरुअणो इमाए ण तुमे वि पुच्छिआ बधू ।
एक्कक्कमेव्व चरिए भणामि किं एक्कमेक्कस्स ॥ १६ ॥

( अथवा, न मे वचनावसरोऽस्ति । यतः—

नापेक्षितो गुरुजनोऽनया न त्वयापि पृष्टो बन्धुः ।
एकैकस्मिन्नेव चरिते भणामि किमेकमेकस्य ॥ )

शकु—( आत्मगतम् ) किं णु खु अज्जउत्तो भणादि ?

( किं नु खल्वार्यपुत्रो भणति ? )

राजा—किमिदमुपन्यस्तम् ?

शकु—( आत्मगतम् ) हुं सावलेवो से वअणावक्खेवो ।

( हुं । सावलेपोऽस्य वचनोपक्षेपः )

शाङ्‌र्ग—किं नाम किमिदमुपन्यस्तमिति । ननु भवन्त एव सुतरां लोकवृत्तान्तनिष्णाताः ।

सतीमपि ज्ञातिकुलैकसंश्रयां
जनोऽन्यथा भर्तृमतीं विशङ्कते ।
अतः समीपे परिणेतुरिष्यते
प्रियाऽप्रिया वा प्रमदा स्वबन्धुभिः ॥ १७ ॥

राजा—किमत्रभवती मया परिणीतपूर्वा ?

शकु—( सविषादम्, आत्मगतम् ) हिअअ ! संपदं दे आसंका ।

( हृदय ! सांप्रतं ते आशङ्का । )

शाङ्‌र्ग—किं ? कृतकार्यद्वेषः ? धर्मं प्रति विमुखता ? कृतेऽवज्ञा ?

राजा—कुतोऽयमसत्कल्पनाप्रसङ्गः ?

ଶାର୍ଙ୍ଗ— କହିଛନ୍ତି, "ପରସ୍ପରର ସମ୍ମତିକ୍ରମେ ଆପଣ ଯେ ମୋର କନ୍ୟାକୁ ବିବାହ କରିଛନ୍ତି, ତାହା ମୁଁ ପ୍ରୀତ ମନରେ ଅନୁମୋଦନ କରୁଛି । କାରଣ—

ଆପଣ ଯୋଗ୍ୟ ବ୍ୟକ୍ତିମାନଙ୍କ ମଧ୍ୟରେ ଯୋଗ୍ୟତମ ଏବଂ ଶକୁନ୍ତଳା ମୂର୍ତ୍ତିମତୀ ସତ୍‌କ୍ରିୟା । ସମାନ ଗୁଣର ବର-ବଧୂଙ୍କୁ ମିଳିତ କରାଇ ବିଧାତା ଚିରଦିନ ପାଇଁ ନିନ୍ଦାରୁ ମୁକ୍ତି ପାଇଛନ୍ତି । ୧୫
ତେଣୁ ଆପଣ ବର୍ତ୍ତମାନ ସହଧର୍ମ ଆଚରଣ ନିମନ୍ତେ ଆପଣଙ୍କର ଅନ୍ତଃସତ୍ତ୍ୱା ଧର୍ମପତ୍ନୀକୁ ଗ୍ରହଣ କରନ୍ତୁ ।"

ଗୌତମୀ—ଆର୍ଯ୍ୟ, ମୁଁ ମଧ୍ୟ କିଛି କହିବାକୁ ଚାହୁଁଛି । କିନ୍ତୁ କହିବାର ପ୍ରୟୋଜନ ନାହିଁ । କାରଣ—

ଏ ( ଶକୁନ୍ତଳା ଆଡକୁ ନିର୍ଦ୍ଦେଶ କରି ) ଗୁରୁଜନମାନଙ୍କୁ ଅପେକ୍ଷା କଲନାହିଁ, ଆପଣ ମଧ୍ୟ ବନ୍ଧୁବାନ୍ଧବମାନଙ୍କୁ ପଚାରିଲେ ନାହିଁ । ପରସ୍ପରର ସମ୍ମତି କ୍ରମେ ଯାହା ଘଟିଛି ସେ ସମ୍ବନ୍ଧରେ ଜଣଙ୍କୁ ଅନ୍ୟ ଜଣଙ୍କ କଥା କଅଣ କହିବି ? ୧୬

ଶକୁ— ( ସ୍ୱଗତ ) ଆର୍ଯ୍ୟପୁତ୍ର କ'ଣ କହିବେ ?

ରାଜା— ଆପଣମାନେ କଅଣ କହି ଯାଉଛନ୍ତି ?

ଶକୁ— ( ସ୍ୱଗତ ) ଉଃ ! ଏହାଙ୍କର କଥା କି ଔଦ୍ଧତ୍ୟ ସୂଚକ !

ଶାର୍ଙ୍ଗ— କଅଣ ! ଆମେ କଅଣ କହିଯାଉଛୁଁ ! ଆପଣ ପର ଲୋକ-ବ୍ୟବହାରରେ ଅତ୍ୟନ୍ତ ଅଭିଜ୍ଞ ?

ବିବାହିତା ସ୍ତ୍ରୀ ଯେତେ ସତୀ ହେଉନା କାହିଁକି, ସେ ଯଦି ପିତୃଗୃହରେ ରହେ, ତେବେ ଲୋକେ ତାକୁ ସନ୍ଦେହ ଦୃଷ୍ଟିରେ ଦେଖନ୍ତି । ତେଣୁ ସ୍ତ୍ରୀ ସ୍ୱାମୀର ପ୍ରିୟା ହେଉ ବା ଅପ୍ରିୟା ହେଉ, ସେ ସ୍ୱାମୀ-ଗୃହରେ ରହୁ, ଏହା ତାର ଆତ୍ମୀୟମାନେ ଚାହାନ୍ତି ।

ରାଜା— ମୁଁ କଅଣ ଏହାଙ୍କୁ ପୂର୍ବରୁ ବିବାହ କରିଛି ?

ଶକୁ— ( ବିଷାଦରେ ସ୍ୱଗତ ) ହୃଦୟ, ତୁ ଯାହା ଆଶଙ୍କା କରିଥିଲୁ, ତାହାହିଁ ହେଲା !

ଶାର୍ଙ୍ଗ— କଅଣ ! ନିଜର ପୂର୍ବ କାର୍ଯ୍ୟର ବିରୋଧ ? ଧର୍ମ ପ୍ରତି ବିମୁଖତା ? କୃତକର୍ମର ଅବଜ୍ଞା ?

ରାଜା— ଏହି ଅସତ୍ କଳ୍ପନାର ପ୍ରସଙ୍ଗ ଆପଣମାନେ କିପରି ଉତ୍‌ଥାପନ କରି ପାରୁଛନ୍ତି ?

शार्ङ्ग—मूर्च्छन्त्यमी विकाराः प्रायेणैश्वर्यमत्तेषु ॥ १८ ॥

राजा—विशेषेणाधिक्षिप्तोऽस्मि ।

गौत—जादे ! मुहुत्तअं मा लज्ज । अवणइस्सं दाव दे ओउंठणं । तदो तुम भट्टा अहिजाणिस्सदि । ( जाते ! मुहूर्तं मा लज्जस्व । अपनेष्यामि तावत् ते अवगुण्ठनम् । ततस्त्वां भर्ता अभिज्ञास्यति । )

( यथोक्तं करोति )

राजा—( शकुन्तलां निर्वर्ण्य आत्मगतम् )

इदमुपनतमेव रूपमक्लिष्टकान्ति
प्रथमपरिगृहीतं स्यान्न वेत्यध्यवस्यन् ।
भ्रमर इव विभाते कुन्दमन्तस्तुषारं
न च खलु परिभोक्तुं नापि शक्नोमि मोक्तुम् ॥ १९ ॥

प्रती—( आत्मगतम् ) अहो धम्मावेक्खिआ भट्टिणो । ईदिसं णाम सुहोवणदं रूवं देक्खिअ को अण्णो विआरेदि ? ( अहो धर्मावेक्षिता भर्तुः । ईदृश नाम सुखोपनतं रूपं दृष्ट्वा कोऽन्यो विचारयति ? )

शार्ङ्ग—भो राजन् ! किमिति जोषमास्यते ?

राजा—भोस्तपोधनाः ! चिन्तयन्नपि न खलु स्वीकरणमत्रभवत्याः स्मरामि । तत्कथमिमाम् अभिव्यक्तसत्त्वलक्षणां प्रति आत्मानं क्षेत्रिणमाशङ्कमानः प्रतिपत्स्ये ?

शकु—( आत्मगतम् ) हद्धी हद्धी । कधं परिणए एव्व संदेहो । कुदो दाणिं मे दूराहिराहिणी आसा ? ( हा धिक् हा धिक् । कथं परिणय एव संदेहः । कुत इदानीं मे दूराधिरोहिणी आशा ? )

शार्ङ्ग—
कृताभिमर्शामनुमन्यमानः
सुतां त्वया नाम मुनिर्विमान्यः ।
मुष्टं प्रतिग्राहयता स्वमर्थं
पात्रीकृतो दस्युरिवासि येन ॥ २० ॥

ଶାର୍ଙ୍ଗ– ଏ୍ୟ ଶ୍ୱର୍ଯ୍ୟମତ୍ତ ବ୍ୟକ୍ତିମାନଙ୍କଠାରେ ପ୍ରାୟ ଏହିଭଳି ଔଦ୍ଧତ୍ୟ ଦେଖାଯାଏ । ୧୮

ରାଜା– ମୋତେ ତ ବେଶ୍ ତିରସ୍କାର କରାଯାଉଛି !

ଗୌତମୀ–ଝିଅ, ତୁ ମୁହୂର୍ତ୍ତେ ଲଜ ଛାଡ଼ିଦେ । ମୁଁ ତୋର ଓଢଣା ବାହାର କରି ଦେଉଛି । ତୋର ସ୍ୱାମୀ ତୋତେ ଚିହ୍ନନ୍ତୁ ।

( ଓଢଣା କାଢି ଦେଲେ )

ରାଜା– ( ଶକୁନ୍ତଳାକୁ ଦେଖି ସ୍ୱଗତ )
ଏହି ରମଣୀୟ ସୌନ୍ଦର୍ଯ୍ୟ ଆସି ଏଭଳି ଭଗରେ ଉପସ୍ଥିତ ! ମୁଁ ଏହାକୁ ପୂର୍ବରୁ ଗ୍ରହଣ କରିଛି କି ନା, ଠିକ୍ କରି ପାରୁନାହିଁ । ସକାଳେ କୁନ୍ଦପୁଷ୍ପର ଭିତର ତୁଷାରାବୃତ ହୋଇଥିଲେ ଭ୍ରମର ଯେପରି ତାକୁ ଉପଭୋଗ କରିପାରେ ନାହିଁ କି ଛାଡ଼ି ଯାଇପାରେ-ନାହିଁ, ମୁଁ ସେହିପରି ଏହାକୁ ଉପଭୋଗ କରିପାରୁ ନାହିଁ କି ଛାଡ଼ି ପାରୁ ନାହିଁ । ୧୯

ପ୍ରତୀ- ( ସ୍ୱଗତ ) ଅହୋ ! ମହାରାଜ କେଡ଼େ ଧର୍ମାନୁଦର୍ଶୀ ! ସ୍ୱତଃ ମିଳିଥିବା ଏଡ଼େ ସୁନ୍ଦର ରୂପକୁ ଦେଖି ଆଉ କିଏ ଏପରି ବିଗ୍ଭର କରିପାରେ ?

ଶାର୍ଙ୍ଗ– ମହାରାଜ ନୀରବ କାହିଁକି ?

ରାଜା– ହେ ତପସ୍ୱୀ, ମୁଁ ବହୁତ ଚି କଲିଣି, କିନ୍ତୁ ଏହାକୁ ବିବାହ କରିଛି ବୋଲି ସ୍ମରଣ କରିପାରୁ ନାହିଁ । ଏହାଙ୍କଠାରେ ଅନ୍ତଃସତ୍ତ୍ୱା ଲକ୍ଷଣ ପରିସ୍ଫୁଟ । ଏଭଳି ଅବସ୍ଥାରେ ନିଜକୁ ଏହାଙ୍କର ସ୍ୱାମୀ କଳ୍ପନା କରି କିପରି ଏହାଙ୍କୁ ଗ୍ରହଣ କରିନେବି ?

ଶକୁ– ( ସ୍ୱଗତ ) ବିବାହ ବିଷୟରେ ଏହାଙ୍କର ସନ୍ଦେହ, ଆଉ ମୁଁ ଏଣେ ଆଶାର ସୌଧ ଗଢିବାରେ ଲଗିଛି !

ଶାର୍ଙ୍ଗ– ରାଜା, ତୁମେ ବଳପୂର୍ବକ ମହର୍ଷି କଣ୍ୱଙ୍କର କନ୍ୟାକୁ ହରଣ କଲ, ମାତ୍ର ସେ ତାହା ଅନୁମୋଦନ କଲେ । ଏଭଳି ମୁନିଙ୍କୁ କଦାପି ଅବଜ୍ଞା କର ନାହିଁ । ତୁମେ ଚୋର ଭଳି ତାଂକର ଧନ ଅପହରଣ କଲ ; କିନ୍ତୁ ସେ ତୁମକୁ ସତ୍‌ପାତ୍ର ବୋଲି ଭବି ନିଜର ଅପହୃତ ଧନକୁ ତୁମକୁ ଅର୍ପଣ କରିଦେଲେ । ୨୦

शार—शार्ङ्गरव ! विरम त्वमिदानीम्, शकुन्तले ! वक्तव्यम् उक्तमस्माभिः। सोऽयमत्रभवानेवमाह। दीयतामस्मै प्रतिवचनम्।

शकु—( आत्मगतम् ) इमं अवत्थंतरं गदे तारिसे अणुराए किं वा सुमराविदेण ? अत्ता दाणिं मे सोअणीआ त्ति ववसिसं एदं। ( प्रकाशम् ) अज्जउत्त ! ( अर्धोक्ते आत्मगतम् ) अहवा संसइदो दाणिं एसो णो समुआहारो। ( प्रकाशम् ) पोरव ! ण जुत्तं णाम दे तह पुरा अस्समपदे सहावुत्ताणहिअअं इमं जणं समअपुव्वं प्पतारिअ ईदिसेहिं अक्खरेहिं पच्चाचक्खिदुं। ( इदमवस्थान्तरं गते तादृशेऽनुरागे किं वा स्मारितेन ? आत्मेदानीं मे शोचनीय इति व्यवसिष्याम्येतत्। ( प्रकाशम् ) आर्यपुत्र ! ( अर्धोक्ते आत्मगतम् ) अथवा संशयितः इदानीमेष नः समुदाहारः। ( प्रकाशम् ) पौरव ! न युक्तं नाम ते तथा पुराश्रमपदे स्वभावोत्तानहृदयमिमं जनं समयपूर्वं प्रतार्य ईदृशैरक्षरैः प्रत्याख्यातुम्। )

राजा—( कर्णौ पिधाय ) शान्तं पापम्।

व्यपदेशमाविलयितुं समीहसे जनमिमं च पातयितुम् ?
कूलङ्कषेव सिन्धुः प्रसन्नमम्भः तटतरुं च ॥ २१ ॥

शकु—होदु, जइ परमत्थतो परपरिग्गहसंकिणा तुए एव्वं वत्तुं पउत्तं ता अहिण्णाणेण इमिणा तुह आसंकं अवणइस्सं। [ भवतु, यदि परमार्थतः परपरिग्रहशङ्किना त्वयैवं वक्तुं प्रवृत्तं तदभिज्ञानेनानेन तवाशङ्कामपनेष्यामि। )

राजा—उदारः कल्पः।

शकु—( मुद्रास्थानं परामृश्य ) हद्धी, अंगुलीअअसुण्णा मे अंगुली। ( हा धिक् ! अङ्गुलीयकशून्या मेऽङ्गुलिः। ) ( सविषादं गौतमीमवेक्षते )

गौत—णूणं दे सक्कावदारब्भंतरे सचीतित्थसलिलं वंदमाणाए पब्भट्टं अगुलीअअं। ( नूनं ते शक्रावताराभ्यन्तरे शचीतीर्थे सलिलं वन्दमानायाः प्रभ्रष्टमङ्गुलीयकम्। )

ଶାର– ଶାର୍ଙ୍ଗରବ, ବର୍ତ୍ତମାନ ତୁମେ ବିରତ ହୁଅ । ଶକୁନ୍ତଳା ! ଯାହା କହିବାର କଥା, ଆମେ କହିଲୁଁ । ରଜା ତ ଏପରି କହିଲେ । ତୁମେ ନିଜେ ତାଙ୍କୁ ବିଶ୍ୱାସଜନକ ଉତ୍ତର ଦିଅ ।

ଶକୁ– ( ସ୍ୱଗତ ) ଅନୁରାଗରେ ଯେତେବେଳେ ଏପରି ପରିବର୍ତ୍ତନ ଘଟିଛି, ସ୍ମରଣ କରାଇ ଦେଲେ ବା କଅଣ ହେବ ? ତଥାପି କଳଙ୍କରୁ ମୁକ୍ତ ହେବା ଦରକାର, ତେଣୁ କହିବି । ( ପ୍ରକାଶ୍ୟରେ ) ଆର୍ଯ୍ୟପୁତ୍ର, ( ଅଟକିଯାଇ ସ୍ୱଗତ ) ନା, ନା, ବିବାହ ସମ୍ବନ୍ଧରେ ଏହାଙ୍କର ଯେତେବେଳେ ସନ୍ଦେହ, ଏପରି ସମ୍ବୋଧନ ଉଚିତ ହେବନାହିଁ । (ପ୍ରକାଶ୍ୟରେ) ପୌରବ, ମୁଁ ସ୍ୱଭବତଃ ସରଳହୃଦୟା । ଆଶ୍ରମରେ ଶପଥ ପୂର୍ବକ ମୋତେ ପ୍ରତାରଣା କରି ବର୍ତ୍ତମାନ ଏପରି କଠୋର ବଚନରେ ପ୍ରତ୍ୟାଖ୍ୟାନ କରିବା ଆପଣଙ୍କ ପକ୍ଷେ ଉପଯୁକ୍ତ ନୁହେଁ ।

ରଜା– ଭଗବାନ୍ ! ପାପ ଶାନ୍ତ ହେଉ ।
ହେ ମୁନିକନ୍ୟା, ନଦୀ କୂଳ ଲଙ୍ଘନ କରି ଯେପରି ନିର୍ମଳ ଜଳକୁ ଆବିଳ କରେ ଏବଂ ତୀର-ସ୍ଥିତ ବୃକ୍ଷକୁ ଉତ୍ପାଟନ କରେ, ସେହିପରି ତୁମେ ତୁମର ବଂଶକୁ କଳଙ୍କିତ ଏବଂ ମୋତେ ପତିତ କରିବାକୁ କାହିଁକି ଚେଷ୍ଟା କରୁଛ ? ୨୧

ଶକୁ– ହେଉ, ପ୍ରକୃତରେ ଆପଣ ଯଦି ମୋତେ ପର ସ୍ତ୍ରୀ ବୋଲି ଭାବି ଏଭଳି କହୁଛନ୍ତି, ତେବେ ମୁଁ ସ୍ମୃତିଚିହ୍ନ ଦେଖାଇ ଆପଣଙ୍କର ଆଶଙ୍କା ଦୂର କରିବି ।

ରାଜା– ଉତ୍ତମ କଥା ।

ଶକୁ– ( ଅଙ୍ଗୁଳି ଅଣ୍ଡାଳି ) ହାୟ ! ମୋ ଅଙ୍ଗୁଳିରେ ମୁଦି କାହିଁ ?
( ବିଷାଦରେ ଗୌତମୀଙ୍କୁ ଚାହିଁ ରହିଲେ )

ଗୌତମୀ–ବୋଧହୁଏ ଶକ୍ରାବତାରମଧ୍ୟରେ ଶଚିତୀର୍ଥର ଜଳ ବନ୍ଦନା କରିବା-ବେଳେ ତାହା ଅଙ୍ଗୁଳିରୁ ଖସିପଡ଼ିଛି !

राजा—(सस्मितम्) इदं तत् प्रत्युत्पन्नमतित्वं स्त्रीणामिति यदुच्यते।

शकु—एत्थ दाव विहिणा दंसिदं पहुत्तणं। अवरं दे कहिस्सं। (अत्र तावद् विधिना दर्शितं प्रभुत्वम्। अपरं ते कथयिष्यामि।)

राजा—श्रोतव्यमिदानीं संवृत्तम्।

शकु—णं एक्कस्सिं दिअहे णोमालिआमंडवे णलिणीपत्तभाअणगअं उअअं तुह हत्थे संणिहिदं आसि। (ननु, एकस्मिन् दिवसे नवमालिकामण्डपे नलिनीपत्रभाजनगतमुदकं तव हस्ते संनिहितमासीत्।)

राजा—शृणुमस्तावत्।

शकु—तक्खणं सो मे पुत्तकिदओ दीहापंगो णाम मिअपोदओ उवट्ठिओ। तुए अअं दाव पढमं पिअउ त्ति अणुअंपिणा उवच्छंदिदो उअएण। ण उण दे अपरिचआदो हत्थब्भासं उवगदो। पच्छा तस्सिं एव्व मए गहिदे सलिले णेण किदो पणओ। तदा तुमं पहसिदो सि एत्थं—सव्वो सगंधेसु विस्ससिदि, दुवे वि एत्थ आरण्णआ'—त्ति। (तत्क्षणे स मे पुत्रकृतको दीर्घापाङ्गो नाम मृगपोतक उपस्थितः। त्वयायं तावत् प्रथमं पिबत्वित्यनुकम्पिनोपच्छन्दित उदकेन। न पुनस्तेऽपरिचयाद् हस्ताभ्याशमुपगतः। पश्चात् तस्मिन्नेव मया गृहीते सलिले अनेन कृतः प्रणयः। तदा त्वमित्थं प्रहसितोऽसि—'सर्वः सगन्धेषु विश्वसिति द्वावप्यत्रारण्यकौ' इति।)

राजा—एवमादिभिरात्मकार्यनिर्वर्तिनीनाम् अनृतवाङ्मधुभिराकृष्यन्ते विषयिणः।

गौत—महाभाअ! ण अरुहसि एव्वं मंतिदुं। तवोवणसंवड्ढिदो अणभिण्णो खु अअं जणो कइदवस्स। (महाभाग! नार्हस्येवं मन्त्रयितुम्। तपोवनसंवर्धितः अनभिज्ञोऽयं जनः कैतवस्य।)

ରାଜା-- ( ମୃଦୁ ହାସ୍ୟ କରି ) ଏଇଥିପାଇଁ କହନ୍ତି, ସ୍ତ୍ରୀଲୋକମାନଙ୍କୁ ହଠାତ୍ କିଛି ଗୋଟାଏ ବୁଦ୍ଧି ଜୁଟିଯାଏ ।

ଶକୁ - ଏଥିରେ ବିଧାତା ହିଁ ବାମ ହେଲ । ମୁଁ ଆପଣଙ୍କୁ ଆଉ ଗୋଟିଏ କଥା କହିବି ।

ରାଜା-- ତା ହେଲେ ପୁଣି ଗୋଟିଏ କଥା ଶୁଣିବାକୁ ପଡ଼ିବ !

ଶକୁ - ଦିନେ ନବମାଳିକା କୁଞ୍ଜରେ ଆପଣ ହାତରେ ଗୋଟିଏ ଜଳପୂର୍ଣ୍ଣ ପଦ୍ମପତ୍ରର ପାତ୍ର ଧରିଥିଲେ ।

ରାଜା-- ହଁ, ମୁଁ ଶୁଣୁଛି ।

ଶକୁ ସେହି ସମୟରେ, ଦୀର୍ଘାପାଙ୍ଗ ନାମକ ଯେଉଁ ମୃଗଶିଶୁଟିକୁ ମୁଁ ପୁତ୍ର ପରି ପାଳନ କରିଥିଲି, ସେ ସେଠାରେ ଆସି ପହଞ୍ଚିଲ । ଆପଣ ଦୟାପରବଶ ହୋଇ 'ପ୍ରଥମେ ଏ ଜଳ ପିଉ' ବୋଲି କହିଲେ ଏବଂ ତାକୁ ପାଖକୁ ଡାକିଲେ ; କିନ୍ତୁ ସେ ଆପଣଙ୍କୁ ଚିହ୍ନି ନ ଥିଲ ବୋଲି ପାଖକୁ ଗଲ-ନାହିଁ । ପଛରେ ମୁଁ ସେହି ଜଳ ଧରନ୍ତେ ସେ ଆଗ୍ରହରେ ଆସି ପିଇଲ । ସେତେବେଳେ ଆପଣ ହସି ହସି କହିଲେ—'ସମସ୍ତେ ନିଜ ନିଜର ସମଧର୍ମୀମାନଙ୍କୁ ବିଶ୍ୱାସ କରନ୍ତି । ତୁମେ ଦୁଇଜଣଯାକ ହିଁ ଅରଣ୍ୟବାସୀ ।'

ରାଜା--ନିଜର କାର୍ଯ୍ୟ ହାସଲ କରିବାକୁ ଚାହୁଁଥିବା ରମଣୀମାନଙ୍କର ଏଭଳି ଅସତ୍ୟ, ମଧୁମୟ କଥାରେ କେବଳ କାମୀ ବ୍ୟକ୍ତିମାନେ ଆକୃଷ୍ଟ ହୁଅନ୍ତି ।

ଗୌତମୀ—ମହାଭାଗ, ଏଭଳି କହନ୍ତୁ ନାହିଁ । ଏ ତପୋବନରେ ବଢ଼ିଛି, ଛନ୍ଦ-କପଟ କଅଣଜାଣେ ନାହିଁ ।

राजा—तापसवृद्धे !

स्त्रीणामशिक्षितपटुत्वममानुषीषु
सदृश्यते किमुत याः प्रतिबोधवत्यः ।
प्रागन्तरिक्षगमनात् स्वमपत्यजात-
मन्यैर् द्विजैः परभृताः खलु पोषयन्ति ॥ २२ ॥

शकु—( सरोषम् ) अणज्ज ! अत्तणो हिअआणुमाणेण पेक्खसि । को दाणिं अण्णो धम्मकंचुअप्पवेसिणो तिणच्छण्णकूवोवमस्स तव अणुकिदिं पडिवदिस्सदि ? ( अनार्य ! आत्मनो हृदयानुमानेन पश्यसि । क इदानीमन्यो धर्मकञ्चुकप्रवेशिनः तृणच्छन्नकूपोपमस्य तवानुकृतिं प्रतिपत्स्यते ? )

राजा—( आत्मगतम् ) संदिग्धबुद्धिं मां कुर्वन्नकैतव इवास्याः कोपो लक्ष्यते । तथा ह्यनया—

मय्येव विस्मरणदारुणचित्तवृत्तौ
वृत्तं रहः प्रणयमप्रतिपद्यमाने ।
भेदाद् भ्रुवोः कुटिलयोरतिलोहिताक्ष्या
भग्नं शरासनमिवातिरुषा स्मरस्य ॥ २३ ॥

( प्रकाशम् ) भद्रे ! प्रथितं दुष्यन्तस्य चरितम् ।

शकु—सुट्ठु दाव अत्त सच्छंदचारिणी किदाम्हि, जा अहं इमस्स पुरुवंसप्पच्चएण मुहमहुओ हिअअविसस्स हत्थब्भासं उवगदा । ( सुष्ठु तावदत्र स्वच्छन्दचारिणी कृतास्मि, याहमस्य पुरुवंशप्रत्ययेन मुखमधोर्हृदयविषस्य हस्ताभ्याशमुपगता । ) (पटान्तेन मुखमावृत्य रोदिति । )

शार्ङ्—इत्थमप्रतिहतं चापलं दहति ।

ରଜା— ହେ ବୃଦ୍ଧା ତପସ୍ୱିନୀ,
ବିନା ଶିକ୍ଷାରେ ସ୍ତ୍ରୀମାନେ ଚତୁରା ହେବାର ପଶୁପକ୍ଷୀମାନଙ୍କଠାରେ ମଧ୍ୟ ଦେଖା ଯାଇଥାଏ । ଆଉ ଯେଉଁମାନଙ୍କର ବୋଧଶକ୍ତି ଅଛି, ସେମାନଙ୍କ କଥା କ'ଣ ବା କହିବା ? ମାଈ କୋଇଲିର ଛୁଆମାନେ ଯେପର୍ଯ୍ୟନ୍ତ ଉଡ଼ିବାକୁ ସମର୍ଥ ହୋଇ ନ ଥାନ୍ତି, ସେପର୍ଯ୍ୟନ୍ତ ସେ ଅନ୍ୟ ପକ୍ଷୀମାନଙ୍କ ଦ୍ୱାରା ସେମାନଙ୍କର ଲାଳନପାଳନ କରାଇଥାଏ । ୨୨ ॥

ଶକୁ— ( କ୍ରୋଧରେ ) ଅନାର୍ଯ୍ୟ, କଅଣ ସମସ୍ତଙ୍କୁ ନିଜପରି ମନେ କରୁଛ ? ତୁମେ ଧର୍ମର ଖୋଳ ପରିଧାନକାରୀ, ତୁମେ ତୃଣ-ଆଚ୍ଛାଦିତ କୂପତୁଲ୍ୟ ଆଉ କିଏ ତୁମକୁ ଅନୁକରଣ କରିପାରେ ?

ରାଜା— ( ସ୍ୱଗତ ) ଏହାର କ୍ରୋଧ ଅକୃତ୍ରିମ ଭଳି ଜଣାପଡୁଛି ଏବଂ ମୋ ମନରେ ସଂଶୟ ସୃଷ୍ଟି କରୁଛି ।
ବୋଧହୁଏ ଗୋପନରେ ଆମର ପ୍ରଣୟ ଘଟିଯାଇଛି । କିନ୍ତୁ ବର୍ତ୍ତମାନ ମୁଁ କିଛି ସ୍ମରଣ କରି ନ ପାରି ତାହା ଅସ୍ୱୀକାର କରୁଛି । ତେଣୁ ଏହାର ସୁନ୍ଦର ଚକ୍ଷୁ ଯୋଡ଼ିକ କ୍ରୋଧରେ ଆରକ୍ତ ଏବଂ ଭ୍ରୂଲତା ଯୋଡିକ ଏପରି ବକ୍ର ଦିଶିଲଣି ଯେ, ଜଣାପଡୁଛି, ତା'ର ଅତ୍ୟନ୍ତ କ୍ରୋଧରେ ସତେ ଯେପରି କନ୍ଦର୍ପର ଧନୁ ଦିଖଣ୍ଡ ହୋଇଯାଉଛି ! ୨୩
( ପ୍ରକାଶ୍ୟରେ ) ଭଦ୍ରେ, ଦୁଷ୍ୟନ୍ତର ଚରିତ୍ର ଜଗତ ଜାଣେ ।

ଶକୁ— ମୁଁ ଯେ ପୁରୁବଂଶ ଉପରେ ବିଶ୍ୱାସ ରଖି ଏ ବିଷକୁମ୍ଭ-ପୟୋମୁଖ ପୁରୁଷଙ୍କ ହାତରେ ଧରା ପଡ଼ିଲି, ତେଣୁ ସ୍ୱଚ୍ଛନ୍ଦଚାରିଣୀ ବୋଲି ବିବେଚିତ ହେଲି..............( ପଣତରେ ମୁହଁ ଘୋଡାଇ କାନ୍ଦିଲେ )

ଶାର୍ଙ୍ଗ— ଚାପଲ୍ୟ ବାଧା ନ ପାଇଲେ ଏହିପରି ଦୁଃଖ ଦେଇଥାଏ ।

अतः परीक्ष्य कर्तव्यं विशेषात् संगतं रहः ।
अज्ञातहृदयेष्वेवं वैरीभवति सौहृदम् ॥ २४ ॥

राजा—अयि भोः ! किमत्रभवतीप्रत्ययादेव अस्मान् संवृतदोषाक्षरैरधिक्षिपथ ।

शाङ्ग—( सासूयम् ) श्रुतं भवद्भिरधरोत्तरम् ?

आ जन्मनः शाठ्यमशिक्षितो यः
तस्याप्रमाणं वचनं जनस्य ।
परातिसंधानमधीयते यैर्
विद्येति ते सन्तु किलाप्तवाचः ॥ २५ ॥

राजा—भोः सत्यवादिन् ! अभ्युपगतं तावदस्माभिरेवंविधा एव वयम् । किं पुनरिमामतिसंधाय लभ्यते ? ।

शाङ्ग—विनिपातः ।

राजा—विनिपातः ? विनिपातः पौरवैर्लभ्यत इति अश्रद्धेयमेतत् ।

शार—शाङ्गरव ! किमुत्तरेण ? अनुष्ठितो गुरोर्निसंदेशः । प्रतिनिवर्तामहे वयम् । ( राजानं प्रति )—

तदेषा भवतः कान्ता त्यज वैनां गृहाण वा ।
उपपन्ना हि दारेषु प्रभुता सर्वतोमुखी ॥ २६ ॥

गौतमि ! गच्छाग्रतः ।

( प्रस्थिताः )

शकु—( शाङ्गरवशारद्वतौ प्रति ) कहं इमिणा किदवेण विप्पलद्धम्हि ! तुम्हे वि मं परिच्चअह ? ( कथमनेन कितवेन विप्रलब्धास्मि ? युवामपि मां परित्यजथः ? ) ( अनुप्रतिष्ठते )

गौत—( स्थित्वा ) वच्छ संगरव ! अणुगच्छदि इअं खु णो करुणपरिदेविणी सउंदला । पच्चादेसपरुसे भत्तुणि किं वा मे पुत्तिआ करेदु ? ( वत्स शाङ्गरव ! अनुगच्छतीयं खलु नः करुणपरिदेविनी शकुन्तला । प्रत्यादेशपरुषे भर्तरि, किं वा मे पुत्रिका करोतु ? )

ତେଣୁ କୌଣସି କାର୍ଯ୍ୟ, ବିଶେଷତଃ ଗୋପନ-ପ୍ରଣୟ ଭଲଭାବେ ପରୀକ୍ଷା କରି କରିବା ଉଚିତ । ଯାହାର ହୃଦୟ ଜଣା ନଥିବ, ତା' ସହିତ ମିତ୍ରତା କଲେ ସେହି ମିତ୍ରତା ଶେଷରେ ଶତ୍ରୁତାରେ ପରିଣତ ହୁଏ । ୨୪

ରଜା– ଆହେ ! ଆପଣମାନେ ଏହାଙ୍କ କଥାରେ ବିଶ୍ୱାସ କରି କାହିଁକି ମୋତେ ଅପବାଦ ଦେଉଛନ୍ତି ?

ଶାର୍ଙ୍ଗ– ( କ୍ରୋଧରେ ) ଆପଣମାନେ ଏହାଙ୍କ ହୀନ ଉତ୍ତର ଶୁଣିଲେ ତ ? ଯେ ଆଜନ୍ମରୁ ଶଠତା କ'ଣ ଜାଣିନାହିଁ, ତା'ର କଥା ଅପ୍ରମାଣ ବୋଲି ଧରାଯିବ, ଆଉ ଯେଉଁମାନେ ପରପ୍ରତାରଣାକୁ ବିଦ୍ୟା ବୋଲି ଭାବି ଅଧ୍ୟୟନ କରନ୍ତି, ସେମାନଙ୍କ କଥା ବିଶ୍ୱାସ-ଯୋଗ୍ୟ ବୋଲି ଗୃହୀତ ହେବ !

ରଜା– ହେ ସତ୍ୟବାଦୀ, ମୁଁ ନିଜକୁ ସେପରି ବୋଲି ମାନୁଛି । ଆଚ୍ଛା, କହିଲ, ଏହାଙ୍କୁ ପ୍ରତାରଣା କରି ମୋତେ ମିଳିବ କଅଣ ?

ଶାର୍ଙ୍ଗ– ଧ୍ୱଂସ ।

ରାଜା– ପୌରବମାନଙ୍କୁ ଧ୍ୱଂସ ମିଳେ, ଏହା କେହି ବିଶ୍ୱାସ କରିବେ ନାହିଁ ।

ଶାର– ଶାର୍ଙ୍ଗରବ, ଉତ୍ତର ଦେବା ଅନାବଶ୍ୟକ । ଆମେ ଗୁରୁଙ୍କ ଆଦେଶ ପାଳନ କରିଥାଉଁ । ବର୍ତ୍ତମାନ ଆସ,ଫେରିଯିବା । (ରଜାଂକ ପ୍ରତି) ଏ ଆପଣଙ୍କର ପତ୍ନୀ । ଆପଣ ଏହାଙ୍କୁ ଗ୍ରହଣ କରିପାରନ୍ତି ବା ପରିତ୍ୟାଗ କରିପାରିନ୍ତି । ପତ୍ନୀ ଉପରେ ପତିର ସମସ୍ତ ଅଧିକାର ଅଛି । ୨୬ ଗୌତମୀ, ଚାଲ । ( ଫେରିଲେ )

ଶକୁ– ଏ କପଟୀ ମୋତେ ପ୍ରତାରଣା କଲେ । ତୁମ୍ଭେମାନେ ମୋତେ ଛାଡି ଚାଲିଯାଉଛ? ( ପଛେ ପଛେ ଚାଲିଲେ )

ଗୌତମୀ–( ଅଟକିଯାଇ ) ବତ୍ସ ଶାର୍ଙ୍ଗରବ, ଶକୁନ୍ତଳା ବିକଳରେ କାନ୍ଦି-କାନ୍ଦି ପଛେ ପଛେ ଆସୁଛି । ତା' ସ୍ୱାମୀ ତ ନିଷ୍ଠୁର ହୋଇ ତାକୁ ପରିତ୍ୟାଗ କଲେ । ମୋ ଝିଅ ବର୍ତ୍ତମାନ କଅଣ କରିବ ?

शार्ङ्ग—( सरोषं निवृत्य ) किं पुरोभागे ! स्वातन्त्र्यमवलम्बसे ?

( शकुन्तला भीता वेपते )

शार्ङ्ग—शकुन्तले !

यदि यथा वदति क्षितिपस्तथा
त्वमसि, किं पितुरुत्कुलया त्वया ।
अथ तु वेत्सि शुचि व्रतमात्मनः
पतिकुले तव दास्यमपि क्षमम् ॥ २७ ॥

तिष्ठ, साधयामो वयम् ।

राजा—भोस्तपस्विन् ! किमत्रभवतीं विप्रलभसे ? पश्य—

कुमुदान्येव शशाङ्कः सविता बोधयति पङ्कजान्येव ।
वशिनां हि परपरिग्रहसंश्लेषपराङ्मुखी वृत्तिः ॥ २८ ॥

शार्ङ्ग—यदा तु पूर्ववृत्तमन्यसङ्गाद् विस्मृतो भवान्, तदा कथमधर्मभीरुः ?

राजा—( पुरोहितं प्रति ) भवन्तमेवात्र गुरुलाघवं पृच्छामि ।

मूढः स्यामहमेषा वा वदेन्मिथ्येति संशये ।
दारत्यागी भवाम्याहो परस्त्रीस्पर्शपांसुलः ॥ २९ ॥

पुरो—( विचार्य ) यदि तावदेवं क्रियताम् ।

राजा—अनुशास्तु भवान् ।

पुरो—अत्रभवती तावद् आप्रसवाद् अस्मद्गृहे तिष्ठतु ।

राजा—कुत इदम् ?

पुरो—त्वं साधुनिमित्तकैरादिष्टः 'प्रथममेव चक्रवर्तिनं पुत्रं जनयिष्यसी'-ति । स चेन्मुनिदौहित्रः तल्लक्षणोपपन्नो भविष्यति, अभिनन्द्य शुद्धान्तमेनां प्रवेशयिष्यसि । विपर्यये तु पितुरस्याः समीपनयनमवस्थितमेव ।

राजा—यथा गुरुभ्यो रोचते ।

ଶାର୍ଙ୍ଗ– (ରେଗରେ ବୁଲିପଡ଼ି) ଶକୁନ୍ତଳା, ତୁ କାହିଁକି ସ୍ୱେଚ୍ଛାଚାରିଣୀ ହେଉଛୁ ?

( ଶକୁନ୍ତଳା ଭୟରେ କଂପିବାକୁ ଲାଗିଲେ )

ଶାର୍ଙ୍ଗ– ରାଜା ଯାହା କହୁଛନ୍ତି, ତାହା ଯଦି ସତ୍ୟ, ତେବେ ତୋ ଭଳି କୁଳ-କଳଙ୍କିନୀଠାରେ ପିତାଙ୍କର କି ପ୍ରୟୋଜନ ? ଆଉ ତୁ ଯଦି ନିଜକୁ ଶୁଦ୍ଧ ବୋଲି ଜାଣୁ, ତେବେ ତୋର ପତିଗୃହରେ ଦାସୀ ହୋଇ ରହିବା ଶ୍ରେୟସ୍କର । ୨୭

ତୁ ରହ, ଆମେ ଯାଉଛୁଁ ।

ରାଜା– ହେ ତପସ୍ୱୀ, ଆପଣମାନେ କାହିଁକି ଏହାଙ୍କୁ ପ୍ରତାରଣା କରୁଛନ୍ତି ? ଚନ୍ଦ୍ର କେବଳ କୁମୁଦିନୀକୁ ଏବଂ ସୂର୍ଯ୍ୟ କେବଳ ପଦ୍ମିନୀକୁ ବିକଶିତ କରେ । ପର-ସ୍ତ୍ରୀକୁ ସ୍ପର୍ଶ କରିବାକୁ ସଂଯମୀ ବ୍ୟକ୍ତିମାନେ କଦାପି ମନ ବଳାନ୍ତି ନାହିଁ । ୨୮

ଶାର୍ଙ୍ଗ– ଯେତେବେଳେ ଆପଣ ଅନ୍ତଃପୁରକୁ ଆସି ପୂର୍ବ କଥା ଭୁଲିଯାଇଛନ୍ତି, ସେତେବେଳେ ଆପଣଙ୍କର ଅଧର୍ମକୁ ଆଉ ଭୟ କଅଣ ?

ରାଜା– ( ପୁରୋହିତଙ୍କ ପ୍ରତି ଆପଣଙ୍କୁ ହିଁ ମୁଁ ଏ ବିଷୟରେ ଉଚିତ-ଅନୁଚିତ କଥା ପଚାରୁଛି ।

ମୁଁ ସ୍ମରଣ କରି ପାରୁ ନାହିଁ, ନା ଏ ମିଥ୍ୟା କହୁଛନ୍ତି ? ଏଭଳି ସନ୍ଦେହରେ ମୁଁ ଏ ସ୍ତ୍ରୀକୁ ପରିତ୍ୟାଗ କରିବି ନା ପର ସ୍ତ୍ରୀଙ୍କୁ ସ୍ପର୍ଶ କରି କୁଳାଙ୍ଗାର ହେବି ? ୨୯

ପୁରୋହିତ-( ଚିନ୍ତା କରି ) ଆଚ୍ଛା, ତା' ହେଲେ ଏଭଳି କରନ୍ତୁ—

ରାଜା– ଉପଦେଶ ଦିଅନ୍ତୁ ।

ପୁରୋହିତ-ଏ ପ୍ରସବ ସମୟ ପର୍ଯ୍ୟନ୍ତ ମୋ ଘରେ ରହନ୍ତୁ ।

ରାଜା– କାହିଁକି ?

ପୁରୋହିତ–ଆପଣଙ୍କୁ ଲକ୍ଷଣଶାସ୍ତ୍ରଜ୍ଞ ସାଧୁମାନେ କହିଛନ୍ତି ଯେ, ଆପଣଙ୍କର ପ୍ରଥମ ପୁତ୍ର ଚକ୍ରବର୍ତ୍ତୀ ରାଜା ହେବ । ଯଦି ଏଭଳି ଚକ୍ରବର୍ତ୍ତୀ-ଲକ୍ଷଣଯୁକ୍ତ ପୁତ୍ର ମୁନିକନ୍ୟାଙ୍କଠାରୁ ଜାତ ହୁଏ ତାହାହେଲେ ଆପଣ ସମ୍ବର୍ଦ୍ଧନା କରି ଏହାଙ୍କୁ ଅନ୍ତଃପୁରକୁ ନେବେ । ଯଦି ତା ନ ହୁଏ, ତେବେ ଏହାଙ୍କୁ ପିତୃ ଗୃହକୁ ପଠାଇ ଦେବା ହିଁ ସ୍ଥିର ।

ରାଜା– ଆପଣ ଯାହା ଭଲ ଭାବୁଛନ୍ତି ।

पुरो—वत्से ! अनुगच्छ माम् ।

शकु—भअवदि वसुहे ! देहि मे विवरं ( भगवति वसुधे ! देहि मे विवरम् । )

( रुदती प्रस्थिता, निष्क्रान्ता सह पुरोधसा तपस्विभिश्च )

( राजा शापव्यवहितस्मृतिः शकुन्तलागतमेव चिन्तयति )

( नेपथ्ये )

आश्चर्यम् ! आश्चर्यम् !

राजा—( आकर्ण्य ) किं नु खलु स्यात् ?

पुरो—( प्रविश्य सविस्मयम् ) देव ! अद्‌भुतं खलु संवृत्तम् ।

राजा—किमिव ?

पुरो—देव ! परावृत्तेषु कण्वशिष्येषु

सा निन्दन्ती स्वानि भाग्यानि बाला
बाहूत्क्षेपं क्रन्दितुं च प्रवृत्ता ।

राजा—किं च,

पुरो—
स्त्रीसंस्थानं चाप्सरस्तीर्थमारा-
दुत्क्षिप्यैनां ज्योतिरेकं जगाम ॥ ३० ॥

राजा—भगवन् ! प्रागेव, सोऽस्माभिरर्थः प्रत्यादिष्ट एव । किं वृथा तर्केणान्विष्यते ? विश्राम्यतु भवान् ।

पुरो—विजयस्व । ( निष्क्रान्तः )

राजा—वेत्रवति ! पर्याकुलोऽस्मि । शयनभूमिमार्गमादेशय ।

प्रती—इदो इदो देवो । ( इत इतो देवः । )　　( प्रस्थिता )

राजा—

कामं प्रत्यादिष्टां स्मरामि न परिग्रहं मुनेस्तनयाम् ।
बलवत् तु दूयमानं प्रत्याययतीव मे हृदयम् ॥ ३१ ॥

( निष्क्रान्ताः सर्वे )

॥ इति पञ्चमोऽङ्कः ॥



ପୁରୋହିତ–( ଶକୁନ୍ତଳାଙ୍କୁ ) ବତ୍ସେ, ମୋ ସହିତ ଆସ ।

ଶକୁ– ମା ବସୁନ୍ଧରା, ମୋତେ ତୋ କୋଳରେ ଆଶ୍ରୟ ଦେ ।

( ଶକୁନ୍ତଳା କାନ୍ଦି କାନ୍ଦି ଚାଲିଲେ । ପୁରୋହିତ ଏବଂ ତପସ୍ୱୀମାନେ ପ୍ରସ୍ଥାନ କଲେ । )

( ରାଜା ଶକୁନ୍ତଳାଙ୍କ ବିଷୟରେ ଭାବି ହେଉଥାଆନ୍ତି, ଶାପ ଯୋଗୁ ପୂର୍ବ କଥା ସ୍ମରଣ କରି ପାରୁନଥାନ୍ତି ।)

ନେପଥ୍ୟେ

ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ !

ରାଜା–( ଶୁଣି ) କଅଣ ହେଲା ?

ପୁରୋହିତ-( ପ୍ରବେଶ କରି ଆଶ୍ଚର୍ଯ୍ୟରେ ) ମହାରାଜ ! ଅତି ଅଦ୍ଭୁତ ଘଟଣା ଘଟିଲା ।

ରାଜା– କଅଣ ?

ପୁରୋ– ମହାରାଜ, କଣ୍ୱଶିଷ୍ୟମାନେ ଚାଲିଯାଆନ୍ତେ ସେହି ତରୁଣୀ ନିଜର ଭାଗ୍ୟକୁ ନିନ୍ଦା କରି ବାହୁ ଟେକି କାନ୍ଦିବାକୁ ଲାଗିଲା ।

ରାଜା– ତା ପରେ ?

ପୁରୋ– ସ୍ତ୍ରୀଭଳି ଆକୃତିର ଏକ ଜ୍ୟୋତି ଆସି ତାକୁ ଉପରକୁ ଟେକି ନେଇ ଅପ୍ସରା ତୀର୍ଥ ଆଡକୁ ଚାଲିଗଲା । ୩୦

ରାଜା– ମହାତ୍ମନ୍, ମୁଁ ପ୍ରଥମରୁ ସେ ବିଷୟ ପ୍ରତ୍ୟାଖ୍ୟାନ କରିଛି । ବର୍ତ୍ତମାନ ସେ ବିଷୟରେ କୌଣସି ଚିନ୍ତା କରିବା ବୃଥା । ଆପଣ ବିଶ୍ରାମ ନିଅନ୍ତୁ ।

ପୁରୋ– ଆପଣଙ୍କର ଜୟ ହେଉ । ( ଚାଲିଗଲେ )

ରାଜା– ବେତ୍ରବତୀ, ମୁଁ ବଡ଼ ଅସ୍ଥିର ବୋଧ କରୁଛି । ଶୟନକକ୍ଷ ଆଡକୁ ଚାଲ ।

ପ୍ରତୀହାରୀ–ଆସନ୍ତୁ ମହାରାଜ । ଚାଲିଲେ

ରାଜା– ପ୍ରକୃତରେ ମୁଁ ସେହି ମୁନି କନ୍ୟାଙ୍କୁ ବିବାହ କରିଛି ବୋଲି ସ୍ମରଣ କରି ପାରୁ ନାହିଁ, ସେଥି ନିମନ୍ତେ ତାଙ୍କୁ ପ୍ରତ୍ୟାଖ୍ୟାନ କଲି, କିନ୍ତୁ ମୋର ହୃଦୟ ଅତ୍ୟନ୍ତ ଉତ୍କଣ୍ଠିତ ହୋଇ ସତେଯେପରି ମୋର ବିଶ୍ୱାସ ଜନ୍ମାଇବାକୁ ଚାହୁଁଛି !

( ସମସ୍ତଙ୍କର ପ୍ରସ୍ଥାନ )

।। ପଞ୍ଚମ ଅଙ୍କ ସମାପ୍ତ ।।

# युग्मविष्कम्भकः

[ १ ]

( ततः प्रविशति नागरकः श्यालः पश्चाद्बद्धपुरुषमादाय रक्षिणौ च )

रक्षिणौ—( ताडयित्वा ) अले कुंभीलआ ! कहेहि कहिं तुए एशे महालदणभाशुले उक्किण्ण-णामहेए लाअकीए अंगुलीअए शामाशादिए ? ( अरे कुम्भीलक ! कथय कुत्र त्वयैतन्महारत्नभासुरम् उत्कीर्णनामधेयं राजकीयमङ्गुलीयकं समासादितम् ? )

पुरु—( भीतिनाटितकेन ) पशीदंतु भावमिश्शे। हगे ण ईदिशकम्मकाली। ( प्रसीदन्तु भावमिश्राः। अहं नेदृशकर्मकारी। )

प्रथ—किं सोहणे बम्हणेत्ति कलिअ रज्जा पडिग्गहे दिण्णे ? ( किं शोभनो ब्राह्मण इति कलयित्वा राज्ञा प्रतिग्रहो दत्तः ? )

पुरु—सुणध दाणिं। हगे शक्कावदालब्भंतरालवाशी धीवले। श्रृणुत इदानीम्। अहं शक्रावताराभ्यन्तरालवासी धीवरः। )

द्विती—पाडच्चला ! किं अम्हेहिं जादी पुच्छिदा ? ( पाटच्चर ! किमस्माभिर्जातिः पृष्टा ? )

श्यालः—सूअअ ! कहेदु शव्वं अणुक्कमेण। मा णं अंतरा पडिबंधह। ( सूचक ! कथयतु सर्वमनुक्रमेण। मैनमन्तरे प्रतिबन्धय। )

उभौ—जं आवुत्ते आणवेदि ( धीवरं प्रति ) कहेहि। ( यदावुत्त आज्ञापयति ( धीवरं प्रति ) कथय। )

पुरु—हगे जालुग्गालादिहिं मच्छबंधणोवाएहिं कुडुंबभलणं कलेमि। ( अहं जालोद्गालादिभिर् मत्स्यबन्धनोपायैः कुटुम्बभरणं करोमि। )

श्यालः—( विहस्य) विसुद्ध दाणिं आजीवो। (विशुद्ध इदानीमाजीवः)

# ଯୁଗ୍ମ ବର୍ଷ୍ମ ମ୍ଭକ

( ୧ )

( ରାଜାଙ୍କ ଶାଳକ ନଗରପାଳ ଏବଂ ଦୁଇଜଣ ରକ୍ଷୀ ପ୍ରବେଶ କଲେ । ରକ୍ଷୀଦ୍ୱୟ ଜଣେ ଲୋକକୁ ପଛରୁ ହାତ ବାନ୍ଧି ଆଣୁଥିଲେ । )

ରକ୍ଷୀଦ୍ୱୟ-( ପ୍ରହାର କରି ) ଆରେ ଚୋର,କହ, ତୁ ଏହି ରତ୍ନଖଚିତ ରାଜକୀୟ ମୁଦି କେଉଁଠୁ ପାଇଲୁ ? ଏହା ଉପରେ ତ ମହାରାଜାଙ୍କର ନାମ ଲେଖା ହୋଇଛି !

ଅଭିଯୁକ୍ତ—( ଥରି ଥରି ) ମହାଭାଗ, ରକ୍ଷା କରନ୍ତୁ । ମୁଁ ଚୋରି କରି ନାହିଁ ।

୧ମ ରକ୍ଷୀ—ତେବେ ତୋତେ କ'ଣ ରଜା ଶ୍ରେଷ୍ଠ ବ୍ରାହ୍ମଣ ବିଚାରି ଏହା ଦାନ କରିଛନ୍ତି ?

ଅଭିଯୁକ୍ତ- ଆପଣମାନେ ଶୁଣିବା ହୁଅନ୍ତୁ । ମୁଁ ଜଣେ କେଉଟ । ଶକ୍ରାବତାରରେ ବାସ କରେଁ ।

୨ୟ ରକ୍ଷୀ-ଆରେ ଚୋର, ଆମେ କଅଣ ତୋ ଜାତି କଥା ପଚାରୁଛୁଁ ?

ଶାଳକ- ସୂଚକ, ଏ ମୂଳରୁ ସବୁ କଥା କହୁ । ମଝିରେ ମଝିରେ ଏହାକୁ ବାଧା ଦିଅ ନାହିଁ ।

ରକ୍ଷୀଦ୍ୱୟ—ଆପଣଙ୍କର ଯାହା ଆଜ୍ଞା । ( ଧୀବରକୁ ) ଆରେ, କହ ।

ଅଭିଯୁକ୍ତ— ମୁଁ ଜାଲ, ବନିସି ପ୍ରଭୃତି ଉପାୟରେ ମାଛ ଧରି କୁଟୁମ୍ବ ପୋଷଣ କରେଁ ।

ଶାଳକ— ( ହସି ) ବାଃ, ପବିତ୍ର ଜୀବିକାଟିଏ ଧରିଛୁ ତ !

पुरु—भस्टके ! मा एवं भण ( भर्त्तः ! मैवं भण )

शहए किल ये विणिंदिए ण हु से कम्म विवज्जणीअए ।
पशुमालणकम्मदालुणे अणुकंपामिदु जेव्व शोत्तिए ॥ १ ॥

( सहजं किल यद् विनिन्दितं न हि तत् कर्म विवर्जनीयकम् ।
पशुमारणकर्मदारुणोऽप्यनुकम्पामृदुरेव श्रोत्रियः ॥ )

श्यालः—तदो तदो ? ( ततस्ततः ? )

पुरु—एक्कश्शिं दिअशे खडशो लोहिअमच्छे मए कप्पिदे जाव, तश्श उदलब्भतले एदं लदणभाशुलं अंगुलीअअं पेस्कामि । पच्छा अहके शे विक्कआअ दंशअते गहिदे भावमिश्शेहिं । मालेह वा मुंचेह वा । अअं शे आअमवुत्तंते । ( एकस्मिन् दिवसे खण्डशो रोहितमत्स्यो मया कल्पितो यावत्, तस्योदराभ्यन्तर इद रत्नभासुरमङ्गुलीयकं पश्यामि । पश्चादहं तस्य विक्रयाय दर्शयन् गृहीतो भावमिश्रैः । मारयत वा मुञ्चत वा । अयमस्यागमवृत्तान्तः । )

श्या—जाणुअ ! विस्सगंधी गोहादी एसो मच्छबंधो एव्व णिस्संअअं । अंगुलीअअदंसणं शे विमरिसिदव्वं । राअउलं येव्व गच्छामो । (जानुकः ! विस्रगन्धी गोधादी एषः मत्स्यबन्ध एव निःसंशयम् ॥ अङ्गुलीयकदर्शनमस्य विमर्शयितव्यम् । राजकुलमेव गच्छामः । )

रक्षि—तह । गच्छ अले गण्ठिछेदअ ! (तथा । गच्छ अरे ग्रन्थिछेदक ! )

( सर्वे परिक्रामन्ति )

श्या—सूअअ ! इमं गोपुरदुआरे अप्पमत्ता पडिवालेह जाव इमं अंगुलीअअं जहागमणं भट्टिणो णिवेदिअ तदो सासणं पडिच्छिअ णिक्कयामि । ( सूचक ! इमं गोपुरद्वारे अप्रमत्तौ प्रतिपालयतम्, यावदिदमङ्गुलीयकं यथागमनं भर्तुर्निवेद्य, ततः शासनं प्रतीष्य, निष्क्रामामि । )

उभौ—पविसदु आउत्ते शामिपशादश्श । ( प्रविशत्वावुत्तः स्वामिप्रसादाय । )

( निष्क्रान्तः श्यालः )

ଅଭିଯୁକ୍ତ—ମହାଭାଗ, ଏପରି କହନ୍ତୁ ନାହିଁ । ଯେଉଁ ଜାତିର ଯେଉଁ କାମ, ତାହା ଯେତେ ମନ୍ଦ ହୋଇଥିଲେ ବି ଛାଡ଼ିବା ଉଚିତ ନୁହେଁ । ବ୍ରାହ୍ମଣ-ମାନେ ସ୍ୱଭାବତଃ ଦୟାଳୁ । ତଥାପି ସେମାନେ ଯଜ୍ଞରେ ପଶୁ ମାରିବାକୁ ନିଷ୍ଠୁର ହୁଅନ୍ତି । ୧

ଶାଳକ— ଆଚ୍ଛା, କହି ଯା ।

ଅଭିଯୁକ୍ତ—ଦିନେ ଗୋଟିଏ ରୋହୀମାଛକୁ ମୁଁ ଖଣ୍ଡ ଖଣ୍ଡ କରି କାଟିଲା ବେଳେ ତାହା ପେଟରେ ଏହି ରତ୍ନମୟ ଉଜ୍ଜ୍ୱଳ ମୁଦିଟି ଥିବାର ଦେଖିଲି । ତାହାପରେ ଏଠାକୁ ଆସି ମୁଦିଟିକୁ ବିକିବା ନିମନ୍ତେ ଯେମିତି ଦେଖାଇଛି, ଆପଣମାନେ ମୋତେ ଧରିଲେ । ଆପଣମାନେ ମୋତେ ମାରନ୍ତୁ ବା ଛାଡ଼ି ଦିଅନ୍ତୁ, ମୁଁ ଏହିଭଳି ଭାବରେ ଏହାକୁ ପାଇଛି ।

ଶାଳକ— ଜାନୁକ, ଏହା ଦେହରେ କଞ୍ଚାମାଂସ-ଗନ୍ଧ ବାହାରୁଛି । ଏ ଗୋଟାଏ ଗୋଧିଖିଆ କେଉଟ । ତେବେ ମୁଦି ମିଳିବାର ଯେଉଁ ବୃତ୍ତାନ୍ତ ଏ କହିଲା, ତାହା ବିଚାର କରିବାର କଥା । ଆଚ୍ଛା, ଚାଲ, ରାଜନବରକୁ ଯିବା ।

ରକ୍ଷୀଦ୍ୱୟ-ହେଉ । ଆରେ ଗଣ୍ଠିକଟା ( ପକେଟମାରୁ ) ! ଚାଲ ।

(ସମସ୍ତେ ଚାଲିଲେ )

ଶାଳକ— ସୂଚକ ! ଏ ଲୋକକୁ ପ୍ରାସାଦଦ୍ୱାରରେ ସାବଧାନ ହୋଇ ଜଗିଥାଅ । ମୁଁ ଏହି ମୁଦିକୁ ନେଇ ମହାରାଜାଙ୍କ ନିକଟକୁ ଯାଉଛି ଏବଂ ତାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ଆଜ୍ଞା ଘେନି ଆସୁଛି ।

ରକ୍ଷୀଦ୍ୱୟ—ମହାଭାଗ, ଆପଣ ରାଜନବରକୁ ଯିବା ହୁଅନ୍ତୁ ।

( ଶାଳକ ଗଲେ )

सूच—याणुअ ! चिलाअदि खु आवुत्ते । ( जानुक ! चिरायते खल्वा-
वुत्तः । )

जानु—णं अवशलोवशप्पणीआ लाआणो । ( नन्ववसरोपसर्पणीया
राजानः । )

सूच—याणुअ ! स्फुलंति मे अग्गहत्था ( धीवरं निर्दिश्य ) गठिश्छेद-
अश्श इमश्श वहशुमणा पिणद्धुं ( जानुक ! प्रस्फुरतो मम
अग्रहस्तौ ( धीवरं निर्दिश्य ) अस्य ग्रन्थिच्छेदकस्य वधसुमनसः
पिनद्धुम् । )

पुरु—ण अलुहदि भावे अकालण-मालणं भाविदुं ।
( नार्हति भावः अकारणमारणं भावयितुम् । )

जानु—( विलोक्य ) एशे अम्हाणं शामी पत्तहत्थे लाअशाशणं पडि-
च्छिअ इदोमुहे देक्खीअदि । गिद्धवली भविश्शशि, शुणो मुहं
वा पेक्खिश्शशि । ( एष नः स्वामी पत्रहस्तो राजशासनं
प्रतीष्य इतोमुखो दृश्यते । गृध्रबलिर्भविष्यसि, शुनो मुखं वा
द्रक्ष्यसि ? )

श्या—( प्रविश्य ) सुणअ ! मुंचेदु एसो जालोअजीवी । उववण्णो खु
अंगुलीअअस्स आअमो । ( सूचक !मुच्यतामेष जालोपजीवी ।
उपपन्नः खलु अङ्गुलीयकस्यागमः । )

सूच—जह आवुत्ते भणादि । ( यथावुत्तो भणति । )

जानु—एशे यमशदणं पविशिअ पडिणिवुत्ते । ( एष यमसदनं प्रविश्य
प्रतिनिवृत्तः । ) ( पुरुषं परिमुक्तबन्धनं करोति )

पुरु—( श्यालं प्रणम्य ) भस्टके ! अह कहअ कीलिशे मे अज्ज
आजीवे ? ( भर्तः ! अथ कथय कीदृशो मेऽद्य आजीवः ? )

श्या—एसो भट्टिणा अंगुलीअअमुल्लसम्मिदो पसादो वि दाविदो ।
( एष भर्त्रा अङ्गुलीयकमूल्यसंमितः प्रसादोऽपि दापितः । )
( प्रयच्छति )

पुरु—( सप्रणामं प्रतिगृह्य ) भस्टके ! अणुग्गहीदे म्हि ।
( भर्तः ! अनुगृहीतोऽस्मि । )

୧ମ ରକ୍ଷୀ--ଜାନୁକ, ନଗରପାଳ ବହୁତ ଡେରି କଲେଣି ।

୨ୟ ରକ୍ଷୀ--ଭଇ, ରଜାଙ୍କ ପାଖକୁ ଅବସର ଦେଖି ଯିବାକୁ ହୁଏ ।

୧ମ— ଜାନୁକ, ( ଅଭିଯୁକ୍ତ ପୁରୁଷ ଆଡକୁ ଅଙ୍ଗୁଳି ଦେଖାଇ ) ଏହି ଗଣ୍ଠି-କଟାର ବେକରେ ବଧମାଳା ପିନ୍ଧାଇ ଦେବାକୁ ମୋ ହାତ ଖୁଜବୁଜୁ ହୋଇ ଉଠୁଛି ।

ଅଭିଯୁକ୍ତ—ମହାଶୟ, ବିନା ଦୋଷରେ ମୋତେ ମାରିବା ଉଚିତ ହେବ ନାହିଁ ।

୨ୟ— ( ନିରୀକ୍ଷଣ କରି ) ଏଇ, ଆମର ମାଲିକ ହାତରେ ରଜାଙ୍କ ଆଜ୍ଞାପତ୍ର ଘେନି ଏଣିକି ଆସୁଛନ୍ତି । (ଅଭିଯୁକ୍ତ ପୁରୁଷକୁ) ଆରେ ! ତୁ ଶାଗୁଣାଙ୍କର ଖାଦ୍ୟ ହେବୁ ନା କୁକୁରଙ୍କ ମୁହଁକୁ ଯିବୁ ?

ନଗରପାଳ—( ପ୍ରବେଶ କରି ) ସୂଚକ, ଏ ଧୀବରକୁ ଛାଡ଼ି ଦିଅ । ମୁଦି ମିଳିବାର ବୃତ୍ତାନ୍ତ ଏ ଯାହା କହିଛି, ତାହା ସତ୍ୟ ।

୧ମ— କର୍ତ୍ତାଙ୍କର ଯାହା ଆଜ୍ଞା ।

୨ୟ— ଏ ଯମପୁରକୁ ଯାଇ ଫେରି ଆସିଲା ! ( ଅଭିଯୁକ୍ତ ଆସାମୀକୁ ବନ୍ଧନରୁ ମୁକ୍ତ କରିଦେଲା । )

ଅଭିଯୁକ୍ତ— ( ପ୍ରଣାମ କରି ) ପ୍ରଭୁ, ଆଜି ମୁଁ କିପରି ଚଳିବି ?

ନଗରପାଳ—ମୁଦିର ଯେତେ ମୂଲ୍ୟ, ମହାରାଜ ତୋତେ ସେତେ ଧନ ପୁରସ୍କାର ଦେଇଛନ୍ତି । (ଧନ ଦେଲେ )

ଅଭିଯୁକ୍ତ—( ପ୍ରଣାମ ପୂର୍ବକ ନେଇ ) ପ୍ରଭୁ, ଆପଣ ମୋ ପ୍ରତି ଖୁବ୍ ଦୟା ଦେଖାଇଛନ୍ତି !

सूच—एशे णाम अणुग्गहे जे शूलादो अवदालिअ हत्थिक्कंधे पडिट्ठाविदे । ( एष नामानुग्रहो यच्छूलादवतार्य हस्तिस्कन्धे प्रतिष्ठापितः । )

जानु—आवुत्त ! पलिदोशं कहेदि, तेण महालिह-लदणेण अगुलीअएण भट्टिणो शम्मदेण होदव्व । ( आवुत्त ! परितोषः कथयति, महार्हरत्नेन तेनाङ्गुलीयकेन भर्तुः संमतेन भवितव्यम् । )

श्या—ण तस्सिं महारुहं रदणं भट्टिणो बहुमदं त्ति तक्केमि । तस्स दंसणेण भट्टिणो अभिमदो जणो सुमराविदो । मुहुत्तअं पकिदि-गंभीरो वि पज्जुस्सुअणअणो आसि । ( न तस्मिन् महार्हं रत्नं भर्तुर्बहुमतमिति तर्कयामि । तस्य दर्शनेन भर्तुरभिमतो जनः स्मारितः । मुहूर्तं प्रकृतिगम्भीरोऽपि पर्युत्सुकनयन आसीत् । )

सूच—शेविदो णाम भस्टा आवुत्तेण । (सेवितो नाम भर्त्ता आवुत्तेन ।)

जानु—णं भणाहि , इमश्श कए मच्छिआभत्तुणो त्ति । ( ननु भण । अस्य कृते मात्स्यिकभर्तुरिति । ) ( पुरुषमसूयया पश्यति )

पुरु—भट्टालक ! इदो अद्धं तुम्हाणं शुमणोमुल्लं होदु । ( भट्टारक ! इतोऽर्धं युष्माकं सुमनोमूल्यं भवतु । )

जानु—एत्तं जुज्जइ ( एतद् युज्यते । )

श्या—धीवर ! महत्तरो तुमं पिअवअस्सओ दाणिं मे संवुत्तो । कादंबरीसक्खिअं अम्हाणं पढमसोहिदं इच्छीअदि । ता सोंडिआपणं एव्व गच्छामो । ( धीवर ! महत्तरस्त्वं प्रिय-वयस्यकः इदानीं मे संवृत्तः । कादम्बरीसाक्षिकमस्माकं प्रथमसौहृदमिष्यते । तच्छौण्डिकापणमेव गच्छामः । )

( निष्क्रान्ताः सर्वे )

ଜାନୁକ– ରଜା ଯେଉଁଳି ଅନୁଗ୍ରହ ଦେଖାଇଲେ, ସେଥିରୁ ଜଣାପଡୁଛି, ମୁଦିଟି ରଜାଙ୍କର ଅତ୍ୟନ୍ତ ପ୍ରିୟ ବସ୍ତୁ ।

ନଗରପାଳ–ସେଥିରେ ବହୁମୂଲ୍ୟ ରତ୍ନ ଲଗିଥିବାରୁ ଯେ ରଜାଙ୍କର ଅତ୍ୟନ୍ତ ପ୍ରିୟ ବସ୍ତୁ, ଏହା ମୁଁ ମନେ କରୁନାହିଁ । ବୋଧହୁଏ, ସେହି ମୁଦିକୁ ଦେଖି କୌଣସି ପ୍ରିୟ ବ୍ୟକ୍ତିଙ୍କ ସ୍ମୃତି ତାଙ୍କ ମନରେ ଜାଗ୍ରତ ହୋଇଛି । କାରଣ, ସେ ସ୍ୱଭାବତଃ ଗମ୍ଭୀର ହେଲେ ମଧ୍ୟ ତାଙ୍କ ଚକ୍ଷୁରୁ ଅଶ୍ରୁ ଝରି ଆସିଲା ।

ସୂଚକ– ତାହାହେଲେ ଆପଣ ମହାରଜାଙ୍କର ଏକ ବଡ଼ ଉପକାର କଲେ ।

ଜାନୁକ– କହ ଯେ, ଏଇ କେଉଟର ବଡ ଉପକାର କଲେ ।
( ଈର୍ଷାର ସହିତ ଅଭିଯୁକ୍ତ ବ୍ୟକ୍ତିକୁ ଚାହିଁଲା )

ଅଭିଯୁକ୍ତ–ମହାଶୟଗଣ, ଏଥିରୁ ଅଧା ଆପଣମାନଙ୍କର ଫୁଲଖର୍ଚ୍ଚରେ ଲାଗୁ ।

ଜାନୁକ– ହକ୍ କଥା ।

ନଗରପାଳ–ଧୀବର, ତୁମେ ମୋର ଜଣେ ପ୍ରିୟ ବନ୍ଧୁ ହେଲ । ଆମର ପ୍ରଥମ ବନ୍ଧୁତ୍ୱ ମଦକୁ ସାକ୍ଷୀ ରଖି ହେବା ଉଚିତ । ଚାଲ, ମଦଦୋକାନକୁ ଯିବା ।

( ସମସ୍ତଙ୍କର ପ୍ରସ୍ଥାନ )

# विष्कम्भकः

[ २ ]

( ततः प्रविशत्याकाशयानेन सानुमती नामाप्सराः )

सानु—णिव्वट्टिदं मए पज्जाअणिव्वत्तणिज्जं अच्छरातित्थसण्णिज्झं जाव साहुजणस्स अभिसेअकालो त्ति । संपदं इमस्स राएसिणो उदंतं पच्चक्खीकरिस्सं । मेणआसंबंधेण सरीरभूदा मे सउंदला । ताए अ दुहिदुणिमित्तं आदिट्ठपुव्व म्हि । ( समन्तादवलोक्य ) किं ण खु उदुच्छवे वि णिरुच्छवारंभं विअ राअउलं दीसइ ! अत्थि मे विहवो पणिधाणेण सव्वं परिण्णादुं । किं दु सहीए आदरो मए माणइदव्वो । होदु, इमाणं एव्व उज्जाणपालिआणं तिरक्खरिणीपडिच्छण्णा पस्सवत्तिणी भविअ उवलहिस्सं । ( निर्वर्तितं मया पर्यायनिर्वर्तनीयम् अप्सरस्तीर्थसांनिध्यं यावत् साधुजनस्याभिषेककाल इति । सांप्रतमस्य राजर्षेरुदन्तं प्रत्यक्षीकरिष्यामि । मेनकासंवन्धेन शरीरभूता मे शकुन्तला । तया च दुहितृनिमित्तमादिष्टपूर्वास्मि । ( समन्तादवलोक्य ) किं नु खलु ऋतूत्सवेऽपि निरुत्सवारम्भमिव राजकुलं दृश्यते । अस्ति मे विभवः प्रणिधानेन सर्वं परिज्ञातुम् । किं तु सख्या आदरो मया मानयितव्यः । भवतु, अनयोरेव उद्यानपालिकयोस्तिरस्करिणीप्रतिच्छन्ना पार्श्ववर्तिनी भूत्वा उपलप्स्ये । )

( नाट्येनावतीर्य स्थिता )

( ततः प्रविशति चूताङ्कुरमवलोकयन्ती चेटी, अपरा च पृष्ठतस्तस्याः )

प्रथमा—

आतम्महरिअपंडुर जीविदसव्वं वसंदमासस्स ।
दिट्ठो सि चूअकोरअ ! उदुमंगल ! तुमं पसाएमि ॥ २ ॥
( आताम्रहरितपाण्डुर जीवित-सर्वं वसन्तमासस्य ।
दृष्टोऽसि चूतकोरक ! ऋतुमङ्गल ! त्वां प्रसादयामि ॥ )

# ଯୁଗ୍ମବିଷ୍କମ୍ଭକ

( ୨ )

( ବ୍ୟୋମଯାନରେ ସାନୁମତୀ ନାମକ ଅପ୍‌ସରଙ୍କର ପ୍ରବେଶ )

ସାନୁମତୀ—ସାଧୁ ବ୍ୟକ୍ତିମାନଙ୍କର ସ୍ନାନ ସମୟରେ ଅପ୍‌ସର ତୀର୍ଥରେ ରହିବାକୁ ମୋର ପାଳି ଥିଲା । ସେ କାମ ସମାପ୍ତ ହୋଇଛି । ବର୍ତ୍ତମାନ ଯାଇ ରାଜର୍ଷି ଦୁଷ୍ୟନ୍ତଙ୍କର ଅବସ୍ଥା ଦେଖିବି । ମେନକାଙ୍କ ସମ୍ବନ୍ଧରୁ ଶକୁନ୍ତଳା ମୋର ଶରୀର ତୁଲ୍ୟ ଆପଣାର । ମେନକା ମଧ୍ୟ ଝିଅ ନିମନ୍ତେ ଏଥି ପୂର୍ବରୁ ମୋତେ କହିଛନ୍ତି । ( ଚାରିଆଡ଼କୁ ଚାହିଁ ) ଏ କ'ଣ ! ବର୍ତ୍ତମାନ ତ ବସନ୍ତ ଉତ୍ସବର ସମୟ ! ଆନନ୍ଦ-ଉତ୍ସବ ଲାଗିବା କଥା ! ଏ ସମୟରେ ମଧ୍ୟ ଏହି ରାଜନବରରେ କାହିଁକି ଉତ୍ସବ ଆରମ୍ଭ ହେବାର ଦେଖାଯାଉ ନାହିଁ ! ଦିବ୍ୟ ଧ୍ୟାନରେ ସବୁ କିଛି ଜାଣିବାର ଶକ୍ତି ମୋର ଅଛି ; କିନ୍ତୁ ସଖୀର ଅନୁରୋଧ ରକ୍ଷା କରିବାକୁ ପଡ଼ିବ । ଆଛା ହେଉ , ତିରସ୍କରିଣୀ ବିଦ୍ୟାରେ ନିଜକୁ ଅଦୃଶ୍ୟ କରି ଏହି ଉଦ୍ୟାନପାଳିକାଦୁହିଁଙ୍କ ପାଖରେ ରହି ସମସ୍ତ ବିଷୟ ଜାଣିବି ।

(ନାଟ୍ୟରେ ଆକାଶରୁ ଅବତରଣ କଲେ)

(ତାହାପରେ ଆମ୍ରମୁକୁଳକୁ ଚାହିଁ ଚାହିଁ ଜଣେ ଦାସୀର ପ୍ରବେଶ । ଆଉ ଜଣେ ଦାସୀ ତା ପଛେ ପଛେ ଆସୁଥିଲା ।)

ପ୍ରଥମା— ଲୋହିତ, ସବୁଜ, ପାଣ୍ଡୁର ବରନ ଆମ୍ବ ବଉଳ  
ଶୁଭ ଆଗମନେ କଲୁ ଧରଣୀକୁ ଶୋଭବହୁଳ ।  
ବସନ୍ତମଙ୍ଗଳ, ବସନ୍ତର ତୁହି ଜୀବନ ଧନ  
ତୋର ପ୍ରୀତି ଲାଗି ଜଣାଉଛି ମୁହିଁ ଅଭିନନ୍ଦନ । ୨

ଦ୍ୱିତୀୟା—ପରଭୃତିକା, ଏକା ଏକା କଅଣ ଗାଇ ହେଉଛୁ ?

ପ୍ରଥମା-- ମଧୁକରିକା, ଆମ୍ବ ବଉଳକୁ ଦେଖି ପରଭୃତିକା ଉନ୍‌ମାଦିନୀ ହୋଇ ଉଠୁଛି ।

द्वितीया—परहुदिए ! किं एआइणी मंतेसि ? ( परभृतिके ! किमेकाकिनी मन्त्रयसे ? )

पर—महुअरिए ! चूदकलिअं देक्खिअ उम्मत्तिआ परहुदिआ होदि । ( मधुकरिके ! चूतकलिकां दृष्ट्वा उन्मत्ता परभृतिका भवति । )

मधु—( सहर्षं त्वरयोपगम्य ) कहं उवट्ठिदो महुमासो ? ( कथमुपस्थितो मधुमासः ! )

पर—महुअरिए ! तव दाणिं कालो एसो मदविब्भमसंगीदाणं । ( मधुकरिके ! तवेदानीं काल एष मदविभ्रमसंगीतानाम् । )

मधु—सहि ! अवलंब मं जाव अग्गपादट्ठिआ भविअ चूदकलिअं गेण्हिअ कामदेवच्चणं करेमि । ( सखि ! अवलम्बस्व मां यावदग्रपादस्थिता भूत्वा चूतकलिकां गृहीत्वा कामदेवार्चनं करोमि । )

पर—जइ मम वि खु अद्धं अच्चणफलस्स । ( यदि ममापि खलु अर्धमर्चनफलस्य । )

मधु—अकहिदे वि एदं संपज्जइ, जदो एक्कं एव्व णो जीविदं, दुधा ट्ठिदं सरीरं । ( सखीमवलम्ब्य स्थिता चूताङ्कुरं गृह्णाति ) अए, अप्पडिबुद्धो वि चूदप्पसवो एत्थ वंधणभंगसुरभी होदि ।

( कपोतहस्तकं कृत्वा )

तुमं सि मए चूदंकुर दिण्णो कामस्स गहीदचावस्स ।
पहिअजणजुवइलक्खो पंचब्भहिओ सरो होहि ॥ ३ ॥

( अकथितेऽप्येतत् संपद्यते । यतः एकमेव नौ जीवितम्, द्विधा स्थितं शरीरम् । ( सखीमवलम्ब्य स्थिता चूताङ्कुरं गृह्णाति ) अये, अप्रतिबुद्धोऽपि चूतप्रसवोऽत्र बन्धनभङ्गसुरभिर्भवति ) ( कपोतहस्तकं कृत्वा )

( त्वमसि मया चूताङ्कुर ! दत्तः कामाय गृहीतचापाय ।
पथिकजनयुवतिलक्ष्यः पञ्चाभ्यधिकः शरो भव ॥ )

( चूताङ्कुरं क्षिपति )

ଦ୍ୱିତୀୟା-( ଆନନ୍ଦରେ ଶୀଘ୍ର ନିକଟକୁ ଯାଇ ) ବାଃ ! ମଧୁମାସ ଉପସ୍ଥିତ !

ପ୍ରଥମା-- ମଧୁକରିକା, ତୋ ଉନ୍‌ମାଦଭରା ସଂଗୀତର ସମୟ ଆସିଗଲା ।

ଦ୍ୱିତୀୟା-ସଖୀ, ମୋତେ ଧର । ମୁଁ ପାଦ ଆଙ୍ଗୁଳିରେ ଠିଆ ହୋଇ ଆମ୍ବ-ବଉଳ ତୋଳି କାମଦେବଙ୍କ ପୂଜା କରିବି ।

ପ୍ରଥମା– ଯଦି ମୋତେ ପୂଜାର ଅର୍ଦ୍ଧେ ଫଳ ଦେବୁ, ତାହାହେଲେ ଧରିବି ।

ଦ୍ୱିତୀୟା-ନ କହିଲେ ବି ତୋତେ ତାହା ମିଳିବ ; କାରଣ, ଆମର ଶରୀର ଭିନ୍ନ ଭିନ୍ନ ହେଲେ ମଧ୍ୟ ପ୍ରାଣ ଏକ ।

( ସଖୀ ଉପରେ ଭର ଦେଇ ଆମ୍ବବଉଳ ତୋଳିଲା )

ସଖୀ, ଆମ୍ବବଉଳ ଭଲଭବରେ ଫୁଟି ନାହିଁ ! ତଥାପି ତୋଳିବା ମାତ୍ରେ ଚାରିଆଡ ସୁଗନ୍ଧମୟ କରି ଦେଉଛି ।

( ହସ୍ତଦ୍ୱୟକୁ ଅଞ୍ଜଳିବଦ୍ଧ କରି )

ଚୂତ ମୁକୁଳ, ତୋତେ କଲି ଅର୍ପଣ,
ହୁଅ ତୁ ଯାଇ କାମଦେବଙ୍କ ବାଣ ।
ପଞ୍ଚ ପୁଷ୍ପ-ଶାୟକ ମଧ୍ୟେ ତାଙ୍କର,
ଷଷ୍ଠ ସ୍ଥାନ ତୁ ଯାଇ ଲଭ ନିକର ।
ଯେଉଁ ବାଳାର ପ୍ରିୟ ଅଛି ବିଦେଶେ,
ତାର ମରମ ଭେଦ କର ବିଶେଷେ ।

( ଆମ୍ବ ବଉଳ ନିକ୍ଷେପ କଲା । )

( प्रविश्यापटीक्षेपेण कुपितः )

कञ्चुकी—मा तावत् । अनात्मज्ञे ! देवेन प्रतिषिद्धे वसन्तोत्सवे त्वं चूतकलिकाभङ्गम् आरभसे ?

उभे—( भीते ) पसिदद् अज्जो । अग्गहीदत्थाओ अम्हे ।
( प्रसीदत्यार्यः । अगृहीतार्थे आवाम् । )

कञ्चु०—हुं, न किल श्रुतं युवाभ्यां यद् वासन्तिकैस्तरुभिरपि देवस्य शासनं प्रमाणीकृतं तदाश्रयिभिश्च । तथा हि—

चूतानां चिरनिर्गतापि कलिका बध्नाति न स्वं रजः
सन्नद्धं यदपि स्थितं कुरबकं तत्कोरकावस्थया ।
कण्ठेषु स्खलितं गतेऽपि शिशिरे पुंस्कोकिलानां रुतं
शङ्के संहरति स्मरोऽपि चकितस्तूणार्धकृष्टं शरम् ॥ ४ ॥

उभे—णत्थ संदेहो । महाप्पहाओ राएसी ।
( नात्र संदेहः । महाप्रभावो राजर्षिः । )

पर—अज्ज ! कदि दिअहाइं अम्हाणं मित्तावसुणा रट्ठिएण भट्टिणीपाअमूलं पेसिदाणं ? दाणिं अ णो पमदवणस्स पालणकम्म समप्पिदं । ता आअंतुअदाए अस्सुदपुव्वो अम्हेहिं एसो वुत्तंतो । ( आर्य ! कति दिवसानि आवयोर्मित्रावसुना राष्ट्रियेण भट्टिनीपादमूलं प्रेषितयोः । इदानीं च नौ प्रमदवनस्य पालनकर्म समर्पितम् । तत् आगन्तुकतया अश्रुतपूर्व आवाभ्यामेष वृत्तान्तः । )

कञ्चु०—भवतु । पुनरेवं न प्रवर्तितव्यम् ।

उभे—अज्ज । कोदूहलं णो । जइ इमिणा जणेण सोदव्वं कहेदु, अअं किंणिमित्तं भट्टिणा वसंतुस्सवो पडिसिद्धो ? ( आर्य ! कौतूहलं नौ । यद्यनेन जनेन श्रोतव्यं कथय, अयं किंनिमित्तं भर्त्रा वसन्तोत्सवः प्रतिषिद्धः ? )

( ପରଦା ଆଡେଇ କଞ୍ଚୁକୀର ପ୍ରବେଶ )

କଞ୍ଚୁକୀ– ( କ୍ରୋଧରେ ) ଅବିଗ୍ରରିଣୀ ! ଏପରି କର ନାହିଁ । ମହାରାଜ ବସନ୍ତ ଉତ୍ସବ ବନ୍ଦ କରି ଦେଇଛନ୍ତି , ତୁମେ ଆମ୍ର ବଉଳ ଭାଙ୍ଗିବା ଆରମ୍ଭ କଲଣି ?

ଉଭୟେ– ( ଡରିଯାଇ ) ଆର୍ଯ୍ୟ ! କ୍ଷମା କରନ୍ତୁ । ଆମକୁ ଏହା ଜଣାନାହିଁ ।

କଞ୍ଚୁକୀ– ହୁଁ ! ତୁମ୍ଭେମାନେ କଅଣ ଶୁଣିନା, ବସନ୍ତ କାଳର ବୃକ୍ଷମାନେ ଏବଂ ସେଥିରେ ବାସ କରୁଥିବା ପକ୍ଷୀମାନେ ମଧ୍ୟ ମହାରାଜାଙ୍କର ଆଦେଶ ମାନିନେଇଛନ୍ତି ? କାରଣ—

ଆମ୍ର ବଉଳ ଯଦ୍ୟପି ଅନେକ ଦିନ ହେଲା ଅଙ୍କୁରିତ ହେଲାଣି, ତଥାପି ସେଥିରେ ପରାଗ ଜାତ ହେଉନାହିଁ । କୁରବକ ଫୁଲ ବୃନ୍ତରୁ ବାହାରି-ସାରିଥିଲେ ମଧ୍ୟ ଏ ପର୍ଯ୍ୟନ୍ତ କଢ ଅବସ୍ଥାରେ ରହିଛି ! ଶୀତ ଯଦ୍ୟପି ଗ୍ଲଳିଗଲଣି, ତଥାପି କୋକିଳ କଣ୍ଠରେ କୁହୁ ଧ୍ୱନି ଅଟକି ରହିଛି । ମନେ ହେଉଛି, କନ୍ଦର୍ପ ମଧ୍ୟ ଭୟଭୀତ ହୋଇ ତୂଣୀରରୁ ଅଧା କାଢିଥିବା ଶର ରଖିଦେଲଣି । ୪

ଉଭୟେ–ନିଃସନ୍ଦେହ । ରାଜର୍ଷି ଦୁଷ୍ୟନ୍ତ ମହା ପ୍ରଭବଶାଳୀ ।

ପ୍ରଥମା– ଆର୍ଯ୍ୟ, ଏଇ କେତେ ଦିନ ହେଲା ନଗରପାଳ ବିଶ୍ୱାବସୁ ଆମକୁ ରାଣୀଙ୍କ ପାଦତଳକୁ ପଠାଇଛନ୍ତି । ଏଠାରେ ପ୍ରମୋଦ ବନକୁ ରକ୍ଷା କରିବା କାର୍ଯ୍ୟ ଆମକୁ ଦିଆହୋଇଛି । ନୂଆ ହୋଇ ଆସିଥିବା ଯୋଗୁ ଆମେ ଏ କଥା ଜାଣି ନ ଥିଲୁଁ ।

କଞ୍ଚୁକୀ–ହେଉ, ଆଉ ଏଭଳି କରିବ ନାହିଁ ।

ଉଭୟେ–ଆର୍ଯ୍ୟ, ଆମକୁ କୌତୂହଳ ବୋଧ ହେଉଛି, ମହାରାଜ କାହିଁକି ବସନ୍ତ ଉତ୍ସବ ବନ୍ଦ କରି ଦେଇଛନ୍ତି ? ଯଦି ଏଥିରେ କିଛି ଅପ୍ରକାଶ୍ୟ ନ ଥାଏ, ତେବେ ଆମକୁ କହନ୍ତୁ ।

सानु—उस्सवप्पिआ खु मणुसा। गुरुणा कारणेण होदव्वं। (उत्सवप्रियाः खलु मनुष्याः। गुरुणा कारणेन भवितव्यम्।)

कञ्चु—बहुलीभूतमेतन् किं न कथ्यते। किमत्रवत्योः कर्णपथं नायातं शकुन्तलाप्रत्यादेशकौलीनम् ?

उभे—सुदं रट्ठिअमुहादो जाव अंगुलीयदंसणं।
(श्रुतं राष्ट्रियमुखाद् यावदङ्गुलीयकदर्शनम्।)

कञ्चु—तेन हि अल्पं कथयितव्यम्। यदैव खलु स्वाङ्गुलीयकदर्शनादनुस्मृतं देवेन 'सत्यमूढपूर्वा मे तत्रभवती रहसि शकुन्तला मोहात् प्रत्यादिष्टे'ति तदाप्रभृत्येव पश्चात्तापमुपगतो देवः। तथा हि—

रम्यं द्वेष्टि यथा पुरा प्रकृतिभिर्न प्रत्यहं सेव्यते
शय्याप्रान्त विवर्तनैर्विगमयत्युन्निद्र एव क्षपाः।
दाक्षिण्येन ददाति वाचमुचितामन्तःपुरेभ्यो यदा
गोत्रेषु स्खलितस्तदा भवति च व्रीडाविलक्षश्चिरम्॥ ५॥

सानु—पिअं मे। (प्रियं मे।)

कञ्चु—अस्मात् प्रभवतो वैमनस्यादुत्सवः प्रत्याख्यातः।

उभे—जुज्जइ। (युज्यते।)

(नेपथ्ये)

एदु एदु भवं। (एतु एतु भवान्।)

कञ्चु—(कर्णं दत्त्वा) अये ! इत एवाभिवर्तते देवः। स्वकर्मानुष्ठीयताम्।

उभे—तह। (तथा।)

(निष्क्रान्ते)

॥ इति युग्मविष्कम्भकः ॥



ସାନୁମତୀ—ମନୁଷ୍ୟମାନେ ତ ଉତ୍ସବପ୍ରିୟ । ତେବେ ଏଥିରେ କିଛି ଗୋଟାଏ ବଡ କାରଣ ଥିବ ।

କଞ୍ଚୁକୀ— ଏ ବିଷୟ ତ ସବୁ ଆଡେ ପ୍ରକଟ । ମୁଁ ବା ଏକା କାହିଁକି ନ କହିବି ? ତୁମ୍ଭେମାନେ ଶକୁନ୍ତଳାଙ୍କ ପ୍ରତ୍ୟାଖ୍ୟାନ କଥା କ'ଣ ଶୁଣିନାହଁ ?

ଉଭୟେ— ନଗରପାଳଙ୍କଠାରୁ ମୁଦି ମିଳିବା ପର୍ଯ୍ୟନ୍ତ ଶୁଣିଛୁଁ ।

କଞ୍ଚୁକୀ— ତା'ହେଲେ ଆଉ ଅଳ୍ପ କହିବାକୁ ପଡ଼ିବ । ଯେତେବେଳେ ନିଜ ମୁଦିକୁ ଦେଖି ରାଜା ସ୍ମରଣ କଲେ ଯେ, ସେ ପ୍ରକୃତରେ ଶକୁନ୍ତଳାଙ୍କୁ ଗୋପନରେ ବିବାହ କରିଛନ୍ତି, ଏବଂ ବିସ୍ମରଣ ବଶତଃ ପ୍ରତ୍ୟାଖ୍ୟାନ କରିଛନ୍ତି, ସେହି ସମୟଠାରୁ ସେ ପଶ୍ଚାତ୍ତାପ ଭୋଗ କରୁଛନ୍ତି । ବର୍ତ୍ତମାନ ତାଙ୍କୁ ସୁନ୍ଦର ପଦାର୍ଥମାନ ପ୍ରୀତିକର ବୋଧ ହେଉନାହିଁ । ପୂର୍ବଭଳି ସେ ପାତ୍ର, ମନ୍ତ୍ରୀ ପ୍ରଭୃତିଙ୍କର ରହଣରେ ପ୍ରତିଦିନ ବସୁନାହାଁନ୍ତି । ଶଯ୍ୟା ଉପରେ କଡ ଲେଉଟାଇ ଲେଉଟାଇ ସାରା ରାତି ଅନିଦ୍ରାରେ ଅତିବାହିତ କରୁଛନ୍ତି । କେତେବେଳେ ଯଦି ଉଦାରତାବଶତଃ ଅନ୍ତଃପୁରର ରାଣୀମାନଙ୍କ ସହିତ ଆଳାପ କରୁଛନ୍ତି, ତେବେ ଶକୁନ୍ତଳାଙ୍କ ନାମ ଭୁଲରେ ତାଙ୍କ ମୁହଁରୁ ବାହାରି ପଡୁଛି ଏବଂ ସେଥିନିମନ୍ତେ ସେ ଦୀର୍ଘ ସମୟ ଯାଏ ଲଜ୍ଜିତ ହେଉଛନ୍ତି ।

ସାନୁ— ମୋ ପକ୍ଷରେ ଏହା ବଡ ଶୁଭ ସମ୍ବାଦ ।

କଞ୍ଚୁକୀ— ଏହିପରି ପ୍ରବଳ ଉଦ୍‌ବେଗ ହେତୁ ସେ ବସନ୍ତ ଉତ୍ସବ ବନ୍ଦ କରିଦେଇଛନ୍ତି ।

ଉଭୟେ— ଠିକ୍ ।

(ନେପଥ୍ୟେ)

ମହାରାଜ ଆସିବା ହୁଅନ୍ତୁ ।

କଞ୍ଚୁକୀ— ( କାନ ଡେରି ) ଆରେ ! ମହାରାଜ ଏଣିକି ଆସୁଛନ୍ତି ! ତୁମେମାନେ ଯାଅ, ନିଜ ନିଜର କାମରେ ଲାଗ ।

ଉଭୟେ—ହେଉ । ( ପ୍ରସ୍ଥାନ କଲେ )

।। ଯୁଗ୍ମବିଷ୍କମ୍ଭକ ଶେଷ ।।

..............................

# षष्ठोऽङ्कः

( ततः प्रविशति पश्चात्तापसदृशवेषो राजा विदूषकः प्रतीहारी च )

कञ्चु—( राजानमवलोक्य ) अहो सर्वास्ववस्थासु रमणीयत्वमाकृतिविशेषाणाम् । एवमुत्सुकोऽपि प्रियदर्शनो देवः । तथा हि—

प्रत्यादिष्टविशेषमण्डनविधिर्वामप्रकोष्ठे श्लथं
विभ्रत् काञ्चनमेकमेव वलयं श्वासोपरक्ताधरः ।
चिन्ताजागरण प्रताम्रनयनस्तेजोगुणैरात्मनः
संस्कारोल्लिखितो महामणिरिव क्षीणोऽपि नालक्ष्यते ॥ ६ ॥

सानु—( राजानं दृष्ट्वा ) ठाणे खु पच्चादेसविमाणिदा वि इमस्स किदे सउंदला किलम्मदि त्ति । ( स्थाने खलु प्रत्यादेशविमानिताप्यस्य कृते शकुन्तला क्लाम्यतीति । )

राजा—( ध्यानमन्दं परिक्रम्य )

प्रथमं सारङ्गाक्ष्या प्रियया प्रतिबोध्यमानमपि सुप्तम् ।
अनुशयदुःखायेदं हतहृदयं संप्रति विबुद्धम् ॥ ७ ॥

सानु—णं ईदिसाणि तवस्सिणीए भाअहेआणि ?
( नन्वीदृशानि तपस्विन्या भागधेयानि ? )

विदू—( आत्मगतम् ) लंघिदो एसो भूओ वि सउंदलावाहिणा । ण आणे कहं चिकिच्छिदव्वो भविस्सदि त्ति । ( लङ्घित एषः भूयोऽपि शकुन्तलाव्याधिना । न जाने कथं चिकित्सितव्यो भविष्यतीति । )

कञ्चु—( उपगम्य ) जयतु महाराजः । महाराज ! प्रत्यवेक्षिताः प्रमदवनभूमयः' यथाकाममध्यास्तां विनोदस्थानानि महाराजः ।

# ଷଷ୍ଠ ଅଙ୍କ

( ତାହା ପରେ ପଶ୍ଚାତ୍ତାପ-ଅନୁରୂପ ବେଶରେ ରାଜାଙ୍କର ପ୍ରବେଶ । ସଙ୍ଗରେ ବିଦୂଷକ ଏବଂ ପ୍ରତୀହାରୀ )

କଞ୍ଚୁକୀ– ( ରଜାଙ୍କ ଅଡ଼କୁ ଚାହିଁ ) ସୁନ୍ଦର ଆକୃତି ସବୁ ଅବସ୍ଥାରେ ସୁନ୍ଦର । ମହାରଜ ବର୍ତ୍ତମାନ ଉଦ୍‌ବିଗ୍ନ ଅବସ୍ଥାରେ ଥିଲେ ମଧ୍ୟ ସୁନ୍ଦର ଦେଖାଯାଉଛନ୍ତି ।

ସେ ବାମ ହାତରେ ଗୋଟିଏ ମାତ୍ର ସୁବର୍ଣ୍ଣ କଙ୍କଣ ବ୍ୟତୀତ ଅନ୍ୟ ସମସ୍ତ ଭୂଷଣ ପରିତ୍ୟାଗ କରିଛନ୍ତି । ଉଷ୍ଣ ଶ୍ୱାସବାୟୁରେ ତାଙ୍କର ଅଧର ଶୁଷ୍କ ହୋଇଯାଉଛି । ଚିନ୍ତା ଏବଂ ଅନିଦ୍ରା ଯୋଗୁଁ ଚକ୍ଷୁ ଆରକ୍ତ ଦିଶୁଛି । ଯେପରି କୌଣସି ମହାମୂଲ୍ୟ ମଣିକୁ ଶାଣ ଦେଲା ପରେ ତାହା ବସ୍ତୁତଃ କ୍ଷୀଣ ହୋଇଗଲେ ମଧ୍ୟ ନିଜର ଜ୍ୟୋତି ହେତୁ କ୍ଷୀଣ ଦେଖାଯାଏ ନାହିଁ, ସେହିପରି ମହାରାଜ କ୍ଷୀଣ ହୋଇଯାଇଥିଲେ ମଧ୍ୟ କ୍ଷୀଣ ଜଣାପଡୁନାହାଁନ୍ତି ।

ସାନୁ– ( ରଜାଙ୍କୁ ଚାହିଁ ) ଶକୁନ୍ତଳା ଏ ରଜାଙ୍କଦ୍ୱାରା ଅବଜ୍ଞାରେ ପ୍ରତ୍ୟାଖ୍ୟାତ ହୋଇଥିଲେ ସୁଦ୍ଧା ଏହାଙ୍କ ପାଇଁ ଯେ ଦୁଃଖ ଅନୁଭବ କରୁଛି, ତାହା ତା' ପକ୍ଷରେ ଉଚିତ ।

ରଜା– ( ଚିନ୍ତାମଗ୍ନ ଭବରେ ଧୀରେ ଧୀରେ ପଦ ଚାରଣା କରି ) ଯେତେବେଳେ ମୃଗାକ୍ଷୀ ପ୍ରିୟା ମୋର ହୃଦୟକୁ ଜାଗ୍ରତ କରଉଥିଲା, ସେତେବେଳେ ହତଭଗା ହୃଦୟ ନିଦ୍ରିତ ରହିଲା ; ଆଉ ବର୍ତ୍ତମାନ କେବଳ ପଶ୍ଚାତ୍ତାପ-କଷ୍ଟ ଭୋଗିବା ପାଇଁ ଜାଗ୍ରତ ହେଉଛି । ୭

ସାନୁ– ଆହା, ଦୁଃଖିନୀ ଶକୁନ୍ତଳାର ଅଦୃଷ୍ଟ ଏଭଳି !

ବିଦୂ– ( ସ୍ୱଗତ ) ଶକୁନ୍ତଳା-ବ୍ୟାଧି ଏହାଙ୍କୁ ପୁଣି ଘାରିଲାଣି ! କେଜାଣି କିପରି ଏ ସୁସ୍ଥ ହେବେ !

କଞ୍ଚୁକୀ– ( ନିକଟକୁ ଯାଇ ) ମହାରାଜଙ୍କର ଜୟ ହେଉ । ମହାରଜ, ମୁଁ ଭଲ ଭବରେ ପ୍ରମୋଦ ବନକୁ ପର୍ଯ୍ୟବେକ୍ଷଣ କରି ଆସିଲି । ଆପଣ ଇଚ୍ଛାନୁସାରେ ବିନୋଦ ସ୍ଥାନମାନଙ୍କରେ ବସନ୍ତୁ ।

राजा—वेत्रवति ! मद्वचनादमात्यमार्यपिशुनं ब्रूहि अद्य चिरप्रबोधनान्न संभावितमस्माभिरद्य धर्मासनमध्यासितुम् । यत् प्रत्यवेक्षितं पौरकार्यमार्येण तत् पत्रारूढं कृत्वा प्रस्थाप्यतामिति ।

प्रती—जं देवो आणवेदि । ( यद् देव आज्ञापयति ) (निष्क्रान्ता)

राजा—वातायन ! त्वमपि स्वं नियोगमशून्यं कुरु ।

कञ्चु—यदाज्ञापयति देवः । ( निष्क्रान्तः )

विदू—किदं भवदा णिम्मच्छिअं । संपदं सिसिरातवच्छेअरमणीए इमस्सिं पमदवणुद्देसे अत्ताणं रमइस्ससि । ( कृतं भवता निर्मक्षिकम् । सांप्रतं शिशिरातपच्छेदरमणीये अस्मिन् प्रमदवनोद्देशे आत्मानं रमयिष्यसि । )

राजा—वयस्य ! रन्ध्रोपनिपातिनोऽनर्था इति यदुच्यते तदव्यभिचारि । कुतः

मुनिसुताप्रणयस्मृतिरोधिना
मम च मुक्तमिदं तमसा मनः ।
मनसिजेन सखे ! प्रहरिष्यता
धनुषि चूतशरश्च निवेशितः ॥ ८ ॥

विदू—चिट्ठ दाव, इमिणा दंडकट्ठेण कंदप्पवाणं णासइस्सं । ( तिष्ठ तावत्, अनेन दण्डकाष्ठेन कन्दर्पबाणं नाशयिष्यामि ।)

( दण्डकाष्ठमुद्यम्य चूताङ्कुरं पातयितुमिच्छति )

राजा—( सस्मितम् ) भवतु, दृष्टं ब्रह्मवर्चसम् । सखे ! क्वोपविष्टः प्रियायाः किंचिदनुकारिणीषु लतासु दृष्टिं विलोभयामि ।

विदू—णं आसण्णपरिआरिआ चदुरिआ भवदा संदिट्ठा-माहवीमंडवे इमं वेलं अदिवाहिस्सं । तहिं मे चित्तफलअगदं सहत्थलिहिदं तत्तहोदीए सउंदलाए पडिकिदिं आणेहि त्ति । ( ननु आसन्नपरिचारिका चतुरिका भवता संदिष्टा—माधवीमण्डपे इमां वेलामतिवाहयिष्ये । तत्र मे चित्रफलकगतां स्वहस्तलिखितां तत्रभवत्याः शकुन्तलायाः प्रतिकृतिमानयेति । )

ରାଜା– ପ୍ରତୀହାରୀ, ମୋର ଆଦେଶ ଅନୁସାରେ ଅମାତ୍ୟ ଆର୍ଯ୍ୟପିଶୁନଙ୍କୁ ଜଣାଇଦିଅ ଯେ ଆଜି ବିଳମ୍ବରେ ଉଠିଥିବା ହେତୁ ମୁଁ ଧର୍ମାସନରେ ବସି ପାରିବି ନାହିଁ । ସେ ପ୍ରଜାମାନଙ୍କର ଯାହା କିଛି କାର୍ଯ୍ୟ ବୁଝିବେ, ପତ୍ରରେ ଲେଖି ପଠାଇଦେବେ ।

ପ୍ରତୀ– ମହାରାଜଙ୍କର ଯାହା ଆଜ୍ଞା ।

ରାଜା– ବାତାୟନ ତୁମେ ମଧ୍ୟ ନିଜ କାମରେ ନିୟୋଜିତ ରହ ।

କଞ୍ଚୁକୀ– ଯଥାଜ୍ଞ ମହାରାଜ । ( ଚାଲିଗଲେ )

ବିଦୂ– ଆଉ ମାଛିଟି ମଧ୍ୟ ଆପଣ ଏଠି ରଖୁନାହାଁନ୍ତି । ବର୍ତ୍ତମାନ ଏହି ପ୍ରମୋଦବନରେ ଗ୍ରୀଷ୍ମ ନାହିଁ କି ଶୀତ ନାହିଁ । ତେଣୁ ରମଣୀୟ ସ୍ଥାନମାନଙ୍କରେ ଆପଣ ଚିତ୍ତବିନୋଦନ କରନ୍ତୁ ।

ରାଜା– ମିତ୍ର, ଛିଦ୍ର ପାଇଲେ ଯେ ଅନର୍ଥ ଗୋଟିକ ପରେ ଗୋଟିଏ ଆସନ୍ତି, ଏହା ଠିକ୍ । କାରଣ—

ଏଣେ, ଯେଉଁ ବିସ୍ମୃତି-ଅନ୍ଧକାର ଶକୁନ୍ତଳାର ପ୍ରଣୟସ୍ମୃତିକୁ ଆଚ୍ଛନ୍ନ କରିଥିଲା, ତାହା ମୋ ମନରୁ ଅପସରି ଯାଇଛି ; ତେଣେ କନ୍ଦର୍ପ ମୋତେ ପ୍ରହାର କରିବାକୁ ଧନୁରେ ଚୂତଶର ସଂଯୋଗ କରିଛି । ୮

ବିଦୂ– ଆଚ୍ଛା, ଟିକିଏ ଅପେକ୍ଷା କର । ମୁଁ ଏହି କାଠବାଡ଼ିରେ କନ୍ଦର୍ପର ବାଣକୁ ଖଣ୍ଡ ଖଣ୍ଡ କରି ଦେଉଛି । ( ବାଡ଼ି ଉଠାଇ ଆମ୍ର ବଉଳକୁ ପିଟିବାକୁ ଉଦ୍ୟତ । )

ରାଜା– ( ସ୍ମିତହାସ୍ୟ କରି ) ଥାଉ ଥାଉ, ତୁମର ବ୍ରହ୍ମତେଜ ଦେଖାଗଲାଣି । ମିତ୍ର, କେଉଁଠାରେ ଟିକିଏ ବସି ମୋର ପ୍ରିୟାକୁ ଅନୁକରଣ କରୁଥିବା ଲତାମାନଙ୍କୁ ଚାହିଁ ଦୃଷ୍ଟି ବିନୋଦନ କରିବି ।

ବିଦୂ– ଆପଣ ପରା ପାଖ ପରିଚାରିକା ଚତୁରିକାକୁ କହିଥିଲେ–"ମାଧବୀ କୁଞ୍ଜରେ କିଛି ସମୟ ଅତିବାହିତ କରିବି । ଚିତ୍ରପଟ ଉପରେ ଶକୁନ୍ତଳାଙ୍କର ଯେଉଁ ଚିତ୍ରଟି ମୁଁ ଅଙ୍କନ କରିଛି, ତାହାକୁ ଘେନି ସେଠାକୁ ଆସ ।"

राजा—ईदृशं हृदयविनोदनस्थानम् । तत् तमेव मार्गमादेशय ।

विदू—इदो इदो भवं । ( इत इतो भवान् । )

( उभौ परिक्रामतः, सानुमत्यनुगच्छति )

विदू—एसो मणिसिलापट्टअसणाहो माहवीमंडवो उवहाररमणिज्जदाए णिस्संसअं साअदेण विअ णो पडिच्छदि । ता पविसिअ णिसीददु भवं । ( एष मणिशिलापट्टकसनाथो माधवीमण्डपः उपहाररमणीयतया निःसंशयं स्वागतेनेव नौ प्रतीच्छति । तत् प्रविश्य निषीदतु भवान् । )

( उभौ प्रवेशं कृत्वोपविष्टौ )

सानु—लदासंस्सिदा पेक्खिस्सं दाव सहीए पडिकिदिं । तदो से भत्तुणो बहुमुहं अणुराअं णिवेदइस्सं । ( लतासंश्रिता द्रक्ष्यामि तावत् सख्याः प्रतिकृतिम् । ततोऽस्या भर्तुर्बहुमुखमनुरागं निवेदयिष्यामि । )

( तथा कृत्वा स्थिता )

राजा—सखे ! सर्वमिदानीं स्मरामि शकुन्तलायाः प्रथमवृत्तान्तम् । कथितवानस्मि भवते च । स भवान् प्रत्यादेशवेलायां मत्समीपगतो नासीत् । पूर्वमपि न त्वया कदाचित् सकीर्तितं तत्रभवत्या नाम । कच्चिदहमिव विस्मृतवानसि त्वम् ?

विदू—ण विसुमरामि । किंतु सव्वं कहिअ अवसाणे उण तुए परिहासविअप्पओ एसो, ण भूदत्थो त्ति आचक्खिदं । मए वि मिप्पिंडबुद्धिणा तह एव्व गहीदं । अहवा भविदव्वदा खु बलवदी । ( न विस्मरामि । किंतु सर्वं कथयित्वा अवसाने परिहासविजल्प एष, न भूतार्थ इत्याख्यातम् । मयापि मृत्पिण्डबुद्धिना तथैव गृहीतम् । अथवा भवितव्यता खलु बलवती । )

सानु—एव्वं णेदं । ( एवं नन्वेतत् । )।

राजा—( ध्यात्वा ) सखे ! त्रायस्व माम् ।

ରାଜା— ହଁ, ଚିତ୍ତବିନୋଦନ ନିମନ୍ତେ ତାହା ସୁନ୍ଦର ସ୍ଥାନ । ତେବେ ସେଠାକୁ ଚାଲ ।

ବିଦୂ— ଆସନ୍ତୁ ।
( ଦୁଇଜଣ ଚାଲିଲେ । ପଛେ ପଛେ ସାନୁମତୀ ଯାଉଥାଆନ୍ତି । )

ବିଦୂ— ହେଇ ମାଧବୀକୁଞ୍ଜ । ଏହା ଭିତରେ ମଣିଶିଳାର ପୀଠିକା ଅଛି । ପୁଷ୍ପ-ଉପହାର ଦେଇ ଏ କୁଞ୍ଜ ଆମକୁ ସ୍ୱାଗତ-ସମ୍ବର୍ଦ୍ଧନା ଜଣାଇଲା ପରି ବୋଧ ହେଉଛି । ଚାଲନ୍ତୁ, ଏହା ଭିତରେ ପ୍ରବେଶ କରି ବସନ୍ତୁ ।
( ଉଭୟେ କୁଞ୍ଜ ଭିତରକୁ ଯାଇ ବସିଲେ )

ସାନୁ— ମୁଁ ଲତା ଆଢୁଆଳରେ ରହି ସଖୀର ଚିତ୍ରକୁ ଦେଖିବି । ତାହା ପରେ ତା' ସ୍ୱାମୀଙ୍କର ନିବିଡ ଅନୁରାଗ ବିଷୟ ତାକୁ ଯାଇ କହିବି । ( ଏକ ଲତା ପାଖରେ ବସିଲେ । )

ରାଜା— ବନ୍ଧୁ, ବର୍ତ୍ତମାନ ମୁଁ ଶକୁନ୍ତଳା ସମ୍ବନ୍ଧରେ ସମସ୍ତ ବୃତ୍ତାନ୍ତ ସ୍ମରଣ କରୁଛି । ସେହି ବୃତ୍ତାନ୍ତ ତୁମକୁ ମଧ୍ୟ କହିଥିଲି । ଶକୁନ୍ତଳାକୁ ପରିତ୍ୟାଗ କଲାବେଳେ ତୁମେ ମୋ ପାଖରେ ନ ଥିଲ । କିନ୍ତୁ ତାହା ପୂର୍ବରୁ ମଧ୍ୟ ତୁମେ ତାଙ୍କ ନାମ କେବେ ତ ଉଚ୍ଚାରଣ କରିନାହଁ ! କଅଣ ମୋ ଭଳି ତୁମେ ମଧ୍ୟ ତାଙ୍କୁ ଭୁଲି ଯାଇଥିଲ ?

ବିଦୂ— ନା, ଭୁଲିନାହିଁ । ମାତ୍ର ତୁମେ ସମସ୍ତ କଥା କହିସାରି ଶେଷରେ କହିଥିଲ ଯେ,ଏହା କେବଳ ପରିହାସର କଥା,ପ୍ରକୃତ କଥା ନୁହେଁ । ମୁଁ ମଧ୍ୟ ମାଟିକୁଣ୍ଢେଇ ଭଳି ସେଇଆ ବୁଝିଲି । ତେବେ ଯାହା ଘଟିବାର ଥାଏ, ନିଶ୍ଚୟ ଘଟେ ।

ସାନୁ— ଠିକ୍ କଥା ।

ରାଜା— ମିତ୍ର, ମୋତେ ରକ୍ଷା କର ।

विदू—भो ! किं एदं ? अणुववण्णं खु ईदिसं तुइ। कदा वि सत्पुरिसा सोअपत्तप्पाणो ण होंति। णं पवादे वि णिक्कंपा गिरीओ। (भोः ! किमेतत् ? अनुपपन्नं खल्वीदृशं त्वयि। कदापि सत्पुरुषाः शोकपात्रात्मानो न भवन्ति। ननु प्रवातेऽपि निष्कम्पा गिरयः।)

राजा—वयस्य ! निराकरणविक्लवायाः प्रियायाः समवस्थामनुस्मृत्य बलवदशरणोऽस्मि। सा हि—

इतः प्रत्यादिष्टा स्वजनमनुगन्तुं व्यवसिता
स्थिता तिष्ठेत्युच्चैर्वदति गुरुशिष्ये गुरुसमे।
पुनर्दृष्टिं बाष्पप्रसरकलुषामर्पितवती
मयि क्रूरे यत्, तत् सविषमिव शल्यं दहति माम् ॥ ९ ॥

सानु—अम्महे ईदिसी स्वकज्जपरदा। इमस्स संदावेण अहं रमामि। (अहो, ईदृशी स्वकार्यपरता। अस्य संतापेनाहं रमे।)

विदू—भो ! अत्थि मे तक्को—केण वि तत्तहोदी आआसचारिणा णीदे त्ति। (भोः ! अस्ति मे तर्कः—केनापि तत्रभवती आकाशचारिणा नीतेति।)

राजा—कः पतिदेवतामन्यः परामर्ष्टुमुत्सहेत ? मेनका किल सख्यास्ते जन्मप्रतिष्ठेति श्रुतवानस्मि। तत्सहचारिणीभिः सखी ते हृतेति मे हृदयमाशङ्कते।

सानु—संमोहो खु विम्हअणिज्जो ण पडिबोहो। (संमोहः खलु विस्मयनीयः, न प्रतिबोधः।)

विदू—जइ एवं ता समस्ससदु भवं। अत्थि खु समाअमो कालेण तत्तहोदीए। (यद्येवम्, समाश्वसितु भवान्। अस्ति खलु समागमः कालेन तत्रभवत्या।)

राजा—कथमिव ?

विदू—ण खु मादापिदरा भत्तुविओअदुक्खिअं दुहिदरं चिरं पेक्खिदुं पारेंति। (न खलु मातापितरौ भर्तृवियोगदुःखितां दुहितरं चिरं द्रष्टुं पारयतः।)

ବିଦୂ— ଆହେ, ଏ କଅଣ ? ଆପଣଙ୍କ ପକ୍ଷରେ ଏହା କଅଣ ଶୋଭପାଏ ? ସତ୍‌ପୁରୁଷମାନେ କଦାପି ଶୋକାକୁଳ ହୁଅନ୍ତି ନାହିଁ । ତୋଫାନରେ ମଧ୍ୟ ପର୍ବତ ଅଟଳ ରହେ ।

ରାଜା— ମିତ୍ର, ପ୍ରତ୍ୟାଖ୍ୟାନ କଲାବେଳେ ପ୍ରିୟତମା ଯେଭଳି ଅଧୀର ହୋଇଉଠୁଥିଲା, ତାହା ସ୍ମରଣ କରି ମୁଁ ଆଉ ଧୈର୍ଯ୍ୟ ଧରି ପାରୁ ନାହିଁ— ମୁଁ ପ୍ରତ୍ୟାଖ୍ୟାନ କରିଦିଅନ୍ତେ ସେ ଆତ୍ମୀୟ ବ୍ୟକ୍ତିମାନଙ୍କ ପଛେପଛେ ଚାଲିଲା । ଗୁରୁତୁଲ୍ୟ ଗୁରୁଶିଷ୍ୟ ଯେତେବେଳେ ତାକୁ ଉଚ୍ଚ ସ୍ୱରରେ କହିଲେ— 'ଏହିଠାରେ ରହ' ସେତେବେଳେ ସେ ଅଶ୍ରୁପୂର୍ଣ୍ଣ ଦୃଷ୍ଟିରେ ମୋ ଆଡ଼କୁ ଚାହିଁଲା । ଆଜି ସେହି ଦୃଷ୍ଟି ବିଷବୋଳା ଶଲ୍ୟ ପରି ମୋତେ ଦହନ କରୁଛି । ୯

ସାନୁ— ହାୟ ରେ ସ୍ୱାର୍ଥପରତା ! ଏହାଙ୍କ ଦୁଃଖରେ ମଧ୍ୟ ମୁଁ ଆନନ୍ଦ ବୋଧ କରୁଛି !

ବିଦୂ— ଆହେ, ମୋର ଆଶଙ୍କା ହେଉଛି, କୌଣସି ନଭଶ୍ଚର ଶକୁନ୍ତଳାଙ୍କୁ ନେଇଗଲା ।

ରାଜା ପତିବ୍ରତା ସ୍ତ୍ରୀକୁ ସ୍ପର୍ଶ କରିବାକୁ କିଏ ସାହସ କରିପାରେ ? ମୁଁ ଶୁଣିଛି, ମେନକା ତୁମ ସଖୀଙ୍କର ଜନନୀ । ମେନକାଙ୍କର ସହଚରୀମାନେ ତାଙ୍କୁ ଘେନି ଯାଇଛନ୍ତି ବୋଲି ମୋର ହୃଦୟ ଅନୁମାନ କରୁଛି ।

ସାନ-- ଏ ଯେ ଏ ଭଳି ସ୍ମରଣ କରି ପାରୁଛନ୍ତି, ଏହା ଆଶ୍ଚର୍ଯ୍ୟର ବିଷୟ ନୁହେଁ । ଆଶ୍ଚର୍ଯ୍ୟର ବିଷୟ ହେଉଛି, ଏ କିପରି ଶକୁନ୍ତଳାକୁ ଭୁଲିଯାଇଥିଲେ ।

ବିଦୂ-- ଯଦି ଏଭଳି କଥା, ତେବେ ତାଙ୍କ ସହିତ ଆପଣଙ୍କର ମିଳନ ହେବ । ଆପଣ ଧୈର୍ଯ୍ୟ ଧରନ୍ତୁ ।

ରାଜା-- କିପରି ?

ବିଦୂ - ପିତାମାତା କନ୍ୟାକୁ ସ୍ୱାମୀ ବିଚ୍ଛେଦରେ ଦୀର୍ଘକାଳ ଦୁଃଖିତା ହେବାର ଦେଖି ପାରନ୍ତି ନାହିଁ ।

राजा—वयस्य !

स्वप्नो नु, माया नु मतिभ्रमो नु
क्लृप्तं नु तावत् फलमेव पुण्यम् ।
असंनिवृत्त्यै तदतीतमेव
मनोरथा नाम तटप्रपाताः ॥ १० ॥

विदू—मा एव्वं, णं अंगुलीअअं एव्व णिदंसणं, अवस्संभाविणो अचिंतणिज्जो समाअमो होदि त्ति । ( मैवम्, नन्वङ्गुलीयकमेव निदर्शनम्, अवश्यंभाविनः अचिन्तनीयः समागमो भवतीति । )

राजा—( अङ्गुलीयकं विलोक्य ) अये ! इदं तावदसुलभस्थानभ्रंशि शोचनीयम् ।

तव सुचरितमङ्गुलीय ! नूनं
प्रतनु ममेव विभाव्यते फलेन ।
अरुणनखमनोहरासु तस्या-
श्च्युतमसि लब्धपदं यदङ्गुलीषु ॥ ११ ॥

सानु—जइ अण्णहत्थगदं भवे सच्चं एव्व सोअणिज्जं भवे । ( यदि अन्यहस्तगतं भवेत् सत्यमेव शोचनीयं भवेत् । )

विदू—भो ! इअं णाममुद्दा केण उग्घादेण तत्तहोदीए हत्थब्भासं पाविदा ? ( भोः ! इयं नाममुद्रा केनोद्घातेन तत्रभवत्या हस्ताभ्याशं प्रापिता ? )

सानु—मम विअ कोदूहलेण आलाविदो एसो । ( ममेव कौतूहलेनालापित एषः । )

राजा—श्रूयताम्, स्वनगराय प्रस्थितं मां प्रिया सबाष्पमाह—कियच्चिरेणार्यपुत्रः प्रतिपत्तिं दास्यतीति ।

विदू—तदो तदो ? ( ततस्ततः ? )

ରାଜା– ମିତ୍ର ! ଶକୁନ୍ତଳା ସହିତ ମୋର ମିଳନ ଘଟିଥିଲା, ଏହା ଏକ ସ୍ୱପ୍ନ, ନା ମାୟା, ନା ମତିଭ୍ରମ ? କିମ୍ବା ମୋର କୌଣସି ପୁଣ୍ୟ ଫଳ ଥିଲା, ତାହା ସରିଯାଇଛି ? ଶକୁନ୍ତଳା ସହିତ ମିଳନ ଚିରଦିନ ପାଇଁ ଅତୀତ ହୋଇଛି । ପର୍ବତ ଉପରୁ ଜଳଧାର ତଳେ ପଡ଼ି ଛିନ୍ନଛତ୍ର ହୋଇଗଲା ପରି ମୋର ସମସ୍ତ ଆଶା ଚୂର୍ଣ୍ଣ ହୋଇଯାଇଛି । ୧୦

ବିଦୂ– ଏଭଳି କହନ୍ତୁ ନାହିଁ । ଯାହା ନିର୍ଦ୍ଧାରିତ ଥାଏ, ତାହା ଅଦ୍ଭୁତ ଭାବରେ ଆସି ମିଳେ । ଏହି ମୁଦି ହେଉଛି ତାହାର ଉଦାହରଣ ।

ରାଜା– ( ମୁଦିକୁ ଚାହିଁ ) ହାୟ ! ଏ ଅତି ଦୁର୍ଲଭ ସ୍ଥାନରୁ ଚ୍ୟୁତ ହୋଇ କି ଶୋଚନୀୟ ଅବସ୍ଥା ପାଇଛି !

ଅଙ୍ଗୁରୀୟ, ମୋ ପରି ତୁମର ପୁଣ୍ୟ ମଧ୍ୟ ଅଳ୍ପ, ଏହା ପରିଣତିରୁ ପ୍ରମାଣିତ ହୋଇଛି । ଯେ ହେତୁ, ତୁମେ ତା'ର ଲୋହିତନଖବିଶିଷ୍ଟ ସୁନ୍ଦର ଅଙ୍ଗୁଳିରେ ସ୍ଥାନ ପାଇ ପୁଣି ସେଠାରୁ ଭ୍ରଷ୍ଟ ହୋଇଛ । ୧୧

ସାନୁ– ଯଦି ଅନ୍ୟ କାହା ହାତକୁ ଯାଇଥାଆନ୍ତା, ତେବେ ପ୍ରକୃତରେ ଶୋଚନୀୟ ହୋଇଥାଆନ୍ତା ।

ବିଦୂ– ଆହେ, ଏ ନାମାଙ୍କିତ ମୁଦିଟି ଆପଣ କାହିଁକି ତାଙ୍କ ହାତରେ ପିନ୍ଧାଇ ଦେଇଥିଲେ ?

ସାନୁ– ମୁଁ ମଧ୍ୟ ଏହା ଜାଣିବାକୁ ଚାହୁଁଛି ।

ରାଜା– ଶୁଣ ! ମୁଁ ଯେତେବେଳେ ନଗରକୁ ଫେରି ଆସିବାକୁ ବାହାରିଲି, ସେତେବେଳେ ପ୍ରିୟା ଅଶ୍ରୁପୂର୍ଣ୍ଣ ଚକ୍ଷୁରେ ମୋତେ କହିଲା— " ଆପଣ କେବେ ପୁଣି ମୋ ପାଖକୁ ବାର୍ତ୍ତା ପଠାଇବେ ?"

ବିଦୂ– ତା' ପରେ ?

राजा—पश्चादिमां मुद्रां तदङ्गुलौ निवेशयता मया प्रत्यभिहिता—

एकैकमत्र दिवसे दिवसे मदीयं
नामाक्षरं गणय यासि न यावदन्तम् ।
तावत् प्रिये ! मदवरोधनिदेशवर्त्ती
नेता जनस्तव समीपमुपैष्यतीति ॥ १२ ॥

तच्च दारुणात्मना मया मोहान्नानुष्ठितम् ।

सानु—रमणीओ खु अवही विहिणा विसंवादिदो ।
( रमणीयः खल्ववधि विधिना विसंवादितः । )

विदू—कहं धीवलकप्पिअस्स लोहिअमच्छस्स उदलब्भंतले आसि ?
( कथं धीवरकल्पितस्य रोहितमत्स्यस्योदराभ्यन्तर आसीत् ? )

राजा—शचीतीर्थं वन्दमानायाः सख्यास्ते हस्ताद् गङ्गास्रोतसि परिभ्रष्टम् ।

विदू—जुज्जइ । ( युज्यते । )

सानु—अदो एव्व तवस्सिणीए सउंदलाए अधम्मभीरुणो इमस्स राएसिणो परिणए संदेहो आसि । अहवा, ईदिसो अणुराओ अहिण्णाणं अवेक्खदि, कहं विअ एदं ? ( अत एव तपस्विन्याः शकुन्तलाया अधर्मभीरोरस्य राजर्षेः परिणये संदेह आसीत् । ( सविमर्शं ) अथवा ईदृशोऽनुरागः अभिज्ञानपपेक्षते, कथमिवैतत् ? )

राजा—उपालप्स्ये तावदिदमङ्गुरीयकम् ।

विदू—( आत्मगतम् ) गहीदो णेण पंथा उम्मत्तआणं । ( सस्मितम् ) अहं पि एदं दंडकट्ठं उवालहिस्सं कधं उज्जुअस्स मे कुडिलं तुमं सि त्ति । ( कथं गृहीतोऽनेन पन्था उन्मत्तानाम् । (प्रकाशं सस्मितम् ) अहमपि एतद् दण्डकाष्ठमुपालप्स्ये कथम् ऋजुकस्य मे कुटिलं त्वमसीति । )

ରାଜା— ତା' ପରେ ମୁଁ ଏହି ମୁଦିଟିକୁ ତାର ଅଙ୍ଗୁଳିରେ ପିନ୍ଧାଇ ଦେଇ କହିଲି —"ଏଥିରେ ଥିବା ମୋର ନାମାକ୍ଷରକୁ ତୁମେ ପ୍ରତିଦିନ ଗୋଟିଏ ଗୋଟିଏ କରି ଗଣିବ । ଶେଷ ଅକ୍ଷରର ଗଣନା ସରିବା ପୂର୍ବରୁ ମୋ ଅନ୍ତଃପୁରରୁ ଆଦେଶ ଘେନି, ତୁମକୁ ନେବା ପାଇଁ ଲୋକ ଆସି ପହଞ୍ଚିଯିବେ । ୧୨

କିନ୍ତୁ ମୁଁ ନିଷ୍ଠୁର । ସ୍ମୃତି-ଭଙ୍ଗ ହେତୁ ତାହା ପାଳନ କରି ପାରିଲି ନାହିଁ ।

ସାନୁ— ବଡ ସୁନ୍ଦର ଭାବରେ ସମୟ ଦେଇଥିଲେ, ମାତ୍ର ବିଧାତା ସବୁ ଓଲଟାଇ ଦେଲା ।

ବିଦୂ— କେଉଟ ଯେଉଁ ରୋହୀ ମାଛ ଧରିଥିଲା, ତାହାର ପେଟ ଭିତରକୁ ଏ ମୁଦି କିପରି ଆସିଲା ?

ରାଜା— ତୁମ ସଖୀ ଶଚୀତୀର୍ଥର ବନ୍ଦନା କରୁଥିବା ବେଳେ ସେଠାରେ ତାଙ୍କ ଅଙ୍ଗୁଳିରୁ ଗଙ୍ଗାସ୍ରୋତରେ ଖସି ପଡ଼ିଥିଲା ।

ବିଦୂ— ଠିକ୍ ।

ସାନୁ— ଏଇଥିପାଇଁ ତା'ହେଲେ ଏ ଅଧର୍ମଭୀରୁ ରାଜାଙ୍କର ହତଭାଗିନୀ ଶକୁନ୍ତଳା ସହିତ ବିବାହ ସମ୍ପର୍କରେ ସନ୍ଦେହ ଆସିଥିଲା ! (ଚିନ୍ତା କରି) କିନ୍ତୁ ଏ ଭଳି ଅନୁରାଗରେ ସ୍ମରଣଚିହ୍ନର ଆବଶ୍ୟକତା ବା କଅଣ ?

ରାଜା— ବର୍ତ୍ତମାନ ମୁଦିକୁ ତିରସ୍କାର କରିବି ।

ବିଦୂ— ( ସ୍ୱଗତ ) ପୁଣି ବାହାରିଲା ପାଗଳାମି । ( ପ୍ରକାଶ୍ୟରେ, ମୃଦୁହାସ୍ୟ କରି ) ମୁଁ ମଧ୍ୟ ମୋ କାଠବାଡ଼ିକୁ ତିରସ୍କାର କରିବି ! ଆରେ ! ମୁଁ ତ ସିଧା, ତୁ କାହିଁକି ବଙ୍କା ?

राजा—( अनाकर्णितनाटितकेन अङ्गुलीयकं विलोक्य ) मुद्रिके !

कथं नु तं वन्धुरकोमलाङ्गुलिं
करं विहायासि निमग्नमम्भसि ?
अचेतनं नाम गुणं न लक्षये-
न्मयैव कस्मादवधीरिता प्रिया ॥ १३ ॥

सानु—सअं ज्जेव्व पडिवण्णो जं म्हि वत्तुकामा ।
( स्वयमेव प्रतिपन्नो यदस्मि वक्तुकामा । )

विदू—( आत्मगतम् ) कहं वुभुक्खाए खादिअव्वो म्हि ।
( कथं बुभुक्षया खादितव्योऽस्मि । )

राजा—अकारणपरित्यागानुशयदग्धहृदयस्तावदनुकम्प्यतामयं जनः पुनर्दर्शनेन ।

( प्रविश्यापटीक्षेपेण चित्रफलकहस्ता )

चतु—इअं चित्तगदा भट्टिणी । ( इयं चित्रगता भट्टिनी । )

( चित्रफलकं दर्शयति )

विदू—(निर्वर्ण्य ) साहु वअस्स ! महुरावत्थाणदंसणिज्जो भावाणुप्पवेसो । क्खलदि विअ मे दिट्ठी णिण्णुण्णअप्पदेसेसु । ( साधु वयस्य ! मधुरावस्थानदर्शनीयो भावानुप्रवेशः । स्खलतीव मे दृष्टिर्निम्नोन्नतप्रदेशेषु । )

सानु—अंमो, एसा राएसिणो णिउणदा। जाणे सही अग्गदो मे वट्टदि त्ति । ( अहो, एषा राजर्षेर्निपुणता ! जाने सखी अग्रतो मे वर्तत इति । )

राजा—वयस्य !

यद् यत् साधु न चित्रे स्यात् क्रियते तत् तदन्यथा ।
तथापि तस्या लावण्यं रेखया किंचिदन्वितम् ॥ १४ ॥

सानु—सरिसं एदं पच्छादावगुरुणो सिणेहस्स अणवलेवस्स अ ।
( सदृशमेतत् पश्चात्तापगुरोः स्नेहस्य अनवलेपस्य च । )

ରାଜା-- (ନ ଶୁଣିଲା ପରି ମୁଦ୍ରିକାକୁ ଚାହିଁ) ମୁଦ୍ରିକା ! ତୁ ସୁନ୍ଦର, କୋମଳ-ଅଙ୍ଗୁଳିବିଶିଷ୍ଟ ସେହି ହାତକୁ ଛାଡ଼ି କି ନିମନ୍ତେ ଜଳରେ ନିମଗ୍ନ ହେଲୁ ? ହଁ, ଜଡ ପଦାର୍ଥ ଗୁଣ ଚିହ୍ନିପାରେ ନାହିଁ । ମୁଁ ବା କିପରି ପ୍ରତ୍ୟାଖ୍ୟାନ କଲି ? ୧୩

ସାନ - ମୁଁ ଯାହା କହିବାକୁ ଚାହୁଁଛି, ଏ ନିଜେ ତାହା କହୁଛନ୍ତି ।

ବିଦୂ-- ( ସ୍ୱଗତ ) ଜଣା ଗଲାଣି, ଭୋକ ମୋତେ ଖାଇବ !

ରାଜା— ପ୍ରିୟେ, ମୁଁ ତୁମକୁ ଅକାରଣରେ ପରିତ୍ୟାଗ କରିଛି । ବର୍ତ୍ତମାନ ମୋର ହୃଦୟ ଅନୁତାପରେ ଜଳୁଛି । ପୁଣି ଥରେ ଦର୍ଶନ ଦେଇ ମୋ ପ୍ରତି ଦୟା କର ।

( ପରଦା ଆଡେଇ ଚିତ୍ରପଟ ହସ୍ତେ ଚତୁରିକାର ପ୍ରବେଶ )

ଚତୁରିକା—ହେଇ, ଦେବୀଙ୍କର ଚିତ୍ର । ( ଚିତ୍ରପଟ ଦେଖାଇଲା । )

ବିଦୂ— ଧନ୍ୟ ମିତ୍ର, ଚିତ୍ରଟି ସୁନ୍ଦର ଠାଣିରେ ଅଙ୍କନ କରିଛ । ଏଥିରେ ପରିସ୍ଫୁଟ ଭାବରେ ଭାବ ପ୍ରକାଶିତ ହୋଇଛି । ଚିତ୍ରର ଉଚ୍ଚ ନୀଚ ସ୍ଥାନମାନଙ୍କରେ ମୋର ଦୃଷ୍ଟି ସତେ ଯେପରି ଝୁଣ୍ଟି ଝୁଣ୍ଟି ଗତି କରୁଛି !

ସାନୁ— ଆଶ୍ଚର୍ଯ୍ୟ ! ଏ ରାଜର୍ଷିଙ୍କର ଚିତ୍ରକଳାରେ କି ନିପୁଣତା ! ମନେ ହେଉଛି, ସଖୀ ଯେପରି ମୋ ଆଗରେ ଠିଆ ହୋଇଛି !

ରାଜା— ବନ୍ଧୁ ! ଚିତ୍ରର ଯେଉଁ ଅଂଶ ଗୁଡ଼ିକ ଠିକ୍ ହେଉ ନାହିଁ, ସେଗୁଡ଼ିକୁ ମୁଁ ପୁଣି ଠିକ୍ କରୁଛି । ତଥାପି ପ୍ରିୟାର ରୂପଲାବଣ୍ୟ ଚିତ୍ରତୂଳିକା ଦ୍ୱାରା ସ୍ୱଳ୍ପ ମାତ୍ର ପ୍ରକାଶ ପାଇଛି । ୧୪

ସାନୁ— ପଶ୍ଚାତ୍ତାପରେ ରାଜାଙ୍କର ସ୍ନେହ ବଢି ଯାଇଛି ଏବଂ ଅହଙ୍କାର ଦୂର ହୋଇଛି । ତେଣୁ ଏଭଳି ଉକ୍ତି ତାଙ୍କ ପକ୍ଷେ ଉପଯୁକ୍ତ ।

विदू—भो ! दाणिं तिण्हिओ तत्तहोदीओ दीसंति । सव्वाओ अ दंसणीआओ । कदमा एत्थ तत्तहोदी सउंदला ? ( भोः ! इदानीं तिस्रस्तत्रभवत्यो दृश्यन्ते । सर्वाश्च दर्शनीयाः । कतमात्र तत्रभवती शकुन्तला ? )

सानु—अणभिण्णो खु ईदिसस्स रूवस्स मोहदिट्ठी अअं जणो । ( अनभिज्ञः खलु ईदृशस्य रूपस्य मोहदृष्टिरयं जनः । )

राजा—त्वं तावत् कतमां तर्कयसि ?

विदू—तक्केमि जा एसा सिढिलकेसवधणुव्वंतकुसुमेण केसंतेण उब्भिण्णस्सेअबिंदुणा वअणेण विसेसदो ओसरिआहिं बाहाहिं अवसेअसिणिद्धतरुणपल्लवस्स चूअपाअवस्स पासे ईसिपरिस्संता विअ आलिहिदा सा सउंदला । इदराओ सहीओ त्ति । ( तर्कयामि यैषा शिथिलकेशबन्धनोद्वान्तकुसुमेन केशान्तेन, उद्भिन्नस्वेदबिन्दुना वदनेन, विशेपतोऽपसृताभ्यां बाहुभ्याम्, अवसेकस्निग्धतरुणपल्लवस्य चूतपादपस्य पार्श्वे ईपत् परिश्रान्तेव आलिखिता, सा शकुन्तला, इतरे सख्याविति । )

राजा—निपुणो भवान् । अस्त्यत्र मे भावचिह्नम् ।

स्विन्नाङ्गुलिविनिवेशो रेखाप्रान्तेषु दृश्यते मलिनः ।
अश्रु च कपोलपतितं दृश्यमिदं वर्तिकोच्छ्वासात् ॥ १५ ॥

चतुरिके ! अर्धलिखितमेतद् विनोदस्थानम् । गच्छ, वर्तिकां तावदानय ।

चतु—अज्ज माढव्व ! अवलंब चित्तफलअं, जाव आअच्छामि । ( आर्य माधव्य ! अवलम्बस्व चित्रफलकं, यावदागच्छामि । )

राजा—अहमेवैतदवलम्बे । ( यथोक्तं करोति )

( निष्क्रान्ता चेटी )

ବିଦୂ— ଆହେ ! ଏ ଚିତ୍ରପଟରେ ତିନିଜଣ ଦେଖାଯାଉଛନ୍ତି । ସମସ୍ତେ ତ ଦର୍ଶନୀୟା । ଏମାନଙ୍କ ମଧ୍ୟରେ ମାନନୀୟା ଶକୁନ୍ତଳା କିଏ ?

ସାନୁ— ଏଭଳି ସୁନ୍ଦର ରୂପକୁ ମଧ୍ୟ ଏ ଚିହ୍ନି ପାରୁ ନାହିଁ ? ଏହାର ଦୃଷ୍ଟି ନିଷ୍ଫଳ ।

ରାଜା— ତୁମେ କାହାକୁ ମନେ କରୁଛ ?

ବିଦୂ— ମୋତେ ଜଣା ପଡୁଛି, ଏଇ ଯେଉଁ ଆମ୍ବ ଗଛ ଜଳସେଚନ ହେତୁ ଚିକ୍‌କଣ କଅଁଳିଆ ପତ୍ରରେ ପୂର୍ଣ୍ଣ ହୋଇଛି, ତାହା ପାଖରେ ଯେ ଟିକିଏ ଥକି ପଡିଲା ପରି ଠିଆ ହୋଇଛନ୍ତି, ଯାହାଙ୍କ ମୁକୁଳା କେଶ-ପାଶରୁ ଫୁଲଗୁଡ଼ିକ ଖସି ପଡୁଛି, ମୁହଁରେ ସ୍ୱେଦବିନ୍ଦୁ ଝରୁଛି ଏବଂ ଦୁଇ ବାହୁ ଶିଥିଳ ହୋଇ ପଡ଼ିଛି, ସେ ହେଉଛନ୍ତି ଶକୁନ୍ତଳା ; ଅନ୍ୟ ଦୁଇଜଣ ସଖୀ ।

ରାଜା— ଠିକ୍ ଚିହ୍ନିଛ । ଏ ଚିତ୍ରରେ ମୋର ଅନୁରାଗର ଚିହ୍ନ ଅଛି । ଅଙ୍ଗୁଳିରୁ ଝାଳ ବହି ଚିତ୍ରପଟର ଗୋଟିଏ ପାଖରେ ମଳିନ ଦାଗଟିଏ ପଡ଼ିଛି । ଯେଉଁ ଅଶ୍ରୁବିନ୍ଦୁଟି ମୋ ଚକ୍ଷୁରୁ ଝରି ଖସି ପଡ଼ିଥିଲା, ସେଥିରେ ତୂଳୀ ମୋଟା ହୋଇ ଯାଇଥିବାର ସ୍ପଷ୍ଟ ଦେଖାଯାଉଛି । ଚତୁରିକା, ଏଇ ଚିତ୍ତ ବିନୋଦନର ସାମଗ୍ରୀଟି ଅସଂପୂର୍ଣ୍ଣ ରହିଛି । ଯାଅ, ତୂଳୀ ପ୍ରଭୃତି ଆଣ ।

ଚତୁରିକା—ଆର୍ଯ୍ୟ ମାଧବ୍ୟ, ମୁଁ ଆସିବା ପର୍ଯ୍ୟନ୍ତ ଚିତ୍ରପଟଟି ଆପଣ ଧରିଥାଆନ୍ତୁ ।

ରାଜା— ଦିଅ, ମୁଁ ଧରୁଛି । ( ଚିତ୍ରପଟ ଧରିଲେ )

( ଦାସୀ ଗ୍ଭଲିଗଲା )

राजा—( निःश्वस्य ) अहं हि—

साक्षात् प्रियामुपगतामपहाय पूर्वं
चित्रार्पितां पुनरिमां बहु मन्यमानः ।
स्रोतोवहां पथि निकामजलामतीत्य
जातः सखे ! प्रणयवान् मृगतृष्णिकायाम् ॥ १६ ॥

विदू—( आत्मगतम् ) एसो अत्तभवं णदिं अदिक्कमिअ मिअतिण्हिआं संकंतो । ( प्रकाशम् ) भो ! अवरं किं एत्थ आलिहिदव्वं ? ( एषोऽत्रभवान्नदीमतिक्रम्य मृगतृष्णिकां संक्रान्तः । (प्रकाशम्) भोः ! अपरं किमत्र आलेखितव्यम् । )

सानु—जो जो पदेशो सहीए मे अहिरूवो तं तं आलिहिदुकामो भवे । ( यो यः प्रदेशः सख्या मे अभिरूपः, तं तमालिखितुकामो भवेत् । )

राजा—श्रूयताम् —

कार्या सैकतलीनहंसमिथुना स्रोतोवहा मालिनी
पादास्तामभितो निषण्णहरिणा गौरीगुरोः पावनाः ।
शाखालम्बितवल्कलस्य च तरोर्निर्मातुमिच्छाम्यधः
शृङ्गे कृष्णमृगस्य वामनयनं कण्डूयमानां मृगीम् ॥ १७ ॥

विदू—( आत्मगतम् ) जह अहं पेक्खामि पूरिदव्वं णेण चित्तफलअं लंवकुच्चाणं तावसाणं कदंवेहिं । ( यथाहं पश्यामि पूरयितव्यमनेन चित्रफलकं लम्बकूर्चानां तापसानां कदम्बैः । )

राजा—वयस्य ! अन्यच्च शकुन्तलायाः प्रसाधनमभिप्रेतमस्माभिः ।

विदू—किं विअ ? ( किमिव ? )

सानु—तवोवणस्स सोउमारस्स अ जं सरिसं भविस्सदि । ( तपोवनस्य सौकुमार्यस्य च यत् सदृशं भविष्यति )

राजा—

कृतं न कर्णार्पितबन्धनं सखे !
शिरीषमागण्डविलम्बिकेसरम् ।
न वा शरच्चन्द्रमरीचिकोमलं
मृणालसूत्रं रचितं स्तनान्तरे ॥ १८ ॥

ରାଜା– ( ଦୀର୍ଘଶ୍ୱାସ ପକାଇ ) ମିତ୍ର ! ପ୍ରିୟା ମୋ ନିକଟକୁ ନିଜେ ଆସିଥିଲା । ସେତେବେଳେ ମୁଁ ତାକୁ ପରିତ୍ୟାଗ କଲି । ଆଉ ବର୍ତ୍ତମାନ ତାର ଚିତ୍ରକୁ ଏତେ ଆଦର କରୁଛି ! ପଥରେ ଜଳଭରା ନଦୀକୁ ଛାଡି ମୁଁ ମୃଗତୃଷ୍ଣା ପଛରେ ଧାଉଁଛି ! ୧୬

ବିଦୂ– (ସ୍ୱଗତ) ଠିକ୍, ଇଏ ନଦୀ ଛାଡି ମୃଗତୃଷ୍ଣା ପଛରେ ଧାଉଁଛନ୍ତି ! ( ପ୍ରକାଶ୍ୟରେ ) ମିତ୍ର, ଏ ଚିତ୍ରରେ ଆଉ କଅଣ କଅଣ ଅଙ୍କନ କରା ହେବାର ଅଛି ?

ସାନୁ– ଯେଉଁ ଯେଉଁ ସ୍ଥାନଗୁଡ଼ିକ ସଖୀକୁ ଭଲ ଲାଗେ, ବୋଧହୁଏ ସେଇଗୁଡ଼ିକୁ ଅଙ୍କନ କରିବା ପାଇଁ ଏ ଉତ୍ସୁକ ।

ରାଜା– ଶୁଣ, ଏଥିରେ ମାଲିନୀ ନଦୀର ଚିତ୍ର ଅଙ୍କନ କରିବାକୁ ହେବ, ଯାହାର ବାଲୁକାରାଶି ଉପରେ ହଂସଯୁଗଳ ବସିଥିବେ । ପୁଣି ହିମାଳୟର ପବିତ୍ର ପାଦଦେଶ ଦେଖାଇବାକୁ ପଡ଼ିବ, ଯେଉଁଠାରେ ମୃଗଦଳ ବିଶ୍ରାମ ନେଉଥିବେ । ଗୋଟିଏ ଗଛର ଚିତ୍ର ମଧ୍ୟ ଅଙ୍କନ କରିବାକୁ ହେବ, ଯାହାର ଶାଖାରେ ବଳ୍କଳବସ୍ତ୍ରମାନ ଝୁଲୁଥିବ ଏବଂ ତଳେ ଗୋଟିଏ ମୃଗୀ ନିଜର ବାମ ଆଖିକୁ କୃଷ୍ଣସାର ମୃଗର ଶିଙ୍ଗରେ ଘଷି କୁଣ୍ଡାଉଥିବ । ୧୭

ବିଦୂ– ( ସ୍ୱଗତ ) ମୁଁ ଦେଖୁଛି, ଏ ଲମ୍ବାଦାଢିବାଲା ମୁନିଦଳଙ୍କ ଦ୍ୱାରା ଚିତ୍ରଟିକୁ ପୂର୍ଣ୍ଣ କରିବେ ।

ରାଜା– ମିତ୍ର, ଆହୁରି ମଧ୍ୟ ଏଥିରେ ଶକୁନ୍ତଳାର ଭୂଷଣ ଅଙ୍କନ କରା ହେବ । ତାହା ମୁଁ ଭୁଲି ଯାଇଛି ।

ବିଦୂ– କି ଭୂଷଣ ?

ସାନୁ– ଯେଉଁ ଭୂଷଣ ସୁକୁମାରତା ତଥା ତପୋବନର ଅନୁରୂପ ହେବ ।

ରାଜା– ତା'ର କର୍ଣ୍ଣଭୂଷଣ-ଶିରୀଷ ପୁଷ୍ପର ଚିତ୍ର କରାଯାଇ ନାହିଁ, ଯେଉଁ ପୁଷ୍ପର କେଶର ଗଣ୍ଡ ପର୍ଯ୍ୟନ୍ତ ଝୁଲୁଥିବ । ଏହାଛଡା, ଦୁଇ ସ୍ତନର ମଧ୍ୟରେ ଶାରଦୀୟ ଚନ୍ଦ୍ରର କିରଣ ଭଳି କୋମଳ ମୃଣାଳହାର ମଧ୍ୟ ଅଙ୍କିତ ହୋଇନାହିଁ । ୧୮

विदू—भो ! किं णु तत्तहोदी रत्तकुवलअपल्लवसोहिणा अग्गहत्थेण मुहं ओवारिअ चइदचइदा विअ ठिआ । ( सावधानं निरूप्य ) आ ! एसो दासीएपुत्तो कुसुमरसपाडच्चरो तत्तहोदीए वअणं अहिलंघेदि महुअरो । ( भोः ! किं नु तत्रभवती रक्तकुवलय-पल्लवशोभिना अग्रहस्तेन मुखमपवार्य चकितचकितेव स्थिता । (सावधानं निरूप्य) आः ! एष दास्याः पुत्रः कुसुमरसपाटच्चरः तत्रभवत्या वदनमभिलङ्घयति मधुकरः । )

राजा—ननु वार्यतामेष धृष्टः ।

विदू—भवं एव्व अविणीदाणं सासिदा इमस्स वारणे पहविस्सदि । ( भवानेव अविनीतानां शासिता अस्य वारणे प्रभविष्यति । )

राजा—युज्यते । अयि भोः कुसुमलताप्रियातिथे ! किमत्र परिपतन-खेदमनुभवसि ? पश्य—

एषा कुसुमनिषण्णा तृषितापि सती भवन्तमनुरक्ता ।
प्रतिपालयति मधुकरी न खलु मधु त्वया विना पिबति ॥ १९ ॥

सानु—अज्ज अभिजादं खु एसो वारिदो ।
( अद्य अभिजातं खल्वेष वारितः । )

विदू—पडिसिद्धा वि वामा एसा जादी । ( प्रतिषिद्धापि वामैषा जातिः । )

राजा—एवं भोः, न मे शासने तिष्ठसि ? श्रूयतां तर्हि संप्रति—

अक्लिष्टबालतरुपल्लवलोभनीयं
पीतं मया सदयमेव रतोत्सवेषु ।
बिम्बाधरं स्पृशसि चेद् भ्रमर ! प्रियाया-
स्त्वां कारयामि कमलोदरबन्धनस्थम् ॥ २० ॥

विदू—एव्वं तिक्खणदंडस्स किं ण भाइस्सदि ? ( प्रहस्य आत्मगतम् ) एसो दाव उम्मत्तो । अहं पि एदस्स संगेण ईदिसवअणो जेव्व संवुत्तो । ( प्रकाशम् ) भो ! चित्तं खु एदं । ( एवं तीक्ष्णदण्डस्य किं न भेष्यति ? ( प्रहस्य आत्मगतम् ) । एष तावदुन्मत्तः । अहमप्येतस्य सङ्गेन ईदृशवचन एव संवृत्तः । ( प्रकाशम् ) भोः ! चित्रं खल्वेतत् । )

ବିଦୂ– ଆହେ ! ନାଳି ପଦ୍ମପତ୍ର ଭଳି ସୁନ୍ଦର ହାତପାପୁଲିରେ ମୁହଁ ଘୋଡାଇ ଚକିତ ହେଲାଭଳି ଏ କାହିଁକି ଠିଆ ହୋଇଛନ୍ତି ? ( ଭଲଭାବେ ନିରୀକ୍ଷଣ କରି ) ଆଃ ! ଗୋଟାଏ ଫୁଲରସଲୋଭର ଦୁଷ୍ଟ ଭଅଁର ମାନନୀୟାଙ୍କ ମୁହଁ ଆଡକୁ ଉଡ଼ିଆସୁଛି !

ରାଜା– ସେ ଉଦ୍ଧତକୁ ବନ୍ଦ କର ।

ବିଦୂ– ଆପଣ ହିଁ ଦୁଷ୍ଟମାନଙ୍କୁ ଦମନ କରନ୍ତି । ତେଣୁ ଆପଣ ଏହାକୁ ବାରଣ କରିବାକୁ ସମର୍ଥ ।

ରାଜା– ଠିକ୍ । ହେ ପୁଷ୍ପିତା ଲତାର ପ୍ରିୟ ଅତିଥି, ଏଠାରେ ଉଡ଼ି ଉଡ଼ି କାହିଁକି କଷ୍ଟ ପାଉଛ ? ଦେଖ—

ତୁମର ପ୍ରିୟା ଭ୍ରମରୀ ଫୁଲ ଉପରେ ବସି ତୃଷିତା ହେଲେ ମଧ୍ୟ ମଧୁପାନ କରୁନାହିଁ ଏବଂ ତୁମକୁ ପ୍ରତୀକ୍ଷା କରି ରହିଛି ! ୧୯

ସାନୁ– କି ଶିଷ୍ଟ ଭାବରେ ଏହାକୁ ବାରଣ କରୁଛନ୍ତି !

ବିଦୂ– ନିଷେଧ କଲେ ମଧ୍ୟ ଏ ଭ୍ରମରଜାତି ପୁଣି ପ୍ରତିକୂଳ ଆଚରଣ କରନ୍ତି ।

ରାଜା– ରେ ଭ୍ରମର, ତୁ ମୋ ଆଦେଶ ମାନୁନାହୁଁ । ତା' ହେଲେ ବର୍ତ୍ତମାନ ଶୁଣ,—

ପ୍ରିୟାର ଅକ୍ଷୁଣ୍ଣ ନବପଲ୍ଲବ ଭଳି ଲୋଭନୀୟ ଅଧରକୁ ମୁଁ ପ୍ରଣୟ-ଉତ୍ସବରେ ଅତ୍ୟନ୍ତ ସଦୟ ଭାବରେ ପାନ କରିଥିଲି । ତୁ ଯଦି ତାହାକୁ ସ୍ପର୍ଶ କରୁ, ତା' ହେଲେ ତୋତେ ପଦ୍ମକୋଶ-କାରାଗାରରେ ଆବଦ୍ଧ କରିବି । ୨୦

ବିଦୂ– ଏଭଳି ଦଣ୍ଡରେ ଏ କଅଣ ଡରି ନ ଯିବ ? ( ହସି ହସି ମନେ ମନେ ) ଏ ତ ପାଗଳ, ଏହାଙ୍କ ସହିତ ମୁଁ ମଧ୍ୟ ପାଗଳ ହୋଇଗଲିଣି । (ପ୍ରକାଶ୍ୟରେ) ଆହେ, ଏ ପରା ଚିତ୍ର ?

राजा—कथं चित्रम् ?

सानु—अहं पि दाणिं अवगदत्था, किं उण जहाचिंदिदाणुभावी एसो। ( अहमपीदानीमवगतार्था, किं पुनर्यथाचिन्तितानुभाव्येषः । )

राजा—वयस्य ! किमिदमनुष्ठितं पौरोभाग्यम् ?

दर्शनसुखमनुभवतः साक्षादिव तन्मयेन हृदयेन ।
स्मृतिकारिणा त्वया मे पुनरपि चित्रीकृआ कान्ता ॥ २१ ॥

( वाष्पं विहरति )

सानु—पुव्वावरविरोही अपुव्वो एसो विरहमग्गो। ( पूर्वापरविरोधी अपूर्व एष विरहमार्गः । )

राजा—वयस्य ! कथमेवमविश्रान्तदुःखमनुभवामि ?

प्रजागरात् खिलीभूतस्तस्याः स्वप्ने समागमः ।
वाष्पस्तु न ददात्येनां द्रष्टुं चित्रगतामपि ॥ २२ ॥

सानु—सव्वहा पमज्जिदं तुए पच्चादेसदुःक्खं सउंदलाए। ( सर्वथा प्रमार्जितं त्वया प्रत्यादेशदुःखं शकुन्तलायाः । )

( प्रविश्य चतुरिका )

चतु—जेदु जेदु भट्टा। वट्टिआकरंडअं गेण्हिअ इदोमुहं पत्थिद म्हि। ( जयतु जयतु भर्ता। वर्तिकाकरण्डकं गृहीत्वा इतोमुखं प्रस्थितास्मि । )

राजा—किं च ?

चतु—सो मे हत्थादो अंतरा तरलिआदुदीआए देवीए वसुमदीए अहं एव्व अज्जउत्तस्स उवणइस्सं त्ति सवलक्कारं गहीदो। ( तन् मे हस्ताद् अन्तरा तरलिकाद्वितीयया देव्या वसुमत्या अहमेव आर्यपुत्रस्योपनेष्यामीति सवलात्कारं गृहीतः । )

विदू—दिट्ठिआ तुमं मुक्का। ( दिष्ट्या त्वं मुक्ता । )

चतु—जाव देवीए विडवलग्गं उत्तरीअं तरलिआ मोचेदि ताव मए णिव्वाहिदो अत्ता। ( यावद्देव्या विटपलग्नमुत्तरीयं तरलिका मोचयति तावन्मया निर्वाहित आत्मा । )

राजा—वयस्य ! उपस्थिता देवी बहुमानगर्विता च। भवानिमां प्रतिकृतिं रक्षतु ।

ରାଜା— କଅଣ ! ଚିତ୍ର !

ସାନୁ— ମୁଁ ତ ବର୍ତ୍ତମାନ ଚିତ୍ର ବୋଲି ଜାଣୁଛି ! ରଜାଙ୍କ କଥା ବା କ'ଣ କହିବି ? ସେ ତ ନିଜ ଚିନ୍ତା-ଅନୁରୂପ କାର୍ଯ୍ୟ କରି ପକାଇଛନ୍ତି !

ରାଜା— ମିତ୍ର ! ତୁମେ ଏ ଭଳି ଅହିତ କାହିଁକି କଲ ?
ମୁଁ ତନ୍ମୟ ହୃଦୟରେ ପ୍ରିୟାକୁ ସାକ୍ଷାତ୍ ଦେଖିଲା ପରି ଦେଖି ସୁଖ ଅନୁଭବ କରୁଥିଲି । ତୁମେ ସ୍ମରଣ କରାଇ ଦେଇ ତାହାକୁ ଚିତ୍ରରେ ପରିଣତ କରିଦେଲ ଯେ ! ୨୧

( ଅଶ୍ରୁ ମୋଚନ କଲେ )

ସାନୁ— ଏହାଙ୍କର ବିରହ ବିଷୟ ପୂର୍ବାପର ଅସମ୍ବନ୍ଧ ହେତୁ ବଡ ବିଚିତ୍ର ।

ରାଜା— ମିତ୍ର, କିପରି ଏହି ଅବିରାମ ଦୁଃଖ ସହ୍ୟ କରିବି ?
ରାତ୍ରିରେ ଅନିଦ୍ରା ହେତୁ ସ୍ୱପ୍ନରେ ମଧ୍ୟ ପ୍ରିୟା ସହିତ ମିଳନ ଘଟିପାରୁନାହିଁ ଏବଂ ଚକ୍ଷୁରେ ଅଶ୍ରୁ ଝରି ପ୍ରିୟାର ଚିତ୍ରକୁ ମଧ୍ୟ ଦେଖିବାକୁ ଦେଉ ନାହିଁ । ୨୨

ସାନୁ— ଶକୁନ୍ତଳାକୁ ପ୍ରତ୍ୟାଖ୍ୟାନ କରିବାର ଦୁଃଖ ତୁମେ ସର୍ବଥା ଦୂର କରିଛ ।

ଚତୁରିକା—( ପ୍ରବେଶ କରି ) ମହାରାଜଙ୍କର ଜୟ ହେଉ । ମହାରାଜ, ମୁଁ ତୂଳୀପାତ୍ର ଧରି ଏଣିକି ଆସୁଥିଲି—

ରାଜା— କଅଣ ହେଲା ?

ଚତୁରିକା—ସେତେବେଳେ ତରଳିକା ସଙ୍ଗରେ ରାଣୀ ବସୁମତୀ ଆସୁଥିଲେ । ସେ ମୋ ହାତରୁ ତାହା ଜବରଦସ୍ତି ଛଡ଼ାଇ ନେଇ କହିଲେ— "ମୁଁ ନିଜେ ଏହାକୁ ଆର୍ଯ୍ୟପୁତ୍ରଙ୍କ ନିକଟକୁ ନେଇ ଯିବି ।"

ବିଦୂ— ଭାଗ୍ୟକୁ ତୁ ମୁକ୍ତି ପାଇଗଲୁ ।

ଚତୁରିକା—ରାଣୀଙ୍କ ଉତ୍ତରୀୟ ଗୋଟିଏ ଗଛ ଡାଳରେ ଲାଗିଗଲା । ତରଳିକା ତାହା ବାହାର କରୁଥିବା ବେଳେ ମୁଁ ଚାଲି ଆସିଲି ।

ରାଜା— ରାଣୀ ବର୍ତ୍ତମାନ ଆସୁଥିବେ । ଅତ୍ୟନ୍ତ ଆଦର ପାଇଥିବା ହେତୁ ସେ ମନରେ ଗର୍ବିତା । ତୁମେ ଏହି ପ୍ରତିକୃତିଟିକୁ ରକ୍ଷା କର ।

विदु—अत्ताणं त्ति भणाहि। (चित्रफलकमादायोत्थाय च) जइ भवं अंतेउरवाउरादो मुंचीअदि तदो मं मेहप्पडिच्छंदे प्पासादे सद्दावेहि। (आत्मानमिति भण। (चित्रफलकमादायोत्थाय च) यदि भवानन्तःपुरवागुरातो मोक्ष्यते तदा मां मेघप्रतिच्छन्दे प्रासादे शब्दापय। (द्रुतपदं निष्क्रान्तः)

सानु—अण्णसंकंतहिअओ वि पढमसंभावणं अवेक्खदि सिढिलसोहदो दाणिं एसो। (अन्यसंक्रान्तहृदयोऽपि प्रथमसंभावनामपेक्षते शिथिलसौहृद इदानीमेषः।)

(प्राविश्य पत्रहस्ता)

प्रती—जेदु जेदु देवो। (जयतु जयतु देवः।)

राजा—वेत्रवति! न खल्वन्तरे दृष्टा त्वया देवी।

प्रती—देव! दिट्ठा। पत्तहत्थं मं पेक्खिअ उण पडिणिउत्ता। (देव! दृष्टा पत्रहस्तां मां प्रेक्ष्य पुनः प्रतिनिवृत्ता।)

राजा—कार्यज्ञा कार्योपरोधं मे परिहरति।

प्रती—देव! अमच्चो विण्णवेदि—अत्थजादस्स गणणाबहुलदाए एक्कं एव्व पोरकज्जं अवेक्खिदं, तं देवो पत्तारुढं पच्चक्खीकरेदु-त्ति। (देव! अमात्यो विज्ञापयति-अर्थजातस्य गणनाबहुलतया एकमेव पौरकार्यमवेक्षितम्, तद् देवः पत्रारुढं प्रत्यक्षीकरोतु-इति।)

राजा—इतः पत्रं दर्शय।

(प्रतीहार्युपनयति)

राजा—(अनुवाच्य) कथम्? समुद्रव्यवहारी सार्थवाहो धनमित्रो नाम नौव्यसने विपन्नः अनपत्यश्च किल तपस्वी। 'राजगामी तस्यार्थसंचयः' इत्येतदमात्येन लिखितम्। (सविषाद) कष्टं खल्वनपत्यता। बहुधनत्वाद् बहुपत्नीकेन तत्रभवता भवितव्यम्। विचार्यतां यदि काचिदापन्नसत्त्वा तस्य भार्यासु स्यात्।

ବିଦୂ - ବୋଲନ୍ତୁ ଯେ ନିଜକୁ ରକ୍ଷା କର । (ଚିତ୍ରପଟ ଧରି ଉଠି) ଯେତେ-ବେଳେ ତୁମେ ଅନ୍ତଃପୁର-ଜାଲରୁ ମୁକ୍ତି ପାଇବ, ମୋତେ ମେଘ-ପ୍ରତିଚ୍ଛନ୍ଦ ପ୍ରାସାଦରେ ଡ଼ାକିବ । ( ଦ୍ରୁତ ପଦରେ ଚାଲିଗଲେ )

ସାନୁ - ଅନ୍ୟଠାରେ ଆସକ୍ତହୃଦୟ ହେଲେ ମଧ୍ୟ ଏ ପ୍ରଥମ ପ୍ରେମର ମର୍ଯ୍ୟାଦା ରଖିବାକୁ ଚାହାଁନ୍ତି । କିନ୍ତୁ ବର୍ତ୍ତମାନ ଏହାଙ୍କର ପ୍ରଥମ ପ୍ରେମରେ ଶିଥିଳତା ଆସିଯାଇଛି ।

ପ୍ରତୀହାରୀ--( ହାତରେ ପତ୍ର ଧରି ପ୍ରବେଶ କରି ) ମହାରଜାଙ୍କର ଜୟ ହେଉ ।

ରାଜା-- ବେତ୍ରବତୀ, ତୁମେ ବାଟରେ ରାଣୀଙ୍କୁ ଆସୁଥିବାର ଦେଖିଛ କି ?

ପ୍ରତୀହାରୀ—ଆସୁଥିଲେ, କିନ୍ତୁ ମୋ ହାତରେ ପତ୍ର ଥିବାର ଦେଖି ଫେରିଗଲେ ।

ରାଜା--ସେ କାର୍ଯ୍ୟର ଗୁରୁତ୍ୱ ବୁଝନ୍ତି, ସେଥି ନିମନ୍ତେ ମୋ କାର୍ଯ୍ୟରେ ବାଧା ଦିଅନ୍ତି ନାହିଁ ।

ପ୍ରତୀହାରୀ--ମହାରଜ, ଅମାତ୍ୟ ଜଣାଇଛନ୍ତି— "ଆଜି ରଜସ୍ୱ ଗଣନା କାର୍ଯ୍ୟ ବହୁତ ଥିଲା । ତେଣୁ ଗୋଟିଏ ମାତ୍ର ପୌରକାର୍ଯ୍ୟ ମୁଁ ଦେଖିପାରିଛି । ତାହା ପତ୍ରରେ ଲେଖି ପଠାଇଲି, ଆପଣ ଦେଖିବା ହେବେ ।"

ରାଜା— ପତ୍ର ଦେଖାଅ ।

( ପ୍ରତୀହାରୀ ପତ୍ର ଦେଲା )

ରାଜା— ( ପାଠ କରି ) କ'ଣ ! ଧନମିତ୍ର ନାମକ ସମୁଦ୍ର-ବ୍ୟବସାୟୀ ବଣିକଙ୍କର ନୌ-ବିପଦରେ ମୃତ୍ୟୁ ଘଟିଛି ! ସେହି ହତଭାଗ୍ୟଙ୍କର କୌଣସି ସନ୍ତାନ ନାହିଁ । ଅମାତ୍ୟ ଲେଖିଛନ୍ତି ଯେ ତାହାର ସମସ୍ତ ଧନ ରଜକୋଷକୁ ଆସିବ । ହାୟ ! ଅପୁତ୍ରକ ହେବା କି ଦୁଃଖ-ଦାୟକ ! ପ୍ରତୀହାରୀ, ସେହି ବଣିକ ଧନଶାଳୀ ଥିଲେ । ତେଣୁ ତାଙ୍କର ଏକାଧିକ ପତ୍ନୀ ଥାଇପାରନ୍ତି । ଅନୁସନ୍ଧାନ କର, ଯଦି ସେମାନଙ୍କ ମଧ୍ୟରେ କେହି ଅନ୍ତଃସତ୍ତ୍ୱା ଥିବେ ।

प्रती—देव ! दाणिं एव्व साकेदअस्स सेट्ठिणो दुहिआ णिव्वुत्त-पुंसवणा जाआ से सुणीअदि । (देव ! इदानीमेव साकेतकस्य श्रेष्ठिनो दुहिता निर्वृत्तपुंसवना जायाऽस्य श्रूयते ।)

राजा—ननु गर्भः पित्र्यं रिक्थमर्हति । गच्छ, एवममात्यं ब्रूहि ।

प्रती—जं देवो आणवेदि । (यद्देव आज्ञापयति ।)

राजा—एहि तावत् ।

प्रती—इअह्मि । (इयमस्मि ।)

राजा—किमनेन संततिरस्ति नास्तीति ।

येन येन वियुज्यन्ते प्रजाः स्निग्धेन बन्धुना ।
स स पापादृते तासां दुष्यन्त इति घुष्यताम् ॥ २३ ॥

प्रती—जं देवो आणवेदि । (निष्क्रम्य, पुनः प्रविश्य) काले पवुट्ठं विअ अहिणंदिदं देवस्य सासणं । (यत् देव आज्ञापयति । (निष्क्रम्य, पुनः प्रविश्य) काले प्रवृष्टमिव अभिनन्दितं देवस्य शासनम् ।)

राजा—(दीर्घमुष्णं च निःश्वस्य) एवं भोः, संततिच्छेदनिरवलम्बा मूलपुरुषावसाने संपदः परमुपतिष्ठन्ति । ममाप्यन्ते पुरुवंशश्रीरेवंवृत्ता ।

प्रती—पडिहदं अमंगलं । (प्रतिहतममङ्गलम् )

राजा—धिङ् माम् उपस्थितश्रेयोवमानिनम् ।

सानु—असंसअं सहिं एव्व हिअए करिअ णिंदिदो णेण अप्पा । (असंशयं सखीमेव हृदये कृत्वा निन्दितोऽनेनात्मा ।)

राजा— संरोपितेऽप्यात्मनि धर्मपत्नी
त्यक्ता मया नाम कुलप्रतिष्ठा ।
कल्पिष्यमाणा महते फलाय
वसुन्धरा काल इवोप्तबीजा ॥ २४ ॥

ପ୍ରତୀ— ମହାରାଜ, ଶୁଣାଯାଉଛି, ତାଙ୍କର ଏକ ପତ୍ନୀ ଅଯୋଧ୍ୟାର ଜଣେ ଶେଠଙ୍କ କନ୍ୟା । ସେହି ପତ୍ନୀଙ୍କର ପୁଂସବନସଂସ୍କାର ହୋଇଯାଇଛି ।

ରଜା— ତାହା ହେଲେ ଗର୍ଭରେ ଥିବା ଶିଶୁ ସେହି ପୈତୃକ ଧନର ଅଧିକାରୀ । ଯାଅ, ଅମାତ୍ୟଙ୍କୁ ଏହା କହିଦିଅ ।

ପ୍ରତୀ— ଯଥାଜ୍ଞା ମହାରାଜ । ( ଯିବାକୁ ଉଦ୍ୟତ )

ରଜା— ଏଣିକି ଆସ ।

ପ୍ରତୀ- ଆସିଲି ମଣିମା ।

ରଜା- ସନ୍ତାନ ଥିବା ନ ଥିବାରେ ଯାଏ ଆସେ କଅଣ ?
ପ୍ରଜାମାନେ ନିଜର ଯେଉଁ ଯେଉଁ ପ୍ରିୟ ଜନଙ୍କୁ ହରାଇବେ, ଦୁଷ୍ୟନ୍ତ ସେମାନଙ୍କର ସେହି ସେହି ପ୍ରିୟଜନ ଅଟନ୍ତି, କିନ୍ତୁ ପାପୀମାନଙ୍କର ନୁହନ୍ତି । ଯାଅ, ଏହା ଘୋଷଣା କରଅ ।। ୨୩ ।।

ପ୍ରତୀ— ଯଥାଜ୍ଞା ମଣିମା । (ବାହାରକୁ ଯାଇ କିଛି ସମୟ ପରେ ପୁଣି ପ୍ରବେଶ କରି ) ମହାରାଜ, ଠିକ୍ ସମୟରେ ବର୍ଷା ହେଲେ ଲୋକମାନଙ୍କୁ ଯେପରି ଆନନ୍ଦ ମିଳେ, ଆପଣଙ୍କର ଘୋଷଣାରେ ସେମାନେ ସେହିପରି ଆନନ୍ଦ ଲାଭ କରୁଛନ୍ତି ।

ରଜା— ( ଦୀର୍ଘ ଉଷ୍ଣଶ୍ୱାସ ତ୍ୟାଗ କରି ) ଆହା ! ସନ୍ତାନ ନ ଥିଲେ ବଂଶ ଏହିପରି ଅବଲମ୍ବନ-ହୀନ ହୁଏ ଏବଂ ମୂଳ ପୁରୁଷର ମୃତ୍ୟୁ ପରେ ସମ୍ପତ୍ତି ଅନ୍ୟ ହାତକୁ ଚାଲିଯାଏ । ମୋର ମୃତ୍ୟୁ ପରେ ପୁରୁବଂଶ-ଲକ୍ଷ୍ମୀର ମଧ୍ୟ ଏହିପରି ଅବସ୍ଥା ହେବ ।

ପ୍ରତୀ ଅମଙ୍ଗଳ ଦୂର ହେଉ ।

ରଜା· ଉପସ୍ଥିତ ମଙ୍ଗଳକୁ ଅବଜ୍ଞା କରିଥିବା ମୋଭଳି ବ୍ୟକ୍ତିକୁ ଧିକ୍ ।

ସାନୁ— ଏ ନିଶ୍ଚୟ ମୋର ସଖୀକୁ ସ୍ମରଣ କରି ନିଜକୁ ଧିକ୍କାର କରୁଛନ୍ତି ।

ରଜା— ଯେ ମୋର ବଂଶକୁ ପ୍ରତିଷ୍ଠା ଦେଇଥାନ୍ତା, ଯାହାଠାରେ ମୋର ଆତ୍ମା ରୋପିତ ହୋଇଥିଲା, ସେହି ପତ୍ନୀକୁ ମୁଁ ପରିତ୍ୟାଗ କରିଛି । ବୀଜ ବପନ ହୋଇଥିବା ଭୂମି ଯେପରି ଉପଯୁକ୍ତ ସମୟରେ ଫଳ ଦାନ କରେ, ସେହିପରି ସେ ମୋତେ ମହାନ୍ ଫଳ ଦେଇଥାଆନ୍ତା ।। ୨୪ ।।

सानु—अपरिच्छिण्णा दाणिं दे संददी भविस्सदि । ( अपरिच्छिन्नेदानीं ते संततिर्भविष्यति । )

चतु—( जनान्तिकम् ) अए ! इमिणा सत्थवाहवुत्तंतेण दुउणुव्वेओ भट्टा । णं अस्सासिदुं मेहप्पडिच्छंदादो अज्जं माढव्वं गेण्हिअ आअच्छामि । ( अयि ! अनेन सार्थवाहवृत्तान्तेन द्विगुणोद्वेगो भर्ता । एनमाश्वासयितुं मेघप्रतिच्छन्दाद् आर्यमाधव्यं गृहीत्वा आगच्छ । )

प्रती—सुट्ठु भणसि । ( सुष्ठु भणसि ) (निष्क्रान्ता)

राजा—अहो ! दुष्यन्तस्य संशयमारूढाः पिण्डभाजः । कुतः

अस्मात् परं वत यथाश्रुति संभृतानि
को नः कुले निवपनानि नियच्छतीति ।
नूनं प्रसूतिविकलेन मया प्रसिक्तं
धौताश्रुसेकमुदकं पितरः पिबन्ति ॥ २५ ॥

( मोहमुपगतः )

चतु—( ससंभ्रममवलोक्य ) समस्ससदु भट्टा । (समाश्वसितु भर्ता ।)

सानु—हद्धी हद्धी । सदि खु दीवे ववधाणदोसेण एसो अंधआरदोसं अणुहोदि । अहं दाणिं एव्व णिव्वुदं करेमि । अहवा सुदं मए सउंदलं समस्सअंतीए महेंदजणणीए मुहादो जण्णभाओस्सुआ देवा एव्व तह अणुचिट्ठिस्संति जह अइरेण धम्मपदिणिं भट्टा अहिणंदिस्सदि त्ति । ता णं जुत्तं कालं पडिपालिदुं । जाव इमिणा वुत्तंतेण पिअसहिं समस्सासेमि । ( हा धिक् हा धिक् ! सति खलु दीपे व्यवधानदोषेणैषः अन्धकारदोषमनुभवति । अहमिदानीमेनं निर्वृतं करोमि । अथवा श्रुतं मया शकुन्तलां समाश्वासयन्त्या महेन्द्रजनन्या मुखाद् यज्ञभागोत्सुका देवा एव तथानुष्ठास्यन्ति यथा अचिरेण धर्मपत्नीं भर्ता अभिनन्दिष्यतीति । तन्नु युक्तं कालं प्रतिपालयितुम् । यावदनेन वृत्तान्तेन प्रियसखीं समाश्वासयामि । ) ( उद्भ्रान्तकेन निष्क्रान्ता )

ସାନୁ— ତୁମର ବଂଶ ଅବିଚ୍ଛିନ୍ନ ରହିଛି ।

ଚତୁ- ( ପ୍ରତିହାରୀଙ୍କୁ ଚୁପ୍ ଚୁପ୍ ) ଆଗୋ ! ଏହି ବଣିକ-ବୃତ୍ତାନ୍ତ ଶୁଣି ମହାରଜାଙ୍କର ଦୁଃଖ ଦ୍ୱିଗୁଣିତ ହୋଇଛି । ଏହାଙ୍କୁ ସାନ୍ତ୍ୱନା ଦେବା-ପାଇଁ ମେଘପ୍ରତିଚ୍ଛନ୍ଦ ପ୍ରାସାଦରୁ ଆର୍ଯ୍ୟ ମାଧବ୍ୟଙ୍କୁ ଘେନି ଆସ ।

ପ୍ରତୀ— ଠିକ୍ କହିଛ । ( ଚ୍ଲାଲିଗଲେ )

ରଜା- ହାୟ ! ଦୁଷ୍ୟନ୍ତଙ୍କର ପିଣ୍ଡଭାଗୀ ପିତୃପୁରୁଷଗଣ ସନ୍ଦେହରେ ପଡ଼ି-ଲେଣି । କାରଣ,

'ଦୁଷ୍ୟନ୍ତଙ୍କ ପରେ ଆମ ବଂଶରେ ବେଦବିଧି ଅନୁସାରେ କିଏ ପିଣ୍ଡଦାନ କରିବ ?' ଏଇ ଚିନ୍ତାରେ ସେମାନେ ଚିନ୍ତିତ ହେଲେଣି । ତେଣୁ ମୁଁ ନିଃସନ୍ତାନ ଅବସ୍ଥାରେ ଯେଉଁ ଜଳ ତର୍ପଣ କରୁଛି, ସେଥିରେ ସେମାନେ ବୋଧହୁଏ ପ୍ରଥମେ ଅଶ୍ରୁ ଧୌତ କରୁଛନ୍ତି ଏବଂ ଅବଶିଷ୍ଟ ପାନ କରୁଛନ୍ତି । ( ମୂର୍ଚ୍ଛିତ ହୋଇଗଲେ )

ଚତୁ- ( ବ୍ୟସ୍ତ ହୋଇ ରଜାଙ୍କୁ ଧରି ) ମହାରଜ, ଧୈର୍ଯ୍ୟ ଧରନ୍ତୁ ।

ସାନ- ଆହା ! ପ୍ରଦୀପ ଜଳୁଥିଲେ ମଧ୍ୟ ଏ ପରଦା ଅନ୍ତରଳରେ ଥିବାରୁ ଅନ୍ଧାର ଅନୁଭବ କରୁଛନ୍ତି । ମୁଁ ଏକ୍ଷଣି ସବୁ କଥା କହି ଏହାଙ୍କୁ ସୁଖୀ କରନ୍ତି । ମାତ୍ର ଶୁଣିଛି, ଶକୁନ୍ତଳାଙ୍କୁ ସାନ୍ତ୍ୱନା ଦେଲାବେଳେ ମହେନ୍ଦ୍ର-ଜନନୀ ( ଅଦିତି ) କହୁଥିଲେ—"ଯଜ୍ଞଭାଗ-ଆଗ୍ରହୀ ଦେବତାମାନେ ଏଭଳି ଉପାୟ କରିବେ, ଯାହାଦ୍ୱାର ତୁମର ସ୍ୱାମୀ ତୁମକୁ ସାଦରେ ଗ୍ରହଣ କରିବେ ।" ତା' ହେଲେ ବର୍ତ୍ତମାନ ଆଉ କାଳ ବିଳମ୍ବ କରିବା ଉଚିତ ନୁହେଁ । ଯାଉଛି, ପ୍ରିୟସଖୀକୁ ଏ ସମସ୍ତ କଥା କହି ଆଶ୍ୱାସନା ଦେବି ।

( ଆନନ୍ଦ ବିହ୍ୱଳା ହୋଇ ପ୍ରସ୍ଥାନ କଲେ )

नेपथ्ये

अव्वह्मणं अव्वह्मणं। ( अब्रह्मण्यम अब्रह्मण्यम् )

राजा—(प्रत्यागतचेतनः कर्णं दत्त्वा ) अये, माधव्यस्येवार्तस्वरः। कः कोऽत्र भोः ? ।

प्रती—( प्रविश्य ससंभ्रमम् ) परित्ताअदु देवो ससंअगदं वअस्सं। (परित्रायतां देवः संशयगतं वयस्यम्।)

राजा— केनात्तगन्धो माणवकः ?

प्रती— अदिट्ठरूवेण केण वि सत्त्वेण अदिक्कमिअ मेहप्पडिच्छंदस्स प्पासादस्स अग्गभूमिं आरोविदो। (अदृष्टरूपेण केनापि सत्त्वेनातिक्रम्य मेघप्रतिच्छन्दस्य प्रासादस्याग्रभूमिमारोपितः।)

राजा—(उत्थाय) मा तावत्। ममापि सत्त्वैरभिभूयन्ते गृहाः!

अथवा—

अहन्यहन्यात्मन एव ताव-
ज्ज्ञातुं प्रमादस्खलितं न शक्यम्।
प्रजासु कः केन पथा प्रयाती-
त्यशेषतः को नु विदाङ्करोतु॥ २६॥

(नेपथ्ये)

भो वअस्स ! अविहा अविहा। (भो वयस्य ! अविहा अविहा।)

राजा—(गतिभेदेन परिक्रामन्) सखे ! न भेतव्यं न भेतव्यम्।

(नेपथ्ये)

(पुनस्तदेव पठित्वा) कहं ण भाइस्सं ?। एस मं को वि पच्चवणदसिरोहरं यिच्छुं विअ तिण्णभंगं करेदि। (कथं न भेष्यामि ?। एष मां कोऽपि प्रत्यवनतशिरोधरम् इक्षुमिव त्रिभङ्गं करोति।)

ନେପଥ୍ୟେ—

ବ୍ରାହ୍ମଣଙ୍କୁ ମାରନ୍ତୁ ନାହିଁ, ବ୍ରାହ୍ମଣଙ୍କୁ ମାରନ୍ତୁ ନାହିଁ ।

ରଜା— ( ସଂଜ୍ଞା ଲଭ କରି ) ଆରେ ! ମାଧବ୍ୟଙ୍କର ଆର୍ତ୍ତସ୍ୱର ଭଳି ଶୁଭୁଛି ! କିଏ, କିଏ ଏଠାରେ ଅଛ ?

ପ୍ରତୀ— ( ପ୍ରବେଶ କରି ବ୍ୟସ୍ତ ଭାବରେ ) ମହାରାଜ ! ଆପଣଙ୍କର ମିତ୍ର ମହା ବିପଦରେ ପଡ଼ିଛନ୍ତି । ତାଙ୍କୁ ରକ୍ଷା କରନ୍ତୁ ।

ରଜା— ବ୍ରାହ୍ମଣଙ୍କୁ କଷ୍ଟ ଦେବାକୁ କିଏ ସାହସ କରୁଛି ?

ପ୍ରତୀ— କୌଣସି ଏକ ଅଦୃଶ୍ୟ ପ୍ରାଣୀ ତାଙ୍କୁ ଧରି ନେଇ ମେଘପ୍ରତିଛନ୍ଦ ପ୍ରାସାଦ ଉପରେ ରଖିଛି ।

ରଜା— ( ଉଠି ) ତାହା ହୋଇ ନ ପାରେ । ମୋ ଗୃହରେ ପୁଣି ଅଦୃଶ୍ୟ ପ୍ରାଣୀଙ୍କର ଉପଦ୍ରବ ? ଅବା ହୋଇପାରେ ।
ଲୋକ ପ୍ରତିଦିନ ନିଜେ ଅସାବଧାନତାରେ କେତେ ଯେ ଭୁଲ କରେ, ତାହା ଜାଣିବା ସମ୍ଭବ ନୁହେଁ । ଆଉ ପ୍ରଜାମାନଙ୍କ ମଧ୍ୟରେ କିଏ କେଉଁ ବାଟରେ ଯାଉଛି, ସେ ସମସ୍ତ ଜାଣିବା କାହା ପକ୍ଷରେ ବା ସମ୍ଭବ ? ।। ୨୬ ।।

ନେପଥ୍ୟେ—

ମିତ୍ର ମରିଗଲି ! ମରିଗଲି !

ରଜା- (କ୍ଷିପ୍ର ଗତିରେ ଚାଲି ) ମିତ୍ର, ଭୟ କର ନାହିଁ, ଭୟ କରନାହିଁ ।

ନେପଥ୍ୟେ—

( ପୂର୍ବପରି ଚିତ୍କାର କରି ) କିପରି ଭୟ କରିବି ନାହିଁ ? କିଏ ଜଣେ ମୋ ବେକକୁ ମାଡିଧରି ଆଖୁ ଭଙ୍ଗାଲା ପରି ତିନିଖଣ୍ଡ କରି ଦେଉଛି ।

राजा—( सदृष्टिक्षेपम् ) धनुस्तावत् ।

यवनी—भट्टा ! एदं हत्थावावसहिदं सरासणं । ( भर्तः ! एतद्हस्तावापसहितं शरासनम् । )

( राजा सशरं धनुरादत्ते )

नेपथ्ये

एष त्वामभिनवकण्ठशोणितार्थी
शार्दूलः पशुमिव हन्मि चेष्टमानम् ।
आर्तानां भयमपनेतुमात्तधन्वा
दुष्यन्तस्तव शरणं भवत्विदानीम् ॥ २७ ॥

राजा—( सरोषम् ) कथं मामेवोद्दिशति ? । तिष्ठ कुणपाशन ! त्वमिदानीं न भवसि । ( शार्ङ्गमारोप्य ) वेत्रवति ! सोपानमार्गमादेशय ।

प्रती—इदो इदो देवो । ( इत इतो देवः । )

( सर्वे सत्वरमुपसर्पन्ति )

राजा—( समन्ताद् विलोक्य ) शून्यं खल्विदम् ।

( नेपथ्ये )

अविहा अविहा । अहं अत्तभवंतं पेक्खामि । तुमं मं ण पेक्खसि ? बिडालगहीदो मूसओ विअ णिरासो म्हि जीविदे संवुत्तो । ( अविहा अविहा । अहमत्रभवन्तं पश्यामि । त्वं मां न पश्यसि ? । बिडालगृहीतो मूषक इव निराशोऽस्मि जीविते संवृत्तः । )

राजा—भोस्तिरस्करिणीगर्वित ! मदीयं शस्त्रं त्वां द्रक्ष्यति । एष तमिषुं संदधे—

यो हनिष्यति वध्यं त्वां रक्ष्यं रक्षिष्यति द्विजम् ।
हंसो हि क्षीरमादत्ते तन्मिश्रा वर्जयत्यपः ॥ २८ ॥

( अस्त्रं संधत्ते )

ରଜା— (ଏଣେ ତେଣେ ଚାହିଁ) କାହିଁ, ଧନୁ କାହିଁ ?
ଯବନୀ- ପ୍ରଭୁ, ଏଇ ଧନୁ ଆଉ ହସ୍ତତ୍ରାଣ ।

( ରଜା ଧନୁର୍ବାଣ ଧରିଲେ )

ନେପଥ୍ୟେ—

ପଶୁର ସଦ୍ୟ କଣ୍ଠରକ୍ତ ପିଇବାକୁ ଶାର୍ଦ୍ଦୂଳ ଯେପରି ତାକୁ ହତ୍ୟା କରେ, ମୁଁ ସେହିଭଳି ତୋତେ ଛଟପଟ କରି ହତ୍ୟା କରିବି । ଦୁଷ୍ୟନ୍ତ ପର ବିପନ୍ନମାନଙ୍କର ଭୟ ଦୂର କରିବାକୁ ଧନୁ ଧାରଣ କରନ୍ତି,? ତେବେ ସେ ତୋତେ ରକ୍ଷା କରନ୍ତୁ ॥ ୨୭ ॥

ରଜା— ( କ୍ରୋଧରେ ) କଅଣ ? ମୋତେ ଉଦ୍ଦେଶ୍ୟ କରି କହୁଛି ? ରହ ରେ ମାଂସାଶୀ, ବର୍ତ୍ତମାନ ତୋର ପ୍ରାଣ ନେଉଛି । ( ଧନୁରେ ଶର ସଂଯୋଗ କରି ) ବେତ୍ରବତୀ, ସୋପାନ ଆଡ଼କୁ ବାଟ ଦେଖାଅ ।

ପ୍ରତୀ— ଆସନ୍ତୁ, ଆସନ୍ତୁ ମହାରଜ ।

( ସମସ୍ତେ ଶୀଘ୍ର ଶୀଘ୍ର ଚାଲିଲେ )

ରଜା— ( ଚତୁର୍ଦ୍ଦିଗକୁ ଚାହିଁ ) ଏଠାରେ ତ ସବୁଆଡ ଶୂନ୍ୟ !

ନେପଥ୍ୟେ—

ମରିଗଲି ! ମରିଗଲି ! ହାୟ ! ମୁଁ ଆପଣଙ୍କୁ ଦେଖି ପାରୁଛି, ଆପଣ ମୋତେ ଦେଖି ପାରୁ ନାହାଁନ୍ତି ? ବିରଡି ମୁହଁରେ ପଡିଥିବା ମୂଷା ଭଳି ବର୍ତ୍ତମାନ ମୁଁ ପ୍ରାଣର ଆଶା ଛାଡିଲି ।

ରଜା— ଆରେ, ଅନ୍ତର୍ଦ୍ଧାନ-ବିଦ୍ୟାରେ ଗର୍ବିତ ପ୍ରାଣୀ ! ମୋର ଶର ତୋତେ ଦେଖିନେବ । ଏଇ ଶର ସନ୍ଧାନ କଲି ।
ହଂସ ଯେପରି ଦୁଗ୍ଧ ପାନ କରେ, କିନ୍ତୁ ଦୁଗ୍ଧ ସହିତ ମିଶିଥିବା ଜଳକୁ ପରିତ୍ୟାଗ କରେ, ମୋର ଶର ସେହିପରି ତୋତେ ବଧ କରିବ, କାରଣ ତୁ ବଧ୍ୟ, ଏବଂ ବ୍ରାହ୍ମଣକୁ ରକ୍ଷା କରିବ, କାରଣ ବ୍ରାହ୍ମଣ ରକ୍ଷଣୀୟ ।

( ଶର ସନ୍ଧାନ କଲେ )

( ततः प्रविशति विदूषकमुत्सृज्य मातलिः )

मात—राजन् !

कृताः शरव्यं हरिणा तवासुराः
शरासनं तेषु विकृष्यतामिदम् ।
प्रसादसौम्यानि सतां सुहृज्जने
पतन्ति चक्षूंषि न दारुणाः शराः ॥ २६ ॥

राजा—( ससंभ्रममस्त्रमुपसंहरन् ) अये मातलिः ! स्वागतं महेन्द्र-सारथे ! ।

( प्रविश्य )

विदू—अहं जेण इट्ठिपसुमारं मारिदो सो इमिणा साअदेण अहिणंदीअदि । ( अहं येन इष्टिपशुमारं मारितः सोऽनेन स्वागतेनाभिनन्द्यते । )

मात—( सस्मितम् ) आयुष्मन् ! श्रूयतां यदर्थमस्मि हरिणा भवत्काशं प्रेषितः ।

राजा—अवहितोऽस्मि ।

मात—अस्ति । कालनेमिप्रसूदुर्जयो नाम दानवगणः ।

राजा—अस्ति । श्रुतपूर्वं मया नारदात् ।

मातलिः—

सख्युस्ते स किल शतक्रतोरवध्यः
तस्य त्वं रणशिरसि स्मृतो निहन्ता ।
उच्छेत्तुं प्रभवति यन्न सप्तसप्तिः
तन् नैशं तिमिरमपाकरोति चन्द्रः ॥ ३० ॥

स भवानात्तशस्त्र एव इदानीम् । तन् ऐन्द्ररथमारुह्य विजयार्थं प्रतिष्ठताम् ।

राजा—अनुगृहीतोऽहमनया मघवतः संभावनया । अथ माधव्यं प्रति भवता किमेवं प्रयुक्तम् ?

( ବିଦୂଷକଙ୍କୁ ଛାଡ଼ି ଦେଇ ମାତଳିଙ୍କର ପ୍ରବେଶ )

ମାତଳି– ରାଜନ୍,

ଇନ୍ଦ୍ର ଅସୁରମାନଙ୍କୁ ଆପଣଙ୍କ ଶରର ଲକ୍ଷ୍ୟ କରିଛନ୍ତି । ଆପଣ ସେହି-ମାନଙ୍କ ଉଦ୍ଦେଶ୍ୟରେ ଏହି ଧନୁ ଆକର୍ଷଣ କରନ୍ତୁ ! ସଜ୍ଜନମାନେ ସୁହୃଦମାନଙ୍କ ଉପରେ ପ୍ରସନ୍ନତାପୂର୍ଣ୍ଣ, ମଧୁର ଦୃଷ୍ଟିପାତ କରନ୍ତି; ଭୟଙ୍କର ଶର ନିକ୍ଷେପ କରନ୍ତି ନାହିଁ । ୨୯ ।।

ରାଜା– ( ଧନୁରୁ ଶର କାଢି ନେଇ ) କିଏ ! ମାତଳି ! ସ୍ୱାଗତ ଇନ୍ଦ୍ର-ସାରଥି !

ବିଦୂ– ( ପ୍ରବେଶ କରି ) ଆହେ ! ଯେ ମୋତେ ଯଜ୍ଞର ପଶୁ ଭଳି ମାରିବାକୁ ଯାଉଥିଲା, ତାକୁ ପୁଣି ସ୍ୱାଗତ ଅଭିନନ୍ଦନ ଜଣାଉଛ ?

ମାତଳି– ( ମୃଦୁ ହାସ୍ୟରେ ) ଆୟୁଷ୍ମାନ୍, ଇନ୍ଦ୍ର ମୋତେ ଆପଣଙ୍କ ନିକଟକୁ କାହିଁକି ପଠାଇଛନ୍ତି, ଶୁଣନ୍ତୁ ।

ରାଜା– କହନ୍ତୁ, ମନୋନିବେଶ କଲି ।

ମାତଳି– କାଳନେମି ବଂଶରୁ ସମ୍ଭୂତ ଦୁର୍ଜ୍ଜୟ ନାମକ ଅସୁରଗଣ ଅଛନ୍ତି ।

ରାଜା– ହଁ, ନାରଦଙ୍କଠାରୁ ମୁଁ ଏହା ଆଗରୁ ଶୁଣିଛି ।

ମାତଳି– ଆପଣଙ୍କର ସଖା ଇନ୍ଦ୍ର ସେମାନଙ୍କୁ ଜୟ କରିବା ପାଇଁ ଅସମର୍ଥ । ଆପଣ ହିଁ ସେମାନଙ୍କୁ ତୁମୁଳ ଯୁଦ୍ଧରେ ନିହତ କରି ପାରିବେ । ସୂର୍ଯ୍ୟ ରାତ୍ରିର ଅନ୍ଧକାରକୁ ଦୂର କରି ପାରନ୍ତି ନାହିଁ; ମାତ୍ର ଚନ୍ଦ୍ର ତାହା କରି ପାରନ୍ତି ।। ୩୦ ।।

ଆପଣ ବର୍ତ୍ତମାନ ଶସ୍ତ୍ର ଧରିଛନ୍ତି । ତେଣୁ ଇନ୍ଦ୍ରଙ୍କ ରଥ ଆରୋହଣ କରି ବିଜୟ ଅଭିଯାନରେ ବାହାରନ୍ତୁ ।

ରାଜା– ଇନ୍ଦ୍ରଙ୍କର ଏହି ଗୌରବ ପ୍ରଦାନ ଦ୍ୱାରା ମୁଁ ଅନୁଗୃହୀତ ହେଲି । ଆପଣ ମାଧବ୍ୟଙ୍କ ପ୍ରତି କାହିଁକି ଏଭଳି ବ୍ୟବହାର କଲେ ?

मात—तदपि कथ्यते। किंचिन्निमित्तादपि मनःसंतापाद् आयुष्मान् महाविक्लवो दृष्टः। पश्चात् कोपयितु मायुष्मन्तं तथा कृतवान्। कुतः—

ज्वलति चलितेन्धनोऽग्निर् विप्रकृतः पन्नगः फणां कुरुते।
प्रायः स्वं महिमानं क्षोभात् प्रतिपद्यते हि जनः ॥ ३१ ॥

राजा—( जनान्तिकम् ) वयस्य! अनतिक्रमणीया दिवस्पतेराज्ञा। तदत्र परिगतार्थं कृत्वा मद्वचनादमात्यपिशुनं ब्रूहि—

त्वन्मतिः केवला तावत् परिपालयतु प्रजाः।
अधिज्यमिदमन्यस्मिन् कर्मणि व्यापृतं धनुः ॥ ३२ ॥

विदू—जं भवं आणवेदि। ( यद् भवानाज्ञापयति)

मात—रथमारोहतु आयुष्मान्।

( राजा रथाधिरोहणं नाटयति )

( निष्क्रान्ताः सर्वे )

॥ इति षष्ठोऽङ्कः ॥

ମାତଳି– ତାହା ମଧ୍ୟ କହୁଛି । କୌଣସି କାରଣରୁ ଆପଣ ମାନସିକ ସନ୍ତାପରେ ବ୍ୟାକୁଳ ହେଉଥିବାର ମୁଁ ଦେଖିଲି । ତେଣୁ ଆପଣଙ୍କୁ କ୍ରୁଦ୍ଧ କରାଇବା ପାଇଁ ସେଭଳି କରିଥିଲି । କାରଣ

ଇନ୍ଧନକୁ ସଂଗୃହିତ କରିଦେଲେ ଅଗ୍ନି ଅଧିକ ପ୍ରଜ୍ୱଳିତ ହୋଇଉଠେ । ସର୍ପକୁ ଆଘାତ ଦେଲେ ସେ ଫଣା ଉତ୍ତୋଳନ କରେ । ସେହିପରି ମନୁଷ୍ୟକୁ ଉତ୍ତେଜିତ କଲେ ସେ ସାଧାରଣତଃ ନିଜର ପ୍ରକୃତ ତେଜ ଧାରଣ କରେ ୩୧ ।।

ରାଜା- ( ବିଦୂଷକ ପ୍ରତି ) ମିତ୍ର, ଇନ୍ଦ୍ରଙ୍କର ଆଜ୍ଞା ଲଙ୍ଘନୀୟ ନୁହେଁ । ତେଣୁ ପ୍ରଧାନ ଅମାତ୍ୟଙ୍କୁ ଏ ସମସ୍ତ ବିଷୟ କହି ମୋର କଥାନୁସାରେ ଜଣାଇ ଦିଅ —

"ମୋର ଏହି ଗୁଣସଂଯୁକ୍ତ ଧନୁ ଅନ୍ୟ କାର୍ଯ୍ୟରେ ବ୍ୟାପୃତ ଥିବା ପର୍ଯ୍ୟନ୍ତ କେବଳ ତୁମର ବୁଦ୍ଧି ପ୍ରଜାମାନଙ୍କୁ ପାଳନ କରୁ ।" ୩୨ ।।

ବିଦୂ– ଆପଣଙ୍କର ଯାହା ଆଜ୍ଞା ।

ମାତଳି– ଆୟୁଷ୍ମାନ୍, ରଥ ଆରୋହଣ କରନ୍ତୁ ।

( ରାଜା ନାଟ୍ୟରେ ରଥ ଆରୋହଣ କଲେ )

( ସମସ୍ତଙ୍କର ପ୍ରସ୍ଥାନ )

।। ଷଷ୍ଠ ଅଙ୍କ ସମାପ୍ତ ।।

# सप्तमोऽङ्कः

( ततः प्रविशत्याकाशयानेन रथाधिरूढो राजा मातलिश्च )

राजा—मातले ! अनुष्ठितनिदेशोऽपि मघवतः सत्क्रियाविशेषादनुपयुक्तमिवात्मानं समर्थये ।

मात—( सस्मितम् ) आयुष्मन् ! उभयत्राप्यपरितोषं समर्थये ।

प्रथमोपकृतं मरुत्वतः
प्रतिपत्त्या लघु मन्यते भवान् ।
गणयत्यवदानविस्मितो
भवतः सोऽपि न सत्क्रियागुणान् ॥ १

राजा—मातले ! मा मैवम्; स खलु मनोरथानामप्यभूमिर्विसर्जनावसरसत्कारः । मम हि दिवौकसां समक्षं मर्धासनोपवशितस्य

अन्तर्गतप्रार्थनमन्तिकस्थं
जयन्तमुद्वीक्ष्य कृतस्मितेन ।
आमृष्टवक्षोहरिचन्दनाङ्का
मन्दारमाला हरिणा पिनद्धा ॥ २ ॥

मात—किमिव नामायुष्मानमरेश्वरान्नार्हति ? पश्य,—

सुखपरस्य हरेरुभयैः कृतं
त्रिदिवमुद्धृतदानवकण्टकम्
तव शरैरधुना नतपर्वभिः
पुरुषकेसरिणश्च पुरा नखैः ॥ ३ ॥

# ସପ୍ତମ ଅଙ୍କ

( ଆକାଶଗାମୀ ରଥରେ ରାଜା ଏବଂ ମାତଳିଙ୍କର ପ୍ରବେଶ )

ରାଜା— ମାତଳି, ମୁଁ ଇନ୍ଦ୍ରଙ୍କର କାର୍ଯ୍ୟ ସଂପାଦନ କରିଛି ସତ୍ୟ ; କିନ୍ତୁ ସେ ମୋର ଯେଉଁ ଅଭ୍ୟର୍ଥନା କରିଛନ୍ତି, ତା' ତୁଳନାରେ ମୁଁ ନିଜକୁ ଅନୁପଯୁକ୍ତ ମନେ କରୁଛି ।

ମାତଳି—(ସ୍ମିତହାସ୍ୟରେ ) ମୁଁ ଦେଖୁଛି, ଆପଣ ଉଭୟେ ଏ ବିଷୟରେ ଅତୃପ୍ତ ।

ଆପଣ ଇନ୍ଦ୍ରଙ୍କଠାରୁ ଯେଉଁ ଅଭ୍ୟର୍ଥନା ପାଇଛନ୍ତି, ତା ତୁଳନାରେ ନିଜେ କରିଥିବା ଉପକାରକୁ କ୍ଷୁଦ୍ର ମନେ କରୁଛନ୍ତି । ଆଉ, ଇନ୍ଦ୍ର ମଧ୍ୟ ଆପଣଙ୍କର ବୀରତ୍ୱରେ ବିସ୍ମିତ ହୋଇ ଆପଣଙ୍କୁ ଉପଯୁକ୍ତ ଭାବରେ ଅଭ୍ୟର୍ଥିତ କରିଛନ୍ତି ବୋଲି ଭାବୁ ନାହାଁନ୍ତି । ୧ ॥

ରାଜା— ନା ମାତଳି, ଏପରି କହନ୍ତୁ ନାହିଁ । ଇନ୍ଦ୍ର ମୋତେ ବିଦାୟ ଦେଲା ବେଳେ ମୋର ଯେଉଁ ଅଭ୍ୟର୍ଥନା କଲେ, ତାହା କଳ୍ପନାର ଅଗୋଚର । ଦେବତାମାନଙ୍କର ସମକ୍ଷରେ ସେ ମୋତେ ନିଜର ଅର୍ଦ୍ଧ ଆସନରେ ବସାଇଥାଆନ୍ତି—

ତାଙ୍କ କଣ୍ଠରେ ଶୋଭା ପାଉଥାଏ ମନ୍ଦାର ପୁଷ୍ପର ମାଳା । ସେଥିରେ ଘଷି ହୋଇ ଲାଗିଥାଏ ତାଙ୍କ ବକ୍ଷର ହରିଚନ୍ଦନ । ଜୟନ୍ତ ପାଖରେ ବସି ସେହି ମାଳାକୁ ପାଇବା ନିମନ୍ତେ ମନେ ମନେ ଆଶା କରୁଥାଆନ୍ତି । ଇନ୍ଦ୍ର ତାଙ୍କ ଆଡକୁ ଗ୍ରହିଁ ସ୍ମିତହାସ୍ୟପୂର୍ବକ ମାଳାଟିକୁ କାଢି ନିଜେ ମୋ କଣ୍ଠରେ ପିନ୍ଧାଇ ଦେଲେ । ୨ ॥

ମାତଳି— ଏଭଳି କି ପଦାର୍ଥ ଅଛି, ଯାହା ଦେବରାଜ ଇନ୍ଦ୍ରଙ୍କଠାରୁ ପାଇବାକୁ ଆପଣ ଯୋଗ୍ୟ ନୁହନ୍ତି ? ଦେଖନ୍ତୁ, ପୂର୍ବେ ନୃସିଂହଙ୍କର ନଖ ଏବଂ ବର୍ତ୍ତମାନ ଆପଣଙ୍କର ତୀକ୍ଷ୍ଣ ଶର, ଏହିଁ ଉଭୟ ହିଁ ସୁଖଶୀଳ ଇନ୍ଦ୍ରଙ୍କର ଦାନବରୂପକ କଣ୍ଟକମାନଙ୍କୁ ସ୍ୱର୍ଗରୁ ଉତ୍ପାଟନ କରିଛନ୍ତି । ୩ ॥

राजा—अत्र खलु शतक्रतोरेव महिमा। पश्य—

सिध्यन्ति कर्मसु महत्स्वपि यन्नियोज्याः
संभावनागुणमवेहि तमीश्वराणाम्।
किं वाऽभविष्यदरुणस्तमसां विभेत्ता
तं चेत् सहस्रकिरणो धुरि नाकरिष्यत्॥ ४॥

मात—सदृशमेवैतत्। (स्तोकमन्तरमतीत्य) आयुष्मन्! इतः पश्य—

नाकपृष्ठप्रतिष्ठितस्य सौभाग्य मात्मयशसः।
विच्छित्तिशेषैः सुरसुन्दरीणां वर्णैरमी कल्पलतांशुकेषु।
विचिन्त्य गीतक्षममर्थबन्धं दिवौकसस्त्वच्चरितं लिखन्ति॥ ५॥

राजा—मातले! असुरसंप्रहारोत्सुकेन पूर्वेद्युर्दिव मधिरोहता मया न लक्षितः स्वर्गमार्गः। तत् कतरस्मिन् मरुतां पथि वर्तामहे?

मातलि—

त्रिस्रोतसं वहति यो गगनप्रतिष्ठां
ज्योतींषि वर्तयति च प्रविभक्तरश्मिः।
तस्य द्वितीयहरिविक्रमनिस्तमस्कं
वायोरिमं परिवहस्य वदन्ति मार्गम्॥ ६॥

राजा—मातले! अतः खलु सबाह्यकरणो ममान्तरात्मा प्रसीदति।

(रथाङ्गमवलोक्य) मेघपदवी मवतीर्णौ स्वः।

मात—कथमवगम्यते?

ରଜା— ଏ ସମସ୍ତ କେବଳ ଇନ୍ଦ୍ରଙ୍କର ମହିମା । କାରଣ——
ସେବକ ବ୍ୟକ୍ତିମାନେ ଯେ ବଡ ବଡ କାର୍ଯ୍ୟ ସାଧନ କରିପାରନ୍ତି, ତାହା ପ୍ରଭୁଙ୍କର ମହିମାରୁ ହିଁ ସମ୍ଭବ ହୋଇଥାଏ । ଯଦି ସୂର୍ଯ୍ୟ ଅରୁଣଙ୍କୁ ନିଜ ରଥ ଆଗରେ ସ୍ଥାନ ଦେଇ ନ ଥାନ୍ତେ, ତେବେ ଅରୁଣ କ'ଣ ଅନ୍ଧାର ଦୂର କରି ପାରନ୍ତେ ? ୪ ॥

ମାତଳି— ଏଭଳି ଉକ୍ତି ଆପଣଙ୍କୁ ଶୋଭପାଏ । (କିଛି ଦୂର ଯାଇ) ଆୟୁଷ୍ମାନ୍ ! ଏଣେ ଦେଖନ୍ତୁ, ଆପଣଙ୍କର କୀର୍ତ୍ତିଗାଥା କିପରି ସ୍ୱର୍ଗରେ ପ୍ରତିଷ୍ଠା ଲାଭ କରିଛି ।

ସୁର-ସୁନ୍ଦରୀମାନଙ୍କର ବେଶସଜ୍ଜା ପରେ ଯେଉଁ ଅବଶିଷ୍ଟ ଅଙ୍ଗରାଗ ବଳିଛି, ସେହି ରଙ୍ଗରେ, କଳ୍ପବୃକ୍ଷରୁ ମିଳିଥିବା ବସ୍ତ୍ର ଉପରେ, ଦେବତାମାନେ ଆପଣଙ୍କର ଚରିତକୁ ଚିନ୍ତା କରି ଗୀତ ଆକାରରେ ଲେଖୁଛନ୍ତି । ୫ ॥

ରଜା— ମାତଳି, ସେଦିନ ସ୍ୱର୍ଗ ଆରୋହଣ କରୁଥିବା ବେଳେ ମୁଁ ଅସୁର-ମାନଙ୍କ ସହିତ ଯୁଦ୍ଧ ନିମନ୍ତେ ବ୍ୟଗ୍ର ଥିଲି । ତେଣୁ ସ୍ୱର୍ଗମାର୍ଗ ଭଲ-ଭାବେ ଦେଖିପାରି ନାହିଁ । ବର୍ତ୍ତମାନ ଆମେ କେଉଁ ବାୟୁ-ମାର୍ଗରେ ଯାଉଥାଇଁ ?

ମାତଳି— ଏହାକୁ ପରିବହ ବାୟୁର ମାର୍ଗ ବୋଲି କହନ୍ତି । ଆକାଶର ପ୍ରତିଷ୍ଠା-ସ୍ୱରୂପିଣୀ ତ୍ରିପଥବାହିନୀ ସ୍ୱର୍ଗଗଙ୍ଗା ଏହି ମାର୍ଗରେ ବହେ ଏବଂ ଏହା ଗ୍ରହନକ୍ଷତ୍ରମାନଙ୍କର ରଶ୍ମିରାଶିକୁ ବିଭକ୍ତ କରି ସେମାନଙ୍କୁ ପରିଚାଳିତ କରେ । ଆଉମଧ୍ୟ, ବାମନାବତାରରେ ଭଗବାନ୍ ବିଷ୍ଣୁ ଏଥିରେ ତାଙ୍କର ଦ୍ୱିତୀୟ ପଦ ଅର୍ପଣ କରିଥିଲେ ବୋଲି ଏହା ଅନ୍ଧକାର ଶୂନ୍ୟ ହୋଇଛି । ୬ ॥

ରଜା— ଏଇଥି ପାଇଁ ମୋର ବାହ୍ୟ ଇନ୍ଦ୍ରିୟମାନଙ୍କ ସହିତ ଅନ୍ତରାତ୍ମା ପ୍ରସନ୍ନ ହୋଇ ଉଠୁଛି । ( ରଥଚକ୍ରକୁ ନିରୀକ୍ଷଣ କରି ) ଆମ୍ଭେ-ମାନେ ବର୍ତ୍ତମାନ ମେଘପଥକୁ ଆସିଥାଇଁ ।

ମାତଳି— କିପରି ଜାଣୁଛନ୍ତି ?

राजा—

अयमरविवरेभ्यश्चातकैर्निष्पतद्भिर्
हरिभिरचिरभासां तेजसा चानुलिप्तैः ।
गतमुपरि घनानां वारिगर्भोदराणां
पिशुनयति रथस्ते सीकरक्लिन्ननेमिः ॥ ७ ॥

मात—क्षणादायुष्मान् स्वाधिकारभूमौ वर्तिष्यते ।

राजा—( अधोऽवलोक्य ) वेगावतरणादाश्चर्यदर्शनः संलक्ष्यते मनुष्य-लोकः । तथा हि—

शैलानामवरोहतीव शिखरादुन्मज्जतां मेदिनी
पर्णाभ्यन्तरलीनतां विजहति स्कन्धोदयात् पादपाः ।
संधानं तनुभागनष्टसलिलव्यक्त्या व्रजन्त्यापगाः
केनाप्युत्क्षिपतेव पश्य भुवनं मत्पार्श्वमानीयते ॥ ८ ॥

मात—साधु दृष्टम् ( सबहुमानवलोक्य ) अहो ! उदाररमणीया पृथिवी ।

राजा—मातले ! कतमोऽयं पूर्वापरसमुद्रावगाढः कनकरसनिष्यन्दः सान्ध्य इव मेघः सानुमानालोक्यते ?

मात—आयुष्मन् ! एष खलु हेमकूटो नाम किंपुरुषपर्वतः तपःसंसिद्धि-क्षेत्रम् । पश्य—

स्वायंभुवान् मरीचेर्यः प्रबभूव प्रजापतिः ।
सुरासुरगुरुः सोऽत्र सपत्नीकस्तपस्यति ॥ ९ ॥

ରାଜା— ଏଇ, ତୁମ ରଥଚକର ପରିଧି ଜଳକଣାରେ ଆର୍ଦ୍ର ହୋଇଛି । ଚକର ଅରବିବର ଦେଇ ଚାତକ ପକ୍ଷୀମାନେ ବାହାରି ଯାଉଛନ୍ତି ଏବଂ ବିଦ୍ୟୁତ୍ ତେଜରେ ଅଶ୍ୱମାନେ କ୍ଷଣକୁ କ୍ଷଣ ରଞ୍ଜିତ ହୋଇ-ଉଠୁଛନ୍ତି । ଏଣୁ ଜଣା ପଡୁଛି, ଆପଣଙ୍କର ରଥ ସଜଳ ମେଘମାଳା ଉପରେ ଗତି କରୁଛି ।

ମାତଳି— ଆଉ ମୁହୂର୍ତ୍ତକ ମଧ୍ୟରେ ଆପଣ ନିଜ ରାଜ୍ୟରେ ପ୍ରବେଶ କରିବେ ।

ରାଜା— ( ତଳକୁ ଚାହିଁ ) ବେଗରେ ରଥ ଅବତରଣ କରୁଥିବା ହେତୁ ପୃଥିବୀର ଦୃଶ୍ୟ ଅଦ୍‌ଭୁତ ଦେଖା ଯାଉଛି । ଜଣାପଡୁଛି, ସତେ ଯେପରି ପର୍ବତମାନେ ଉପରକୁ ଉଠି ଆସୁଛନ୍ତି ଏବଂ ସେମାନଙ୍କ ଶିଖରରୁ ପୃଥିବୀ ତଳକୁ ଓହ୍ଲାଇ ଯାଉଛି ! ବୃକ୍ଷମାନେ ପ୍ରଥମେ କେବଳ ପତ୍ରମୟ ଜଣାପଡୁଥିଲେ, ସେମାନଙ୍କର ଶାଖାଗୁଡ଼ିକ ବର୍ତ୍ତମାନ ସ୍ପଷ୍ଟ ଦେଖାଗଲଣି । ନଦୀମାନେ ଅତି ଦୂରରୁ ରେଖା ଭଳି ଜଳହୀନ ପ୍ରତୀୟମାନ ହେଉଥିଲେ, କିନ୍ତୁ ବର୍ତ୍ତମାନ ସେଥିରେ ଜଳ ଥିବାର ଦେଖା ଗଲଣି । ବୋଧ ହେଉଛି, କେହି ଯେପରି ପୃଥିବୀକୁ ଉପରକୁ ଫିଙ୍ଗି ମୋ ନିକଟକୁ ପଠାଇଦେଉଛି ! ୮ ।।

ମାତଳି— ଆପଣ ଭଲ ଭାବେ ନିରୀକ୍ଷଣ କରିଛନ୍ତି । ( ଆଦରର ସହିତ ଚାହିଁ ) ଆହା ! ପୃଥିବୀ କେଡ଼େ ବିଶାଳ ଆଉ ରମଣୀୟ !

ରାଜା— ମାତଳି, ଏହି ଯେଉଁ ପର୍ବତ ପୂର୍ବ ସମୁଦ୍ରଠାରୁ ପଶ୍ଚିମ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ ହୋଇ ସନ୍ଧ୍ୟାକାଳୀନ ମେଘମାଳା ପରି ଦିଶୁଛି ଏବଂ ଯାହା ଉପରେ ତରଳ ସୁବର୍ଣ୍ଣର ଧାର ବହୁଛି, ତାହା କେଉଁ ପର୍ବତ ?

ମାତଳି— ଆୟୁଷ୍ମାନ୍, ଏ ହେଉଛି 'ହେମକୂଟ' ପର୍ବତ । ଏହା ସିଦ୍ଧିଲାଭର କ୍ଷେତ୍ର । ଏଠାରେ କିଂପୁରୁଷମାନେ ବାସ କରନ୍ତି । ଦେଖନ୍ତୁ—

ସ୍ୱୟମ୍ଭୂ ମରୀଚିଙ୍କର ପୁତ୍ର, ଦେବ ଓ ଦାନବମାନଙ୍କର ପିତା, ପ୍ରଜାପତି
କଶ୍ୟପ ସପତ୍ନୀକ ଏଠାରେ ତପସ୍ୟା କରନ୍ତି । ୯ ।।

राजा—तेन ह्यनतिक्रमणीयानि श्रेयांसि। प्रदक्षिणीकृत्य भगवन्तं गन्तुमिच्छामि।

मात—प्रथमः कल्पः।

( नाट्येनावतीर्णौ )

राजा—( सविस्मयम् )

उपोढशब्दा न रथाङ्गनेमयः
प्रवर्तमानं न च दृश्यते रजः।
अभूतलस्पर्शतया निरुन्धत
स्तवावतीर्णोऽपि रथो न लक्ष्यते ॥ १० ॥

मात—एतावानेव शतक्रतोरायुष्मतश्च विशेषः।

राजा—मातले ! कतमस्मिन् प्रदेशे मारीचाश्रमः।

मात—( हस्तेन दर्शयन् )

वल्मीकार्धनिमग्नमूर्तिरुरसा संदष्टसर्पत्वचा
कण्ठे जीर्णलताप्रतानवलयेनात्यर्थं संपीडितः।
अंसव्यापि शकुन्तनीडनिचितं विभ्रज्जटामण्डलं
यत्र स्थाणुरिवाचलो मुनिरसावभ्यर्कबिम्बं स्थितः ॥ ११ ॥

राजा—नमोऽस्मै कष्टतपसे।

मात—( संयतप्रग्रहं रथं कृत्वा ) महाराज ! एतौ अदितिपरिवर्धित-मन्दारवृक्षं प्रजापतेराश्रमं प्रविष्टौ स्वः।

राजा—स्वर्गादधिकतरं निर्वृतिस्थानम्। अमृतह्रदमिवावगाढोऽस्मि।

मात—( रथं स्थापयित्वा ) अवतरत्वायुष्मान्।

ରଜା— ତା’ ହେଲେ ଏଭଳି ମଙ୍ଗଳ-ଅବସର ଛାଡ଼ି ଯିବା ଉଚିତ ନୁହେଁ । ମୁଁ ଭଗବାନ୍ କଶ୍ୟପଙ୍କୁ ବନ୍ଦନା କରି ଯିବାକୁ ଚାହୁଁଛି ।

ମାତଳି— ଉତ୍ତମ କଥା ।

( ଦୁହେଁ ନାଟ୍ୟରେ ଅବତରଣ କଲେ )

ରଜା— ( ଆଶ୍ଚର୍ଯ୍ୟରେ ) ରଥଚକର ପରିଧିରୁ ଶବ୍ଦ ବାହାରୁ ନାହିଁ କିମ୍ବା ଧୂଳି ଉଡ଼ିବାର ଦେଖା ଯାଉନାହିଁ । ଆପଣ ଅଶ୍ୱମାନଙ୍କୁ ନିୟନ୍ତ୍ରିତ କରି ତଳକୁ ରଥ ଆଣିଲେଣି । ମାତ୍ର ତାହା ଭୂମି ସ୍ପର୍ଶ ନ କରୁଥିବା ହେତୁ ତଳକୁ ଆସିଲା ଭଳି ଜଣାପଡୁନାହିଁ । ୧୦ ।।

ମାତଳି— ଇନ୍ଦ୍ରଙ୍କ ରଥ ଏବଂ ଆପଣଙ୍କର ରଥ ମଧ୍ୟରେ ଏଇ ପ୍ରଭେଦ ।

ରଜା— କଶ୍ୟପଙ୍କର ଆଶ୍ରମ କେଉଁଠାରେ ?

ମାତଳି— ( ହାତ ବଢ଼ାଇ ଦେଖାଇ ଦେଇ ) ଏଇ, ଯେଉଁଠାରେ ଭଗବାନ୍ କଶ୍ୟପ ସ୍ଥାଣୁ ଭଳି ଅଚଳ ଭବରେ ସୂର୍ଯ୍ୟମଣ୍ଡଳ ଆଡକୁ ଚାହିଁ ତପସ୍ୟା କରୁଛନ୍ତି, ସେଇ ହେଉଛି ଆଶ୍ରମ । ତାଙ୍କର ଦେହରୁ ଅର୍ଦ୍ଧେକ ଉଇହୁଙ୍କାରେ ଆବୃତ ହୋଇଗଲାଣି, ଛାତିରେ ସାପକୋତି ଯଜ୍ଞୋପବୀତ ପରି ପଡ଼ିଛି, କଣ୍ଠରେ ପୁରୁଣା ଲତା ଗୁଡେଇ ହୋଇ ନିବିଡଭବରେ ଭିଡି ଧରିଛି, ସ୍କନ୍ଧ ଉପରେ ଜଟା ବ୍ୟାପ୍ତ ହୋଇ ପଡ଼ିଛି, ଏବଂ ସେଥିରେ ପକ୍ଷୀମାନେ ନୀଡ ନିର୍ମାଣ କରିଛନ୍ତି । ୧୧ ।।

ରଜା- କଠୋରତପସ୍ୟାରତ ମହାତ୍ମାଙ୍କୁ ନମସ୍କାର ।

ମାତଳି— ( ଲଗାମ ଟାଣି ରଥର ଗତି ହ୍ରାସ କରି ) ମହାରଜ, ବର୍ତ୍ତମାନ ଆମେ ପ୍ରଜାପତିଙ୍କ କଶ୍ୟପଙ୍କର ଆଶ୍ରମରେ ପ୍ରବେଶ କରିଥାଇଁ, ଯେଉଁଠାରେ ଅଦିତି ସ୍ୱହସ୍ତରେ ମନ୍ଦାର ବୃକ୍ଷ ଗୁଡ଼ିଏ ବଢ଼ାଇଛନ୍ତି ।

ରଜା— ସ୍ୱର୍ଗଠାରୁ ମଧ୍ୟ ଅଧିକ ଶାନ୍ତିର ସ୍ଥାନ । ଏହା ଭିତରକୁ ଆସି ମୋତେ ଜଣା ପଡୁଛି, ମୁଁ ଯେପରି ଅମୃତହ୍ରଦରେ ସ୍ନାନ କରୁଛି !

ମାତଳି—( ରଥ ଅଟକାଇ ) ଆୟୁଷ୍ମାନ୍, ଅବତରଣ କରନ୍ତୁ ।

राजा—( अवतीर्य ) मातले ! भवान् कथमिदानीम् ?

मात—संयन्त्रितो मया रथः । वयमप्यवतरामः । ( तथा कृत्वा ) इत आयुष्मन् ! ( परिक्रम्य ) दृश्यन्तामत्रभवतीमृषीणां तपोवनभूमयः ।

राजा—ननु विस्मयादवलोकयामि ।

प्राणानामनिलेन वृत्तिरुचिता सत्कल्पवृक्षे वने
तोये काञ्चनपद्मरेणुकपिशे पुण्याभिषेकक्रिया ।
ध्यानं रत्नशिलागृहेषु विबुधस्त्रीसंनिधौ संयमो
यत् काङ्क्षन्ति तपोभिरन्यमुनयस्तस्मिंस्तपस्यन्त्यमी ॥ १२ ॥

मात—उत्सर्पिणी खलु महतां प्रार्थना । ( परिक्रम्य आकाशे ) अये वृद्धशाकल्य ! किमनुतिष्ठति भगवान् मारीचः ? ( आकर्ण्य ) किं ब्रवीषि ? दाक्षायण्या पतिव्रताधर्ममधिकृत्य पृष्टस्तस्यै महर्षिपत्नीसहितायै कथयतीति ।

राजा—( कर्णं दत्वा ) अये ! प्रतिपाल्यावसरः खलु प्रस्तावः ।

मात—(राजानमवलोक्य) अस्मिन्नशोकवृक्षमूले तावदास्तामायुष्मान्, यावत् त्वामिन्द्रगुरवे निवेदयितुमन्तरान्वेषी भवामि ।

राजा—यथा भवान् मन्यते । ( स्थितः )

मात—आयुष्मन् ! साधयाम्यहम् । ( निष्क्रान्तः )

राजा—( निमित्तं सूचयित्वा )

मनोरथाय नाशंसे किं बाहो ! स्पन्दसे मुधा ?
पूर्वावधीरितं श्रेयो दुःखं हि परिवर्तते ॥ १३ ॥

ରଜା— ( ଓହ୍ଲାଇ ) ଆଉ ଆପଣ ?

ମାତଳି—ମୁଁ ରଥ ସ୍ଥିର କଲିଣି । ଅବତରଣ କରୁଛି । ( ରଥରୁ ଓହ୍ଲାଇ ) ଆୟୁଷ୍ମାନ୍, ଏଣେ ଆସନ୍ତୁ । ( କିଛି ଦୂର ଯାଇ ) ପୂଜ୍ୟ ଋଷି-ମାନଙ୍କର ଏହି ତପୋବନଭୂମି ଦର୍ଶନ କରନ୍ତୁ ।

ରଜା— ଏହାକୁ ଦେଖି ମୋତେ ଅତ୍ୟନ୍ତ ବିସ୍ମୟ ବୋଧ ହେଉଛି ।

ଏ ବନରେ ବାଞ୍ଛାପୂର୍ଣ୍ଣକାରୀ କଳ୍ପବୃକ୍ଷ ଥିଲେ ମଧ୍ୟ ମୁନିମାନେ ପବନ ଆହାର କରୁଛନ୍ତି, ସ୍ୱର୍ଣ୍ଣପଦ୍ମରେଣୁରଞ୍ଜିତ ଜଳରେ ଯଥାବିଧି ସ୍ନାନ କରୁଛନ୍ତି, ରତ୍ନଶିଳା ଉପରେ ସମାଧିମଗ୍ନ ହେଉଛନ୍ତି ଏବଂ ଅପ୍ସରାମାନଙ୍କ ନିକଟରେ ରହି ସଂଯମରେ ଚଳୁଛନ୍ତି । ଅନ୍ୟ ମୁନିମାନେ ତପସ୍ୟା କରି ଯେଉଁ ସ୍ଥାନ ପାଇବାକୁ ଚାହାଁନ୍ତି, ଏମାନେ ସେହି ସ୍ଥାନରେ ରହି ମଧ୍ୟ ପୁଣି ତପସ୍ୟା କରୁଛନ୍ତି ! ୧୨ ॥

ମାତଳି—ଉଚ୍ଚମନା ବ୍ୟକ୍ତିମାନଙ୍କର ଅଭିଳାଷ ଅଧିକ ଅଧିକ ଉଚ୍ଚଗାମୀ । ( କିଛି ଦୂର ଯାଇ ଏବଂ ଅନ୍ୟ ଆଡେ ଚାହିଁ ) କିଏ ? ବୃଦ୍ଧ ଶାକଲ୍ୟ ? ଭଗବାନ୍ କଶ୍ୟପ ବର୍ତ୍ତମାନ କଅଣ କରୁଛନ୍ତି ? ( କାନ ଡେରି ) କଅଣ କହିଲ ? ଅଦିତି ପତିବ୍ରତା ଧର୍ମ ସମ୍ବନ୍ଧରେ ଜାଣିବାକୁ ତାଙ୍କୁ ଅନୁରୋଧ କରିଥିଲେ । ସେ ଋଷିପତ୍ନୀମାନଙ୍କ ସମେତ ଅଦିତିଙ୍କୁ ସେହି ବିଷୟରେ ଉପଦେଶ ଦେଉଛନ୍ତି ।

ରଜା— ( କାନ ଡେରି ) ତା' ହେଲେ କିଛି ସମୟ ଅପେକ୍ଷା କରିବା ଉଚିତ ।

ମାତଳି—( ରଜାଙ୍କୁ ଚାହିଁ ) ଆୟୁଷ୍ମାନ୍ ! ଆପଣ ଏହି ଅଶୋକ ବୃକ୍ଷ ତଳେ ଥାଆନ୍ତୁ । ମୁଁ ଇନ୍ଦ୍ରଙ୍କ ପିତାଙ୍କୁ ( କଶ୍ୟପଙ୍କୁ ) ଆପଣଙ୍କ ଆଗମନ-ବାର୍ତ୍ତା ଜଣାଇବା ନିମନ୍ତେ ଭିତରକୁ ଯାଉଛି ।

ରଜା— ଆପଣ ଯେପରି ମନେ କରୁଛନ୍ତି । ( ରହିଲେ )

ମାତଳି—ମୁଁ ଯାଉଛି । ( ଚାଲିଗଲେ )

ରଜା— ( ଶୁଭ ଲକ୍ଷଣର ସୂଚନା ଦେଇ ) ରେ ଦକ୍ଷିଣ ବାହୁ, ଏକ୍ଷଣି ତୁ କାହିଁକି ବୃଥାରେ ସ୍ପନ୍ଦିତ ହେଉଛୁ ? ମନୋରଥ ପୂର୍ଣ୍ଣ ହେବ ବୋଲି ମୋର ଆଉ ଆଶା ନାହିଁ । ମୁଁ ପୂର୍ବରୁ ଯେଉଁ ମଙ୍ଗଳକୁ ପ୍ରତ୍ୟାଖ୍ୟାନ କରିଛି, ତାହା ହିଁ ମୋର ଦୁଃଖରେ ପରିଣତ ହୋଇଛି । ୧୩ ॥

( नेपथ्ये )

मा खु चावलं करेहि । कहं गदो जेव्व अत्तणो पकिदिं ?
( मा खलु चापलं कुरु । कथं गत एवात्मनः प्रकृतिम् ? )

राजा—( कर्णं दत्त्वा ) अभूमिरियमविनयस्य । को नु खल्वेष निषिध्यते । ( शब्दानुसारेणावलोक्य. सविस्मयम् ) अये ! को नु खल्वयमनुबध्यमानस्तपस्विनीभ्यामबालसत्त्वो बालः ?

अर्धपीतस्तनं मातुरामर्दक्लिष्टकेसरम् ।
प्रक्रीडितुं सिंहशिशुं बलात्कारेण कर्षति ॥ १४ ॥

( ततः प्रविशति यथानिर्दिष्टकर्मा तपस्विनीभ्यां सह बालः )

बालः—यिंभ ले शिंहशावका यिंभ । दंताई दे गणइश्शं । ( जृम्भस्व, रे सिंहशावक ! जृम्भस्व, दन्तांस्ते गणयिष्ये । )

प्रथ—अविणीद ! किं णो अपच्चणिव्विसेसाणि सत्ताणि विप्पअरेसि ? हंत, वड्ढइ दे संरंभो । ठाणे खु इसिजणेण सव्वदमणो त्ति किदणामहेओ सि । ( अविनीत ! किं नः अपत्यनिर्विशेषाणि सत्त्वानि विप्रकरोषि ? हन्त,वर्धते तव संरम्भः । स्थाने खलु ऋषिजनेन सर्वदमन इति कृतनामधेयोऽसि । )

राजा—किं नु खलु बालेऽस्मिन्नौरस इव पुत्रे स्निह्यति मे हृदयम् । नूनमनपत्यता मां वत्सलयति ।

द्विती—एसा खु केसरिणी तुमं लंघेदि जइ से पुत्तअं ण मुंचेसि । ( एषा खलु केसरिणी त्वां लङ्घयिष्यति यदि तस्याः पुत्रकं न मुञ्चसि । )

बालः—( सस्मितम् ) अम्हो वलिअं खु भीदे स्मि । ( अहो, बलीयः खलु भीतोऽस्मि । ) ( अधरं दर्शयति )

राजा—( सविस्मयम् )

महतस्तेजसो बीजं बालोऽयं प्रतिभाति मे ॥
स्फुलिङ्गावस्थया वह्निरेधापेक्ष इव स्थितः ॥ १५ ॥

प्रथ—वच्छ ! एदं बालमिइंदअं मुंच । अवरं दे कीलणअं दाइस्सं । (वत्स ! एनं बालमृगेन्द्रं मुञ्च । अपरं ते क्रीडनकं दास्यामि । )

बालः—कहिं शे, देहि णं । (कुत्र तत् ? देहि ननु ।) (हस्तं प्रसारयति)

ନେପଥ୍ୟେ—

ଦୁଷ୍ଟାମି କର ନାହିଁ । ତୁ ତେବେ ତୋର ପ୍ରକୃତି ପାଇଲୁଣି !

ରାଜା— ( କାନ ଡେରି ) ଏ ତ କୌଣସି ଦୁଷ୍ଟାମିର ସ୍ଥାନ ନୁହେଁ । ତେବେ କାହାକୁ ନିଷେଧ କରା ହେଉଛି ? ( ଯେଉଁ ଦିଗରୁ ଶବ୍ଦ ଆସୁଥିଲା, ସେହି ଦିଗକୁ ଚାହିଁ ବିସ୍ମୟରେ ) ଆରେ ! ଏ ଶିଶୁଟି କିଏ ? ଦୁଇଜଣ ତାପସୀ ଏହା ପଛରେ ଆସୁଛନ୍ତି । ଶିଶୁ ହେଲେ ମଧ୍ୟ ଏ କେଡେ ବଳିଷ୍ଠ !

ସିଂହ ଶିଶୁଟିଏ ତା ମା'ଠାରୁ ସ୍ତନ୍ୟ ପାନ କରି ସାରିନାହିଁ; ଏ ଖେଳିବା ନିମନ୍ତେ ତାକୁ ବଳାତ୍କାରରେ କେଶ ଧରି ଟାଣୁଛି ! । ୧୪ ।।

(ତାହାପରେ ତାପସୀ ଦୁଇ ଜଣ ଏବଂ ସିଂହଶିଶୁଟିକୁ ଟାଣୁଥିବା ଏକ ଶିଶୁ ଦେଖାଗଲେ । )

ଶିଶୁ- ରେ ସିଂହଛୁଆ, ମୁହଁ ଖୋଲ ; ତୋ ଦାନ୍ତ ଗଣିବି ।

ତାପସୀ-ଦୁଷ୍ଟ, ଏ ପ୍ରାଣୀମାନେ ଆମର ସନ୍ତାନ ପରି ପାଳିତ ହୋଇଛନ୍ତି । ତୁ ଏମାନଙ୍କୁ କାହିଁକି କଷ୍ଟ ଦେଉଛୁ ? ତୋର ସାହସ କ୍ରମେ ବଢୁଛି । ଋଷିମାନେ ତୋତେ 'ସର୍ବଦମନ' ବୋଲି ଠିକ୍ ନାମଟିଏ ଦେଇଛନ୍ତି ।

ରାଜା— ଏହି ଶିଶୁଟି ପ୍ରତି ମୋ ହୃଦୟରେ କାହିଁକି ନିଜ ପୁତ୍ର ଭଳି ସ୍ନେହ ଜାତ ହେଉଛି ! ବୋଧହୁଏ ମୁଁ ନିଃସନ୍ତାନ ଥିବା ହେତୁ ଏପରି ଅନୁଭବ କରୁଛି ।

ଦ୍ୱିତୀୟା- ତୁ ଯଦି ଏହାର ଛୁଆକୁ ନ ଛାଡ଼ିବୁ, ତା ହେଲେ ଏ ସିଂହୀ ତୋ ଉପରକୁ ଲମ୍ଫ ଦେବ ।

ଶିଶୁ— ( ହସି ) ଇଃ, ଭାରି ଡରିଗଲି ? ( ସିଂହକୁ ଖତେଇ ହେଲା )

ରାଜା— ( ବିସ୍ମୟରେ ) ଇନ୍ଧନକୁ ଅପେକ୍ଷା କରି ସ୍ଫୁଲିଙ୍ଗ ଅବସ୍ଥାରେ ଥିବା ଅଗ୍ନି ଭଳି ଏ ବାଳକଟି ଏକ ମହାନ୍ ତେଜର ଅଙ୍କୁର ବୋଲି ମୋତେ ବୋଧ ହେଉଛି । ୧୫ ।।

ପ୍ରଥମା—ବତ୍ସ, ଏ ସିଂହଛୁଆକୁ ଛାଡ଼ି ଦେ । ତୋତେ ଗୋଟିଏ ଖେଳନା ଦେବି ।

ଶିଶୁ— କାହିଁ ଦିଅ ; (ହାତ ବଢ଼ାଇଲା )

राजा—(बालस्य हस्तमवलोक्य) कथं चक्रवर्तिलक्षणमप्यनेन धार्यते ? तथा ह्यस्य—

प्रलोभ्यवस्तुप्रणयप्रसारितो
विभाति जालग्रथिताङ्गुलिः करः ।
अलक्ष्यपत्रान्तरमिद्धरागया
नवोषसा भिन्नमिवैकपङ्कजम् ॥ १६ ॥

द्विती—सुव्वदे ! ण सक्को एसो वाआमेत्तेण विरमइदुं । गच्छ तुमं । मम केरए उडए मक्कंडेअस्स इसिकुमारअस्स वण्णचित्तिदो मित्तिआमोरओ चिट्ठदि । तं से उवहर । ( सुव्रते ! न शक्य एषो वाचामात्रेण विरमयितुम् । गच्छ त्वम् । मदीये उटजे मार्कण्डेयस्य ऋषिकुमारस्य वर्णचित्रितो मृत्तिकामयूरस्तिष्ठति । तमस्योपहर । )

प्रथ—तह । ( तथा । ) ( निष्क्राता )

बालः—इमिणा येव याव कीलिस्सं ( अनेनैव तावत् क्रीडिष्यामि । ) ( तापसीं विलोक्य हसति )

राजा—स्पृहयामि खलु दुर्ललितायास्मै—

आलक्ष्यदन्तमुकुलाननिमित्तहासै-
रव्यक्तवर्णरमणीयवचःप्रवृत्तीन् ।
अङ्काश्रयप्रणयिनस्तनयान् वहन्तो
धन्यास्तदङ्गरजसा मलिनीभवन्ति ॥ १७ ॥

ताप—होदु, ण मं अअं गणेदि । ( पार्श्वमवलोकयति ) को एत्थ इसिकुमाराणं ? ( राजानमवलोक्य ) भद्दमुह ! एहि दाव । मोएहि इमिणा दुम्मोअहत्थग्गहेण डिंभलीलाए वाहीअमाणं बालमिइंदअं । (भवतु, न मामयं गणयति (पार्श्वमवलोकयति) । कोऽत्र ऋषिकुमाराणाम् ? ( राजानमवलोक्य ) भद्रमुख । एहि तावत् । मोचयानेन दुर्मोकहस्तग्रहेण डिम्भलीलया बाध्यमानं बालमृगेन्द्रम् । )

ରଜା— (ଶିଶୁର ହାତକୁ ଚାହିଁ) ଆରେ ! ଏ ଯେ ଚକ୍ରବର୍ତ୍ତୀ ଲକ୍ଷଣ ଧାରଣ କରିଛି ! ଆଉ ମଧ୍ୟ—
ଲୋଭନୀୟ ପଦାର୍ଥ ପାଇବା ନିମନ୍ତେ ଏ ଯେଉଁ ହାତଟି ବଢାଇଛି, ତାହାର ଅଙ୍ଗୁଳିଗୁଡ଼ିକ ଜାଲରେ ଛନ୍ଦା ହେଲା ଭଳି ଶୋଭା ପାଉଛି । ନୂତନ ଉଷାରେ ବିକଶିତ ପଦ୍ମ ଫୁଲଟିଯେପରି ଦ୍ୱିଗୁଣ ଆଭା ଧାରଣ କରିଥାଏ ଏବଂ ତା'ର ପାଖୁଡ଼ାଗୁଡ଼ିକୁ ପୃଥକ୍ ଭାବରେ ଲକ୍ଷ୍ୟ କରି ହେଉ ନ ଥାଏ, ଏହାର ହାତଟି ସେହିପରି ଦିଶୁଛି । ୧୬

ଦ୍ୱିତୀୟା—ସୁବ୍ରତା, ଏହାକୁ କେବଳ କଥାରେ ବାରଣ କରି ହେବ ନାହିଁ । ତୁମେ ଯାଅ, ମୋ କୁଡିଆରେ ଋଷିକୁମାର ମାର୍କଣ୍ଡେୟର ରଙ୍ଗିନ୍ ମାଟି ମୟୂରଟିଏ ଅଛି, ତାକୁ ଆଣି ଏହାକୁ ଦିଅ ।

ପ୍ରଥମା— ଆଚ୍ଛା । ( ଚାଲିଗଲେ )

ଶିଶୁ— ସେ ପର୍ଯ୍ୟନ୍ତ ଏହା ସହିତ ଖେଳୁଥିବି । ( ତପସ୍ୱୀକୁ ଚାହିଁ ହସିଲା )

ରଜା— ଦୁଷ୍ଟ ହେଲେ ମଧ୍ୟ ଏ ପିଲାଟିକୁ ପାଇବାକୁ ମୋର ଭାରି ଇଚ୍ଛା ହେଉଛି ।
ଶିଶୁମାନେ ବିନା କାରଣରେ ହସୁଥାଆନ୍ତି । ସେମାନଙ୍କର ଦାନ୍ତଗୁଡ଼ିକ ଫୁଲକଢି ପରି ଶୋଭା ପାଉଥାଏ । ସେମାନେ ଅସ୍ପଷ୍ଟ ମଧୁର କଥାମାନ କହୁଥାଆନ୍ତି ଏବଂ କୋଳରେ ବସିବାକୁ ଚାହୁଁଥାଆନ୍ତି । ଏପରି ଶିଶୁପୁତ୍ରମାନଙ୍କର ଅଙ୍ଗଧୂଳିରେ ଯେଉଁମାନଙ୍କର ଅଙ୍ଗ ମଳିନ ହୁଏ, ସେମାନଙ୍କର ଜୀବନ ଧନ୍ୟ । ୧୭

ତାପସୀ—ଆଚ୍ଛା, ଏ ମୋ କଥା ମାନୁନାହିଁ । (ପାର୍ଶ୍ୱକୁ ଚାହିଁ) ଏଠାରେ କେହି ଋଷିକୁମାର ଅଛ କି ? ( ରଜାଙ୍କୁ ଦେଖି ) ଭଦ୍ର, ଆସନ୍ତୁ, ଏହି ବାଳକ ସିଂହଛୁଆଟିକୁ ଧରି କଷ୍ଟ ଦେଲାଣି । ଆପଣ ଟିକିଏ ଏହାକୁ ଛଡ଼ାଇ ଦିଅନ୍ତୁ ।

राजा—( उपगम्य सस्मितम् ) अयि भो महर्षिपुत्र !

एवमाश्रमविरुद्धवृत्तिना
संयमः किमिति जन्मतस्त्वया ।
सत्त्वसंश्रयसुखोऽपि दूष्यते
कृष्णसर्पशिशुनेव चन्दनः ॥ १८ ॥

ताप—भद्दमुह ! ण खु अअं इसिकुमारओ । ( भद्रमुख ! न खल्वयं ऋषिकुमारः ) ।

राजा—आकारसदृशं चेष्टितमेवास्य कथयति । स्थानप्रत्ययात् तु वयमेवंतर्किणः । ( यथाभ्यर्थितमनुतिष्ठन् बालस्पर्शमुपलभ्य, आत्मगतम् । )

अनेन कस्यापि कुलाङ्कुरेण
स्पृष्टस्य गात्रेषु सुखं ममैवम् ।
कां निर्वृतिं चेतसि तस्य कुर्याद्
यस्यायमङ्कात् कृतिनः प्ररूढः ॥ १९ ॥

ताप—( उभौ निर्वर्ण्य ) अच्छरिअं अच्छरिअं । (आश्चर्यमाश्चर्यम् । )

राजा—आर्ये ! किमिव ?

ताप—इमस्स बालअस्स दे वि अ संवादिणी आकिदी त्ति विम्हाविदम्हि । अपरिइदस्स वि दे अप्पडिलोमो संवुत्तो त्ति अ । ( अस्य बालकस्य, तेऽपि च संवादिन्याकृतिरिति विस्मापितास्मि । अपरिचितस्यापि ते अप्रतिलोमः संवृत्त इति च । )

राजा—( बालकमुपलालयन् ) न चेन्मुनिकुमारोऽयम्, अथ कोऽस्य व्यपदेशः ?

ताप—पुरुवंसो । ( पुरुवंशः । )

राजा—( आत्मगतम् ) कथमेकान्वयो मम । अतः खलु मदनुकारिणमेनमत्रभवती मन्यते । अस्त्येतत् पौरवाणामन्त्यं कुलव्रतम् ।

भवनेषु रसाधिकेषु पूर्वं
क्षितिरक्षार्थमुशन्ति ये निवासम् ।
नियतैकयतिव्रतानि पश्चात्
तरुमूलानि गृहीभवन्ति तेषाम् ॥ २० ॥

( प्रकाशम् ) न पुनरात्मगत्या मानुषाणामेव विषयः ।

ରଜା— ( ପାଖକୁ ଯାଇ ସ୍ମିତ ହାସ୍ୟରେ ) ହେ ମୁନିକୁମାର, କୃଷ୍ଣସର୍ପଶିଶୁ ଯେପରି ପ୍ରାଣୀମାନଙ୍କର ସୁଖଦାୟକ ଚନ୍ଦନ ବୃକ୍ଷକୁ ଦୂଷିତ କରେ, ତୁମେ ସେହିପରି କାହିଁକି ବାଲ୍ୟ ସମୟରୁ ଆଶ୍ରମବିରୋଧୀ ବ୍ୟବହାର ଦ୍ୱାରା ମଙ୍ଗଳକର ସଂଯମଗୁଣକୁ ଦୂଷିତ କରୁଛ ? ୧୮ ॥

ତାପସୀ—ଭଦ୍ର, ଏ ମୁନିକୁମାର ନୁହେଁ ।

ରଜା— ଏହାର ଆକୃତି-ଅନୁରୂପ କାର୍ଯ୍ୟରୁ ତାହା ଜଣା ପଡୁଛି । କିନ୍ତୁ ଏ ତପୋବନରେ ଥିବାରୁ ମୁଁ ଏପରି ମନେ କଲି । ( ବାଳକଠାରୁ ସିଂହ-ଶିଶୁକୁ ଛଡାଉ ଛଡାଉ ବାଳକର ସ୍ପର୍ଶସୁଖ ଅନୁଭବ କରି )
ଏ କେଉଁ କୁଳର ରତ୍ନ, ମୁଁ ଜାଣେନା । ଏହାକୁ ସ୍ପର୍ଶ କରି ଯଦି ମୋତେ ଏଭଳି ପ୍ରଶାନ୍ତି ମିଳୁଛି, ତେବେ ଯେଉଁ ଭାଗ୍ୟବାନ୍ ବ୍ୟକ୍ତିର ଏ ପୁଅ, ସେ କେତେ ପ୍ରଶାନ୍ତି ପାଉ ନ ଥିବ ! ୧୯ ॥

ତାପସୀ—( ଉଭୟଙ୍କୁ ଚାହିଁ ) ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ !!

ରଜା— ଭଦ୍ରେ, କଅଣ ହେଲା ?

ତାପସୀ—ଏ ବାଳକ ସହିତ ଆପଣଙ୍କର ରୂପ ମିଳିଯାଉଥିବାର ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ଆପଣ ଅପରିଚିତ ହେଲେ ମଧ୍ୟ ଏ ତ ଆପଣଙ୍କ କଥା ମାନିନେଲା !

ରଜା— ( ବାଳକକୁ ସ୍ନେହ କରି ) ଏ ଯଦି ମୁନିକୁମାର ନୁହେଁ; ତେବେ କେଉଁ ବଂଶରେ ଏହାର ଜନ୍ମ ?

ତାପସୀ—ପୁରୁ ବଂଶରେ ।

ରଜା— ( ସ୍ୱଗତ ) କଅଣ ! ମୋ'ରି ବଂଶରେ ! ଏଇଥିପାଇଁ ତାପସୀ ଏହାକୁ ମୋର ଅନୁରୂପ ବୋଲି ମନେ କରୁଛନ୍ତି ! ପୁରୁବଂଶୀ-ମାନଙ୍କର କୁଳକ୍ରମାଗତ ଶେଷ ଧର୍ମ ହେଉଛି, ସେମାନେ ପୃଥିବୀ ପାଳନ ଉଦ୍ଦେଶ୍ୟରେ ପ୍ରଥମେ ବିଳାସପୂର୍ଣ୍ଣ ପ୍ରାସାଦରେ ବାସ କରନ୍ତି ଏବଂ ପରେ ବାର୍ଦ୍ଧକ୍ୟରେ ବାନପ୍ରସ୍ଥ ଧର୍ମ ଗ୍ରହଣ କରି ବୃକ୍ଷମୂଳକୁ ଗୃହ ରୂପେ ଗ୍ରହଣ କରନ୍ତି । ୨୦
( ପ୍ରକାଶ୍ୟରେ ) କିନ୍ତୁ କୌଣସି ମନୁଷ୍ୟ ତ ନିଜ ଶକ୍ତିରେ ଏଠାକୁ ଆସି ପାରିବ ନାହିଁ !

ताप—जह भद्दमुहो भणादि। अच्छरासंबंधेण इमस्स जणणी एत्थ देवगुरुणो तपोवणे प्पसूदा। (यथा भद्रमुखो भणति। अप्सरः-संबन्धेनास्य जननी अत्र देवगुरोस्तपोवने प्रसूता।)

राजा—(अपवार्य) हन्त, द्वितीयमिदमाशाजननम्। (प्रकाशम्) अथ सा तत्रभवती किमाख्यस्य राजर्षेः पत्नी ?

ताप—को तस्स धम्मदारपरिच्चाइणो णाम संकीतिदुं चिंतिस्सदि ? (कस्तस्य धर्मदारपरित्यागिनो नाम संकीर्तयितुं चिन्तयिष्यति ?)

राजा—(आत्मगतम्) कथम्, इयं खलु कथा मामेव लक्ष्यीकरोति। यदि तावदस्य शिशोर्मातरं नामतः पृच्छामि। अथवा अनार्यः परदारपृच्छाव्यवहारः।

(प्रविश्य मृण्मयूरहस्ता)

ताप—सव्वदमण ! सउंदलावण्णं पेक्ख। (सर्वदमन ! शकुन्तलावण्य पश्य।)

बालः—(सदृष्टिक्षेपम्) कहिं शा मे अज्जुए ? (कुत्र सा मम माता ?)

उभे—णामसारिस्सेण वंचिदो माउवच्छलो। (नामसादृश्येन वञ्चितो मातृवत्सलः।)

द्विती—वच्छ ! इमस्स मित्तिआमोरअस्स रम्मत्तणं पेक्ख त्ति भणिदो सि। (वत्स ! अस्य मृत्तिकामयूरस्य रम्यत्वं पश्येति भणितोऽसि।)

राजा—(आत्मगतम्) किं वा शकुन्तलेत्यस्य मातुराख्या। सन्ति पुनर्नामधेयसादृश्यानि। अपि नाम मृगतृष्णिकेव नाममात्र-प्रस्तावो मे विषादाय कल्पेत।

बालः—अज्जुए ! लोअदि मे एशे चडुलके मऊलके। (मातः ! रोचते मे एष चटुलो मयूरः।) (क्रीडनकमादत्ते)

प्रथ—(विलोक्य सोद्वेगम्) अम्हहे, रक्खाकरंडअं से मणिबंधे ण दीसदि ? (अहो रक्षाकरण्डकमस्य मणिबन्धे न दृश्यते।)

राजा—अलमलमावेगेन। नन्विदमस्य सिंहशावविमर्दात् परिभ्रष्टम्। (आदातुमिच्छति)

ତାପସୀ—ଆପଣ ଠିକ୍ କହୁଛନ୍ତି । ମାତ୍ର ଏହାର ମା ଅପ୍‌ସରକନ୍ୟା ହୋଇଥିବାରୁ କଶ୍ୟପଙ୍କର ଏହି ଆଶ୍ରମରେ ଏହାକୁ ଜନ୍ମ ଦେଇଛନ୍ତି ।

ରଜା— ( ମୁଖ ବୁଲାଇ ) ଏ ତ ଆହୁରି ଏକ ଆଶାଦ୍ୱାର ! ( ପ୍ରକାଶ୍ୟରେ ) ଆଚ୍ଛା, ସେ କେଉଁ ରାଜର୍ଷିଙ୍କର ପତ୍ନୀ ?

ତାପସୀ—ଯେ ନିଜର ଧର୍ମ-ପତ୍ନୀକୁ ପରିତ୍ୟାଗ କରିଛନ୍ତି, ତାଙ୍କର ନାମ କିଏ ତୁଣ୍ଡରେ ଧରିବ ?

ରଜା— (ସ୍ୱଗତ) ଏ କଥାରେ ତ ମୋତେ ଲକ୍ଷ୍ୟ କରଯାଉଛି ! ଆଚ୍ଛା, ମୁଁ ଏ ଶିଶୁର ମା' ନାମ ପଚାରେଁ କି ନା ; ପର ସ୍ତ୍ରୀ ସମ୍ବନ୍ଧରେ ପଚାରିବା ଶିଷ୍ଟ ବ୍ୟବହାର ନୁହେଁ ।

( ମାଟି ମୟୂର ହସ୍ତେ ଦ୍ୱିତୀୟ ତାପସୀର ପ୍ରବେଶ )

ଦ୍ୱିତୀୟା—ସର୍ବଦମନ, ଶକୁନ୍ତ-ଲାବଣ୍ୟ ଦେଖ ।

ଶିଶୁ— ( ଏଣେ ତେଣେ ଚାହିଁ ) କାହାନ୍ତି ମୋ ମା ?

ଦୁହେଁ— ମାଆ-ସୁହାଗର ପିଲାଟି ମା'ର ନାମସାଦୃଶ୍ୟ ହେତୁ ଠକିଗଲା ।

ଦ୍ୱିତୀୟା—ବତ୍ସ, ଏହି ମାଟି ମୟୂରର ଲାବଣ୍ୟ ଦେଖ, ଏହି କଥା ମୁଁ କହିଲି ।

ରଜା— ( ସ୍ୱଗତ ) ତେବେ କଅଣ ଏହାର ମା'ଙ୍କ ନାମ ଶକୁନ୍ତଳା ? କିନ୍ତୁ ସଂସାରରେ ଗୋଟିଏ ନାମର ଅନେକ ବ୍ୟକ୍ତି ଥାଆନ୍ତି । ଏଇ ନାମମାତ୍ର ଉଚ୍ଚାରଣ ମରୀଚିକା ଭଳି ମୋ ଦୁଃଖର କାରଣ ହେବ !

ଶିଶୁ— ମା, ଏ ମୟୂରଟି ଭରି ଭଲ । ( ଖେଳନା ନେଲା )

ପ୍ରଥମା— ( ନିରୀକ୍ଷଣ କରି ଉଦ୍‌ବେଗରେ ) ଏ କଅଣ ! ଏହାର ହାତଗଣ୍ଠିରେ ଯେ ରକ୍ଷାକବଚ ଦିଶୁ ନାହିଁ !

ରଜା— ଚିନ୍ତା କର ନାହିଁ । ସିଂହଶିଶୁ ସହିତ ଟଣା ଓଟରା କଲାବେଳେ ଏହା ହାତରୁ ଏଇଠି ପଡ଼ିଯାଇଛି । ( ଉଠାଇ ଆଣିବାକୁ ଇଚ୍ଛା କଲେ । )

उभे—मा खु एदं अवलंबिअ । ( विलोक्य ) कहं गहीदं णेण ? ( मा खल्विदमवलम्ब्य । ( विलोक्य ) कथं गृहीतमनेन ! )

( विस्मयादुरोनिहितहस्ते परस्परमवलोकयतः )

राजा—किमर्थं प्रतिषिद्धाः स्मः ?

प्रथ—सुणादु महाभाओ । एसा अवराजिदा णाम ओसही इमस्स जातकम्मसमए भअवदा मारीएण दिण्णा । एदं किल मादापिदरो अप्पाणं च वज्जिअ अवरो भूमिपडिदं ण गेण्हादि । ( शृणोतु महाराजः । एषा अपराजिता नाम ओषधिः अस्य जातकर्मसमये भगवता मारीचेन दत्ता । एतां किल मातापितरौ, आत्मानं च वर्जयित्वा अपरो भूमिपतितां न गृह्णाति । )

राजा—अथ गृह्णाति ?

प्रथ—तदो तं सप्पो भविअ दंसइ । ( ततस्तं सर्पो भूत्वा दशति । )

राजा—भवतीभ्यां कदाचिदस्याः प्रत्यक्षीकृता विक्रिया ?

उभे—अणेअसो । ( अनेकशः । )

राजा—( सहर्षम्, आत्मगतम् ) कथमिव संपूर्णमपि मे मनोरथं नाभिनन्दामि ? ( बालं परिष्वजते )

द्वितीं—सुव्वदे ! एहि, इमं वुत्तंतं णिअमव्वावुडाए सउंदलाए णिवेदेम्ह । ( सुव्रते ! एहि, इमं वृत्तान्तं नियमव्यापृतायै शकुन्तलायै निवेदयावः । ( निष्क्रान्ते )

बालः—मुंच मं । जाव अज्जुएसआसं गमिस्शं । ( मुञ्च माम् । यावन्मातुः सकाशं गमिष्यामि । )

राजा—पुत्रक ! मया सहैव मातरमभिनन्दिष्यसि ।

बालः—ण क्खु तुमं, दुश्शन्ते मम तादे । ( न खलु त्वम्, दुष्यन्तो मम तातः । )

राजा—( सस्मितम् ) एष विवाद एव प्रत्याययति ।

ଉଭୟେ–ଛୁଅନ୍ତୁ ନାହିଁ ! ଛୁଅନ୍ତୁ ନାହିଁ ! ( ରାଜା କିନ୍ତୁ ଉଠାଇ ନେଲେ ) ଆରେ ! ଉଠାଇ ନେଲେ ତ ! ( ଉଭୟେ ଆଶ୍ଚର୍ଯ୍ୟରେ ଛାତି ଉପରେ ହାତ ରଖି ପରସ୍ପରକୁ ଚାହିଁଲେ । )

ରଜା– ମୋତେ କାହିଁକି ନିଷେଧ କଲେ ?

ପ୍ରଥମା– ଶୁଣନ୍ତୁ, ଭଗବାନ୍ କଶ୍ୟପ ଏହି ଅପରାଜିତା ନାମକ ଔଷଧକୁ ଏହାର ଜାତକର୍ମ ସମୟରେ ଦେଇଛନ୍ତି । ଏ ଔଷଧ ଯଦି ତଳେ ପଡ଼ିଯାଏ, ତେବେ ତିନିଜଣଙ୍କ ଛଡା ଅନ୍ୟ କେହି ଏହାକୁ ତଳୁ ଉଠାନ୍ତି ନାହିଁ । ସେ ତିନିଜଣ ହେଉଛନ୍ତି— ଏ ଶିଶୁ ନିଜେ ଏବଂ ଏହାର ପିତାମାତା ।

ରଜା– ଯଦି ଆଉ କେହି ଉଠାନ୍ତି ?

ପ୍ରଥମା-- ତା'ହେଲେ ଏହି ଔଷଧ ସାପ ହୋଇ ତାକୁ ଦଂଶନ କରେ ।

ରଜା-- ଆପଣମାନେ କେବେ କ'ଣ ଏହି ପରିବର୍ତ୍ତନ ଦେଖିଛନ୍ତି ?

ଉଭୟେ–ବହୁବାର ।

ରଜା - ( ଆନନ୍ଦରେ ସ୍ୱଗତ ) ବର୍ତ୍ତମାନ ମୋର ପୂର୍ଣ୍ଣ ମନୋରଥକୁ କାହିଁକି ଅଭିନନ୍ଦିତ ନ କରିବି ? ( ଶିଶୁକୁ ଆଲିଙ୍ଗନ କଲେ )

ଦ୍ୱିତୀୟା--ସୁବ୍ରତା, ଆସ, ଦୁଃଖିନୀ ଶକୁନ୍ତଳାଙ୍କୁ ଏ ଖବର ଜଣାଇ ଦେବା ।

( ଦୁହିଁଙ୍କର ପ୍ରସ୍ଥାନ )

ଶିଶୁ - ମୋତେ ଛାଡ଼ । ମୁଁ ମୋ ମାଆଙ୍କ ପାଖକୁ ଯିବି ।

ରାଜା-- ପୁତ୍ର, ମୋ ସହିତ ଯାଇ ମାଆଙ୍କୁ ଅଭିନନ୍ଦିତ କରିବୁ ।

ଶିଶୁ– ମୋ ପିତା ଦୁଷ୍ୟନ୍ତ । ତୁମେ ନୁହଁ ।

ରାଜା-- ( ସ୍ମିତ ହାସ୍ୟରେ ) ଏହି ନିଷେଧ ହିଁ ମୋର ବିଶ୍ୱାସ ଜନ୍ମାଉଛି ।

( ततः प्रविशत्येकवेणीधरा शकुन्तला )

शकु—विआरकाले वि पकिदित्थं सव्वदमणस्स ओसहिं सुणिअ ण मे आसा अत्तणो भाअहेएसु । अहवा जह साणुमदीए आचक्खिदं तह संभावीअदि एदं । ( विकारकालेऽपि प्रकृतिस्थां सर्वदमनस्यौषधिं श्रुत्वा न मे आशा आत्मनो भागधेयेषु । अथवा यथा सानुमत्या आख्यातं तथा संभाव्यत एतत् । )

( परिक्रामति )

राजा—( शकुन्तलां विलोक्य ) अये ! ( सहर्षखेदम् ) सेयम् अत्रभवती शकुन्तला, यैषा—

वसने परिधूसरे वसाना
नियमक्षाममुखी धृतैकवेणिः ।
अतिनिष्करुणस्य शुद्धशीला
मम दीर्घं विरहव्रतं बिभर्ति ॥ २१ ॥

शकु—( पश्चात्तापविवर्णं राजानं दृष्ट्वा सवितर्कं ) ण खु अज्जउत्तो विअ । तदो को एसो दाणिं किदरक्खामंगलं दारअं मे गत्तसंसग्गेण दूसेदि । ( न खल्वार्यपुत्र इव । ततः क एष इदानीं कृतरक्षामङ्गलं दारकं मे गात्रसंसर्गेण दूषयति ? )

बालः—( मातरमुपेत्य ) अज्जुए ! एश के वि पलिशे मं पुत्तके त्ति आलिंगदि । ( मातः ! एष कोऽपि पुरुषो मां पुत्र इत्यालिङ्गति । )

राजा—प्रिये ! क्रौर्यमपि मे त्वयि प्रयुक्तम् अनुकूलपरिणामं संवृत्तम् । तदहमिदानीं त्वया प्रत्यभिज्ञातमात्मानम् इच्छामि ।

शकु—( आत्मगतम् ) हिअअ ! अस्सस । परिच्चत्तमच्छरेण अणुअंपिअ म्हि देव्वेण । अज्जउत्तो खु एसो । ( हृदय ! आश्वसिहि आश्वसिहि । परित्यक्तमत्सरेण अनुकम्पितास्मि दैवेन । आर्यपुत्रः खल्वेषः । )

राजा—प्रिये !

स्मृतिभिन्नमोहतमसो दिष्ट्या प्रमुखे स्थितासि मे सुमुखि !
उपरागान्ते शशिनः समुपगता रोहिणी योगम् ॥ २२ ॥

( ତାହାପରେ ଏକବେଣୀଧାରିଣୀ ଶକୁନ୍ତଳାଙ୍କର ପ୍ରବେଶ ।

ଶକୁ— ଶୁଣିଲି, ସର୍ବଦମନର ଔଷଧକୁ ଅନ୍ୟ କେହି ସ୍ପର୍ଶ କରିଥିଲେ ମଧ୍ୟ ତାହା ଅବିକୃତ ଅଛି । ତଥାପି ଭାଗ୍ୟ ଫେରିବ ବୋଲି ମୁଁ ଆଶା କରି ପାରୁନାହିଁ । ଅବା ସାନୁମତୀ କହିବା ଅନୁସାରେ ସମ୍ଭବ ହୋଇପାରେ ।

ରାଜା— (ଶକୁନ୍ତଳାଙ୍କୁ ଦେଖି ଆନନ୍ଦ ବିଷାଦରେ) ଆରେ ! ଏ ତ ଶକୁନ୍ତଳା ! ଦୁଃଖିନୀ ମଳିନବସ୍ତ୍ର ଦିଖଣ୍ଡି ପିନ୍ଧିଛି । ବ୍ରତ ପାଳନ କରି ଏହାର ମୁଖଟି ଶୁଖି ଯାଇଛି । ଆହା ! ଏ ପୁଣ୍ୟଶୀଳା ଗୋଟିଏ ବେଣୀ ଧାରଣ କରି ଦୀର୍ଘକାଳ ହେଲା ମୋ ପରି ନିଷ୍ଠୁର ବ୍ୟକ୍ତିର ବିରହରେ ବିରହବ୍ରତ ପାଳନ କରୁଛି । ୨୧

ଶକୁ— ( ପଶ୍ଚାତ୍ତାପରେ ବିବର୍ଣ୍ଣ ଦିଶୁଥିବା ରାଜାଙ୍କ ଆଡ଼କୁ ଗ୍ରହିଁ ) ଏ ତ ଆର୍ଯ୍ୟପୁତ୍ର ନୁହଁନ୍ତି ! ତେବେ ଏ କିଏ ରକ୍ଷାକବଚ ପିନ୍ଧିଥିବା ମୋର ପୁତ୍ରକୁ ସ୍ପର୍ଶ କରି ଅପବିତ୍ର କରୁଛନ୍ତି ?

ଶିଶୁ— (ମା'ଙ୍କ ପାଖକୁ ଯାଇ) ମା, ଏ କିଏ ? ମୋତେ ପୁଅ ବୋଲି କହି ଆଲିଙ୍ଗନ କରୁଛନ୍ତି ?

ରାଜା— ପ୍ରିୟେ, ତୁମ ପ୍ରତି ମୁଁ ନିଷ୍ଠୁର ଆଚରଣ କରିଥିଲେ ମଧ୍ୟ ତାହାର ଅନୁକୂଳ ପରିଣାମ ଘଟିଛି । କାରଣ, ମୁଁ ଗ୍ରହୁଁଛି, ବର୍ତ୍ତମାନ ତୁମେ ମୋତେ ଚିହ୍ନି ପାରନ୍ତ କି !

ଶକୁ— ( ସ୍ୱଗତ ) ହୃଦୟ, ଆଶ୍ୱସ୍ତ ହୁଅ । ଆ ଜିବିଧାତା ଶତ୍ରୁତା ଛାଡ଼ି ମୋ ପ୍ରତି ସଦୟ ହୋଇଛନ୍ତି । ଏ ନିଶ୍ଚୟ ଆର୍ଯ୍ୟପୁତ୍ର ।

ରାଜା— ପ୍ରିୟେ, ଚନ୍ଦ୍ରଗ୍ରହଣ ପରେ ରୋହିଣୀ ଯେପରି ଚନ୍ଦ୍ର ସହିତ ମିଳିତା ହୁଏ, ସେହିପରି ସୌଭାଗ୍ୟ ବଶତଃ ମୋର ସ୍ମୃତିରୁ ଅନ୍ଧକାର ପରଦା ଅପସରି ଯାଇଛି ଏବଂ ତୁମେ ଆଜି ମୋ ସମ୍ମୁଖରେ ଉପସ୍ଥିତା । ୨୨

शकु—जेदु अज्जउत्तो जे। ( जयतु आर्यपुत्रो ज...... )

( अर्धोक्ते वाष्पकण्ठी विरमति )

राजा—प्रिये !

बाष्पेण प्रतिषिद्धेऽपि जयशब्दे जितं मया।
यत् ते दृष्टमसंस्कारपाटलोष्ठपुटं मुखम् ॥ २३ ॥

बालः—अग्गुए ! के एशे ? ( मातः क एषः ? )

शकु—वच्छ ! दे भाअधेआइं पुच्छ। (वत्स ! ते भागधेयानि पृच्छ।)

( रोदिति )

राजा—( शकुन्तलायाः पादयोः प्रणिपत्य )

सुतनु ! हृदयात् प्रत्यादेशव्यलीकमपैतु ते
किमपि मनसः संमोहो मे तदा बलवानभूत्।
प्रबलतमसामेवंप्रायाः शुभेषु हि वृत्तयः
स्रजमपि शिरस्यन्धः क्षिप्तां धुनोत्यहिशङ्कया ॥ २४ ॥

शकु—उट्ठेदु अज्जउत्तो। णूणं मे सुअरिअप्पडिबंधअं पुराकिदं तेसु दिअहेसु परिणाममुहं आसि जेण साणुक्कोसो वि अज्जउत्तो मइ तधा संवुत्तो। ( उत्तिष्ठत्वार्यपुत्रः। नूनं मे सुचरितप्रतिबन्धकं पुराकृतं तेषु दिवसेषु परिणाममुखमासीत्, येन सानुक्रोशोऽप्यार्यपुत्रो मयि तथा संवृत्तः। )

( राजोत्तिष्ठति )

शकु—अह कहं अज्जउत्तेण सुमरिदो दुक्खभाई अअं जणो ?
( अथ कथमार्यपुत्रेण स्मृतो दुःखभागी अयं जनः ? )

राजा—उद्धृतविषादशल्यः कथयिष्यामि।

मोहान्मया सुतनु ! पूर्वमुपेक्षितस्ते
यो बाष्पबिन्दुरधरं परिबाधमानः।
तं तावदाकुटिलपक्ष्मविलग्नमद्य
कान्ते प्रमृज्य विगतानुशयो भवेयम् ॥ २५ ॥

( यथोक्तमनुतिष्ठति )

ଶକ - ଆର୍ଯ୍ୟପୁତ୍ରଙ୍କର ଜୟ ହେଉ । ( କହୁଁ କହୁଁ ବାଷ୍ପରୁଦ୍ଧ କଣ୍ଠରେ ଅଟକିଗଲେ । )

ରାଜା-- ପ୍ରିୟେ, କଣ୍ଠରୋଧ ହେତୁ ତୁମର ଜୟ ଶବ୍ଦ ଅପୂର୍ଣ୍ଣ ରହିଗଲା । ତଥାପି ମୁଁ ଜୟୀ । କାରଣ, ରଞ୍ଜନ ଅଭାବରେ ମଧ୍ୟ ସ୍ୱଭାବତଃ ଲୋହିତ ବର୍ଣ୍ଣ ଅଧର ଦ୍ୱାରା ଶୋଭା ପାଉଥିବା ତୁମର ମୁଖଟି ମୁଁ ଦର୍ଶନ କରିବାକୁ ପାଇଲି । ୨୩

ଶିଶୁ– ମା, ଏ କିଏ ?

ଶକୁ-- ପୁଅ, ତୋ ଭାଗ୍ୟକୁ ପଚାର । ( କାନ୍ଦିଲେ )

ରାଜା-- ( ଶକୁନ୍ତଳାଙ୍କ ପାଦ ତଳେ ପଡ଼ି ) ଗୋ ଶୋଭନେ, ତୁମେ ହୃଦୟରୁ ପ୍ରତ୍ୟାଖ୍ୟାନଦୁଃଖ ଦୂର କର । ସେତେବେଳେ ମୋ ମନରେ କିପରି ଏକ ବିରାଟ ଭ୍ରମ ଘୋଟି ରହିଥିଲା । ମୋହାଚ୍ଛନ୍ନ ବ୍ୟକ୍ତିମାନେ ଶୁଭ ବିଷୟରେ ମଧ୍ୟ ଏଇଭଳି ଆଚରଣ କରିଥାଆନ୍ତି । ଅନ୍ଧର ମସ୍ତକରେ ଫୁଲମାଳ ରଖିଲେ ସେ ତାକୁ ସର୍ପ ଆଶଙ୍କାରେ ଫିଙ୍ଗି-ଦିଏ । ୨୪

ଶକୁ - ଆର୍ଯ୍ୟପୁତ୍ର, ଉଠନ୍ତୁ । ପୂର୍ବଜନ୍ମରେ ମୁଁ ବୋଧହୁଏ କୌଣସି ଅଶୁଭ କର୍ମ କରିଥିଲି । ତାହାର ଫଳ ପ୍ରତ୍ୟାଖ୍ୟାନବେଳେ ମୋତେ ମିଳିବାକ ଥିଲା । ସେହି ହେତୁରୁ ଆପଣ ଦୟାଳୁ ହେଲେ ମଧ୍ୟ 'ମୋ ପ୍ରତି ବିମୁଖ ହୋଇଥିଲେ ।

( ରାଜା ଉଠିଲେ )

ଶକୁ - ଆର୍ଯ୍ୟପୁତ୍ର, ଏ ଦୁଃଖିନୀକୁ ପୁଣି କିପରି ସ୍ମରଣ କଲେ ?

ରାଜା-- ହୃଦୟରୁ ବିଷାଦ-କଣ୍ଟକ ବାହାର କରି ସାରି କହିବି । ପ୍ରିୟେ, ତୁମର ଯେଉଁ ଅଶ୍ରୁବିନ୍ଦୁ ଅଧର ଉପରେ ପଡ଼ି ଅଧରକୁ ପୀଡ଼ା ଦେଇଥିଲା ଏବଂ ଯାହାକୁ ମୁଁ ପୂର୍ବେ ଭ୍ରମ ବଶତଃ ଉପେକ୍ଷା କରିଥିଲି, ସେହି ଅଶ୍ରୁ ଆଜି ମଧ୍ୟ ତୁମର ଈଷତ୍ କୁଟିଳ ଚକ୍ଷୁଲୋମ ମଧ୍ୟରେ ଲାଗି ରହିଛି । ତାହାକୁ ପୋଛି ଦେଇ ମୁଁ ହୃଦୟର ଅନୁତାପ ଦୂର କରିବି । ୨୫ (ଶକୁନ୍ତଳାଙ୍କର ଚକ୍ଷୁରୁ ଅଶ୍ରୁ ପୋଛି ଦେଲେ)

शकु—(नाममुद्रां दृष्ट्वा) अज्जउत्त ! एदं तं अंगुलीअअं। (आर्यपुत्र ! इदं तत् अङ्गुलीयकम् । )

राजा—अस्मादङ्गुलीयकात् खलु स्मृतिरुपलब्धा ।

शकु—विसमं किदं णेण जं तदा अज्जउत्तस्स पच्चअकाले दुल्लहं आसि। (विषमं कृतमनेन यत् तदार्यपुत्रस्य प्रत्ययकाले दुर्लभमासीत् ।)

राजा—तेन हि ऋतुसमवायचिह्नं प्रतिपद्यतां लता कुसुमम् ।

शकु—ण से विस्ससामि। अज्जउत्तो एव्व णं धारेदु। (नास्य विश्वसिमि। आर्यपुत्र एवैतद् धारयतु।)

(ततः प्रविशति मातलिः)

मात—दिष्ट्या धर्मपत्नीसमागमेन पुत्रमुखदर्शनेन चायुष्मान् वर्धते ।

राजा—सुहृत्संपादित इति स्वादुतरफलो मे मनोरथः। मातले ! न खलु विदितोऽयमाखण्डलेन वृत्तान्तः ?

मात—( सस्मितम् ) किमीश्वराणां परोक्षम् ? एत्वायुष्मान् ; भगवान् मारीचस्ते दर्शनं वितरति ।

राजा—अवलम्ब्यतां पुत्रः। त्वां पुरस्कृत्य भगवन्तं द्रष्टुमिच्छामि ।

शकु—हिरिआमि अज्जउत्तेण सह गुरुसमीवं गंतुं। (जिह्रेम्यार्यपुत्रेण सह गुरुसमीपे गन्तुम् ।)

राजा—अयि ! आचरितव्यमेतदभ्युदयकालेषु । एह्येहि ।

(सर्वे परिक्रामन्ति)

(ततः प्रविशत्यदित्या सार्धमासनस्थो मारीचः)

ଶକୁ— ( ନାମାଙ୍କିତ ମୁଦ୍ରିକୁ ଦେଖି ) ଆର୍ଯ୍ୟପୁତ୍ର, ଏ ତ ସେହି ମୁଦି !

ରଜା— ମୁଦି ମିଳିବା ହେତୁ ମୁଁ ତୁମକୁ ସ୍ମରଣ କରିପାରିଲି ।

ଶକୁ— ଏ ମୁଦି ଅତ୍ୟନ୍ତ ଅନିଷ୍ଟ କରିଛି । ମୁଁ ଯେତେବେଳେ ଆର୍ଯ୍ୟପୁତ୍ରଙ୍କର ବିଶ୍ୱାସ ଜନ୍ମାଇବାକୁ ଚାହିଁଥିଲି, ସେତେବେଳେ ଏ ମିଳିଲା ନାହିଁ ।

ରଜା— ତାହାହେଲେ ବର୍ତ୍ତମାନ ଲତା ବସନ୍ତ ସହିତ ମିଳିତ ହେବାର ପୁଷ୍ପ-ଚିହ୍ନ ଧାରଣ କରୁ ।

ଶକୁ— ନା, ମୋର ଏହାକୁ ବିଶ୍ୱାସ ନାହିଁ । ଆପଣ ପିନ୍ଧିଥାଆନ୍ତୁ ।

( ମାତଳିଙ୍କର ପ୍ରବେଶ )

ମାତଳି— ଆୟୁଷ୍ମାନ୍ ! ସୌଭାଗ୍ୟକ୍ରମେ ଧର୍ମପତ୍ନୀ ସହିତ ମିଳନ ଏବଂ ପୁତ୍ରମୁଖ-ଦର୍ଶନ ଦ୍ୱାରା ଆପଣଙ୍କର ଅଭ୍ୟୁଦୟ ଘଟିଛି ।

ରାଜା— ସୁହୃଦଙ୍କ ଦ୍ୱାରା ସମ୍ପାଦିତ ହୋଇଥିବାରୁ ମୋ ଅଭିଳାଷର ଫଳ ମଧୁରତର ହୋଇଛି । ମାତଳି,ବୋଧହୁଏ ଇନ୍ଦ୍ର ଏ ସମ୍ବାଦ ଜାଣି ନ ଥିବେ ।

ମାତଳି— ( ମୃଦୁ ହାସ୍ୟରେ ) ପ୍ରଭୁମାନଙ୍କୁ ଅଗୋଚର କଅଣ ? ଆସନ୍ତୁ, ଭଗବାନ୍ କଶ୍ୟପ ଆପଣଙ୍କୁ ଦର୍ଶନ ଦାନ କରିବେ ।

ରାଜା— ଶକୁନ୍ତଳା,ପୁତ୍ରକୁ ଧର । ତୁମକୁ ସଙ୍ଗରେ ନେଇ ମୁଁ କଶ୍ୟପଙ୍କର ଦର୍ଶନ କରିବାକୁ ଯିବି ।

ଶକୁ— ଆର୍ଯ୍ୟପୁତ୍ରଙ୍କ ସଙ୍ଗରେ ଗୁରୁଙ୍କ ନିକଟକୁ ଯିବାକୁ ମୋତେ ଲଜ୍ଜା ବୋଧ ହେଉଛି ।

ରାଜା— ପ୍ରିୟେ, ଶୁଭ ସମୟରେ ଏପରି ଆଚରଣ ଉଚିତ । ଆସ ।
( ସମସ୍ତେ ଗଲିଲେ । ତାହାପରେ ଅଦିତିଙ୍କ ସହିତ ଆସନରେ ଉପବିଷ୍ଟ କଶ୍ୟପଙ୍କର ପ୍ରବେଶ )

मारी—( राजानमवलोक्य ) दाक्षायणि !

पुत्रस्य ते रणशिरस्ययमग्रयायी
दुष्यन्त इत्यभिहितो भुवनस्य भर्ता ।
चापेन यस्य विनिवर्तितकर्म जातं
तत् कोटिमत् कुलिशमाभरणं मघोनः ॥ २६ ॥

अदि—संभावणीआणुभावा से आकिदी । ( संभावनीयानुभावा अस्याकृतिः । )

मात—आयुष्मन् ! एतौ पुत्रप्रीतिपिशुनेन चक्षुषा दिवौकसां पितरावायुष्मन्तमवलोकयतः । तदुपसर्प ।

राजा—मातले !

प्राहुर्द्वादशधा स्थितस्य मुनयो यत् तेजसः कारणं
भर्तारं भुवनत्रयस्य सुषुवे यद् यज्ञभागेश्वरम् ।
यस्मिन्नात्मभवः परोऽपि पुरुषश्चक्रे भवायास्पदं
द्वन्द्वं दक्षमरीचिसंभवमिदं तत्स्रष्टुरेकान्तरम् ॥ २७ ॥

मात—अथ किम् ?

राजा—( उपगम्य ) उभाभ्यामहं वासवनियोज्यो दुष्यन्तः प्रणमति ।

मारी—वत्स ! चिरं जीव, पृथिवीं पालय ।

अदि—वच्छ ! अप्पडिरहो होहि । ( वत्स ! अप्रतिरथो भव । )

शकु—दारअसहिदा वो पादवंदणं करेमि । ( दारकसहिता वां पादवन्दनं करोमि । ) ( पुत्रसहिता प्रणिपतति )

मारी—वत्से !

आखण्डलसमो भर्ता जयन्तप्रतिमः सुतः ।
आशीरन्या न ते योग्या पौलोमीसदृशी भव ॥ २८ ॥

अदि—जादे ! भत्तुणो अभिमदा होहि । अवस्सं दीहाऊ वच्छओ उहअकुलणंदणो होदु । उवविसह । (जाते ! भर्तुरभिमता भव । अवश्य दीर्घायुर्वत्सकः उभयकुलनन्दनो भवतु । उपविशत । )

( सर्वे प्रजापतिमभित उपविशन्ति )

କଶ୍ୟପ— ( ରାଜାଙ୍କ ଆଡକୁ ଚାହିଁ ) ଅଦିତି,
ଏ ହେଉଛନ୍ତି ପୃଥିବୀପାଳକ ଦୁଷ୍ୟନ୍ତ, ଯେ କି ଯୁଦ୍ଧରେ ତୁମ ପୁତ୍ର ଇନ୍ଦ୍ରଙ୍କ ଆଗରେ ଯାତ୍ରା କରନ୍ତି । ଏହାଙ୍କର ଧନୁ ଯୋଗୁ ତୀକ୍ଷ୍ଣ ବଜ୍ରର ଆଉ କିଛି କାର୍ଯ୍ୟ ନାହିଁ । ତାହା ବର୍ତ୍ତମାନ ଇନ୍ଦ୍ରଙ୍କର କେବଳ ଭୂଷଣ ସ୍ୱରୂପ ରହିଛି । ୨୬

ଅଦିତି— ଏହାଙ୍କ ଆକୃତିରୁ ହିଁ ସେଭଳି ତେଜ ଜଣା ପଡୁଛି ।

ମାତଳି— ଆୟୁଷ୍ମାନ୍, ଦେବତାମାନଙ୍କର ମାତାପିତା ସ୍ନେହର ସହିତ ପୁତ୍ର ଦୃଷ୍ଟିରେ ଆପଣଙ୍କୁ ଚାହିଁ ରହିଛନ୍ତି । ଆପଣ ତାଙ୍କ ନିକଟକୁ ଯାଆନ୍ତୁ ।

ରାଜା-- ମାତଳି,
ଯେଉଁ ଦୁଇ ଜଣଙ୍କୁ ମୁନିମାନେ ଦ୍ୱାଦଶ ସୂର୍ଯ୍ୟଙ୍କର ପିତାମାତା ବୋଲି କହନ୍ତି, ତ୍ରିଭୁବନର ପାଳକ ଏବଂ ଯଜ୍ଞଭଗର ଅଧିକାରୀ ଦେବରାଜ ଇନ୍ଦ୍ର ଯାହାଙ୍କର ପୁତ୍ର ଅଟନ୍ତି, ସ୍ୱୟମ୍ଭୁ ବିଷ୍ଣୁ ଅବତାର ଗ୍ରହଣ ନିମନ୍ତେ ଯାହାଂକର ଆଶ୍ରୟ ନିଅନ୍ତି, ଯେ ଦକ୍ଷ ଓ ମରୀଚିଂକଠାରୁ ଜନ୍ମ ଗ୍ରହଣ କରିଛନ୍ତି ଏବଂ ବ୍ରହ୍ମାଂକର ଏକ ପୁରୁଷ ପରବର୍ତ୍ତୀ ଅଟନ୍ତି ଏ ଦମ୍ପତି କଅଣ ସେହି ଦୁଇ ଜଣ ?

ମାତଳି-- ହଁ ।

ରାଜା-- ( ନିକଟକୁ ଯାଇ ) ଆପଣ ଦୁହିଁଙ୍କୁ ମୁଁ ଇନ୍ଦ୍ରଂକର ଭୃତ୍ୟ ଦୁଷ୍ୟନ୍ତ ପ୍ରଣାମ କରୁଛି ।

କଶ୍ୟପ-- ବତ୍ସ, ଚିରଞ୍ଜୀବୀ ହୋଇ ପୃଥିବୀ ପାଳନ କର ।

ଅଦିତି-- ବତ୍ସ, ଅପ୍ରତିଦ୍ୱନ୍ଦ୍ୱୀ ବୀର ହୁଅ ।

ଶକୁ - ପୁତ୍ର ସହିତ ମୁଁ ଆପଣ ଦୁହିଂକର ପଦବନ୍ଦନା କରୁଛି ।

କଶ୍ୟପ-- ବତ୍ସେ, ତୁମର ସ୍ୱାମୀ ଇନ୍ଦ୍ରସମାନ, ପୁତ୍ର ଜୟନ୍ତ ସମାନ । ଅନ୍ୟ ଆଶୀର୍ବାଦ ତୁମ ପକ୍ଷରେ ଅନୁରୂପ ହେବ ନାହିଁ । ତୁମେ ଇନ୍ଦ୍ରଂକର ପତ୍ନୀ ଶଚି ସହିତ ସମାନ ହୁଅ ।

ଅଦିତି--- ବତ୍ସେ, ସ୍ୱାମୀଂକର ପ୍ରିୟତମା ହୁଅ । ତୁମର ପୁତ୍ର ଦୀର୍ଘାୟୁ ହୋଇ ଦୁଇ କୁଳକୁ ଆନନ୍ଦ ଦାନ କରୁ ।

( ସମସ୍ତେ କଶ୍ୟପଂକ ସମ୍ମୁଖରେ ବସିଲେ )

मारी—( एकैकं निर्दिशन् )

दिष्ट्या शकुन्तला साध्वी सदपत्यमिदं भवान् ।
श्रद्धा वित्तं विधिश्चेति त्रितयं तत् समागतम् ॥ २९ ॥

राजा—भगवन् ! प्रागभिप्रेतसिद्धिः, पश्चाद्दर्शनम् । अपूर्वः खलु वोऽनुग्रहः ।

उदेति पूर्वं कुसुमं ततः फलं
घनोदयः प्राक् तदनन्तरं पयः ।
निमित्तनैमित्तिकयोरयं क्रमः
तव प्रसादस्य पुरस्तु सिद्धयः ॥ ३० ॥

मात—एवं विधातारः प्रसीदन्ति ।

राजा—भगवन् ! इमामाज्ञाकरीं वो गान्धर्वेण विवाहविधिना उपयम्य कस्यचित् कालस्य बन्धुभिरानीतां स्मृतिशैथिल्यात् प्रत्यादिशन्नपराद्धोऽस्मि तत्रभवतो युष्मत्सगोत्रस्य कण्वस्य । पश्चादङ्गुलीयकदर्शनादूढपूर्वामिमां तद्दुहितरमवगतोऽहम् । तत् , चित्रमिव मे प्रतिभाति ।

यथा गजो नेति समक्षरूपे
तस्मिन्नपक्रामति संशयः स्यात् ।
पदानि दृष्ट्वा तु भवेत् प्रतीति-
स्तथाविधो मे मनसो विकारः ॥ ३१ ॥

मारी—वत्स ! अलमात्मापराधशङ्कया । संमोहोऽपि त्वय्यनुपपन्नः । श्रूयताम् ।

राजा—अवहितोऽस्मि ।

କଶ୍ୟପ– ( ଜଣ ଜଣଙ୍କୁ ଦେଖାଇ ଦେଇ ) ଏ ସାଧ୍ୱୀ ଶକୁନ୍ତଳା, ଏ ସତ୍ ପୁତ୍ର ଏବଂ ଆପଣ ( ଦୁଷ୍ୟନ୍ତ ), ତିନି ଜଣ ସୌଭଗ୍ୟକ୍ରମେ ଶ୍ରଦ୍ଧା, ଧର୍ନ ଏବଂ ଧର୍ମ ପରି ମିଳିତ ହୋଇଛ । ୨୯

ରାଜା– ଭଗବାନ୍, ଆଗହୁଁ ମନୋରଥ ପୂର୍ଣ୍ଣ ହେଲା, ପରେ ଆପଣଙ୍କ ଦର୍ଶନ ମିଳିଲା । ଏଣୁ ଆପଣଙ୍କର ଅନୁଗ୍ରହ ଅପୂର୍ବ । କାରଣ—

ପ୍ରଥମେ ଫୁଲ ଫୁଟେ, ତା' ପରେ ଫଳ ଧରେ । ପ୍ରଥମେ ମେଘ ଉଠେ, ତା' ପରେ ଜଳ ବରଷେ । ସଂସାରରେ କାରଣ ଓ କାର୍ଯ୍ୟର ଏହିପରି କ୍ରମ ଥାଏ । କିନ୍ତୁ ଆପଣଙ୍କର ଦର୍ଶନ ମିଳିବା ଆଗରୁ ଫଳ ମିଳିଥାଏ । ୩୦

ମାତଳି– ବିଧାତାମାନଙ୍କର କୃପା ଏହିଭଳି ।

ରାଜା– ଭଗବାନ୍; ମୁଁ ପ୍ରଥମେ ଆପଣଙ୍କର ଏହି ଆଜ୍ଞାଧୀନା ଶକୁନ୍ତଳାଙ୍କୁ ଗାନ୍ଧର୍ବ ବିଧିରେ ବିବାହ କରିଥିଲି । କିଛି ଦିନ ପରେ ଏହାଙ୍କର ଆତ୍ମୀୟ ସ୍ୱଜନମାନେ ଏହାଙ୍କୁ ମୋ ନିକଟକୁ ଆଣିଥିଲେ । ସେତେବେଳେ ବିସ୍ମରଣ ହେତୁ ମୁଁ ଏହାଙ୍କୁ ପ୍ରତ୍ୟାଖ୍ୟାନ କରିଥିଲି । ତେଣୁ ଆପଣଙ୍କର ସଗୋତ୍ର ମହର୍ଷି କଣ୍ୱଙ୍କ ନିକଟରେ ମୁଁ ଅପରାଧୀ । କିନ୍ତୁ ପରେ ମୁଦି ଦେଖି ଜାଣି ପାରିଲି ଯେ, ଏହାଙ୍କ ସହିତ ମୋର ବିବାହ ହୋଇଛି । ଏ ସମସ୍ତ ମୋତେ ଆଶ୍ଚର୍ଯ୍ୟ ଜଣାପଡୁଛି ।

ସମ୍ମୁଖରେ ହସ୍ତୀ ଯାଉଥିଲେ ମଧ୍ୟ ତାକୁ ହସ୍ତୀ ବୋଲି ଜାଣି-ନ ପାରିବା, ସେ ଚାଲିଗଲା ପରେ 'ହସ୍ତୀ ଆସିଥିଲା କି ?' ଏପରି ସନ୍ଦେହ କରିବା, ଏବଂ ତାହାପରେ, ତା'ର ପଦଚିହ୍ନ ଦେଖି ପ୍ରକୃତରେ ହସ୍ତୀ ବୋଲି ଜାଣି ପାରିବା, ଏ ସମସ୍ତ ଯେପରି ଅଦ୍‌ଭୁତ, ମୋ ମନର ଅବସ୍ଥା ସେହିଭଳି ହୋଇଛି । ୩୧

କଶ୍ୟପ– ବତ୍ସ, ତୁମେ ଜାଣିଶୁଣି ଅପରାଧ କରିଛ ବୋଲି ଭବନାହିଁ । ବିସ୍ମରଣ ତୁମ ପକ୍ଷରେ ଅବଶ୍ୟମ୍ଭାବୀ ଥିଲା । ତାହାର କାରଣ ଶୁଣ —

ରାଜା– କହନ୍ତୁ, ମନୋନିବେଶ କଲି ।

मारी—यदैवाप्सरस्तीर्थावतरणात् प्रत्याख्यानवैक्लव्यां शकुन्तलामादाय मेनका दाक्षायणीमुपगता तदैव ध्यानादवगतोऽस्मि दुर्वाससः शापादियं तपस्विनी सहधर्मचारिणी त्वया प्रत्यादिष्टा, नान्यथेति। स चायमङ्गुलीयकदर्शनावसानः।

राजा—( सोच्छ्वासम् ) एष वचनीयान्मुक्तोऽस्मि।

शकु—( आत्मगतम् ) दिट्ठिआ अकारणपच्चादेसी ण अज्जउत्तो। ण हु सत्तं अत्ताणं सुमरेमि। अहवा पत्तो मए स हि सावो विरहसुण्णहिअआए ण विदिदो। अदो सहीहिं संदिट्ठम्हि भत्तुणो अगुलीअअं दसइदव्वं त्ति। (दिष्ट्या अकारणप्रत्यादेशी नार्यपुत्रः। न खलु शप्तमात्मानं स्मरामि। अथवा प्राप्तो मया स हि शापो विरहशून्यहृदयया न विदितः। अतः सखीभ्यां संदिष्टास्मि भर्तुः अङ्गुलीयकं दर्शयितव्यमिति।)

मारी—वत्से ! विदितार्थासि। तदिदानीं सहधर्मचारिणं प्रति न त्वया मन्युः कार्यः। पश्य—

शापादसि प्रतिहता स्मृतिरोध रूक्षे
भर्तर्यपेततमसि प्रभुता तवैव।
छाया न मूर्च्छति मलोपहतप्रसादे
शुद्धे तु दर्पणतले सुलभावकाशा ॥ ३२ ॥

राजा—यथाह भगवान्।

मारी—वत्स ! कच्चिदभिनन्दितस्त्वया विधिवदस्माभिरनुष्ठितजातकर्मादिक्रियः पुत्र एष शाकुन्तलेयः ?

କଶ୍ୟପ— ଯେତେବେଳେ ମେନକା ଅପ୍‌ସର-ତୀର୍ଥରୁ ଶୋକବିହ୍ୱଳା ଶକୁନ୍ତଳାକୁ ଘେନି ଅଦିତିଙ୍କ ନିକଟରେ ପହଞ୍ଚିଲ, ମୁଁ ଧ୍ୟାନରେ ପାରିଲି ଯେ, ଦୁର୍ବାସାଙ୍କ ଶାପ ହେତୁ ଏହି ଦୁଃଖିନୀ ଧର୍ମପତ୍ନୀଙ୍କୁ ତୁମେ ପରିତ୍ୟାଗ କରିଛ ଅନ୍ୟ କୌଣସି କାରଣରୁ ନୁହେଁ । ମୁଦି ଦେଖିବା ପରେ ସେହି ଶାପର ଅବସାନ ଘଟିଛି ।

ରଜା— ( ଦୀର୍ଘଶ୍ୱାସ ପକାଇ ) ଯାହା ହେଉ,ନିନ୍ଦାରୁ ମୁକ୍ତ ହେଲି ।

ଶକୁ— (ସ୍ୱଗତ) ଭାଗ୍ୟକୁ, ଆର୍ଯ୍ୟପୁତ୍ର ମୋତେ ବିନା କାରଣରେ ତ୍ୟାଗକରିନ ଥିଲେ । କିନ୍ତୁ ଦୁର୍ବାସାଙ୍କ ଠାରୁ ଶାପ ପାଇଥିବା କଥା ମୁଁ ତ ସ୍ମରଣ କରି ପାରୁନାହିଁ । ବୋଧହୁଏ ପ୍ରିୟତମଙ୍କ ବିଚ୍ଛେଦରେ ମୁଁ ଶୂନ୍ୟ-ହୃଦୟା ଥିଲବେଳେ ତାହା ଜାଣିପାରିନାହିଁ । ସେଇଥିପାଇଁ ସଖୀ-ମାନେ ମୋତେ କହିଥିଲେ— "ସ୍ୱାମୀଙ୍କୁ ମୁଦି ଦେଖାଇଦେବୁ ।"

କଶ୍ୟପ— ବତ୍ସେ, ତୁମେ ସମସ୍ତ ଜାଣିଲଣି । ବର୍ତ୍ତମାନ ସ୍ୱାମୀଙ୍କ ପ୍ରତି କ୍ରୋଧ କରିବା ଉଚିତ ନୁହେଁ । ଦେଖ—

ଶାପ ହେତୁ ଏହାଂକର ସ୍ମୃତି ଲୋପ ପାଇଥିଲ । ତେଣୁ ସେ ତୁମକୁ କଠୋର ଭବରେ ପରିତ୍ୟାଗ କରିଥିଲେ । ତାଂକର ସେହି ଭ୍ରମ ଅନ୍ଧକାର ଦୂର ହୋଇଛି । ତେଣୁ ଏହାଙ୍କଠାରେ ବର୍ତ୍ତମାନ ତୁମର ଅଧିକାର । ମଇଳା ଲଗି ଦର୍ପଣ ଅସ୍ୱଚ୍ଛ ହୋଇ ଥିଲେ ସେଥିରେ ପ୍ରତିବିମ୍ବ ଦେଖାଯାଏ ନାହିଁ । ମାତ୍ର ତାହା ସ୍ୱଚ୍ଛ ହୋଇଗଲେ ପ୍ରତିବିମ୍ବ ସହଜରେ ପ୍ରତିଫଳିତ ହୁଏ । ୩୨

ରାଜା— ଭଗବାନ ଠିକ୍ କହିଛନ୍ତି ।

କଶ୍ୟପ— ବତ୍ସ, ଆମେ ଶକୁନ୍ତଳାର ଏହି ପୁତ୍ରର ଜାତକର୍ମାଦି ସଂସ୍କାର ଯଥାବିଧି ସମ୍ପାଦନ କରିଛୁଁ । ତୁମେ ଏହାକୁ ଅଭିନନ୍ଦିତ କଲଣି ?

राजा—भगवन्! अत्र खलु मे वंशप्रतिष्ठा।

मारी—तथा भाविनमेनं चक्रवर्तिनमवगच्छतु भवान्। पश्य—

रथेनानुद्घातस्तिमितगतिना तीर्णजलधिः
पुरा सप्तद्वीपामवति वसुधामप्रतिरथः।
इहायं सत्त्वानां प्रसभदमनात् सर्वदमनः
पुनर्यास्यत्याख्यां भरत इति लोकस्य भरणात् ॥ ३३ ॥

राजा—भगवता कृतसंस्कारे सर्वमस्मिन्नाशास्महे।

अदि—भअवं! इमाए दुहिदुमणोरहसंपत्तीए कण्णो वि दाव सुदवित्थारो करीअदु। दुहिदुवच्छला मेणआ इह एव्व उपचरंती चिट्ठदि। (भगवन्! अनया दुहितृमनोरथसंपत्त्या कण्वोऽपि तावच्छ्रुतविस्तरः क्रियताम्। दुहितृवत्सला मेनका इहैवोपचरन्ती तिष्ठति।)

शकु—(आत्मगतम्) मणोरहो खु मे भणिदो भअवदीए। (मनोरथः खलु मे भणितो भगवत्या।)

मारी—तपःप्रभावात् प्रत्यक्षं सर्वमेव तत्रभवतः।

राजा—अतः खलु मम नातिक्रुद्धो मुनिः।

मारी—तथाप्यसौ प्रियमस्माभिः श्रावयितव्यः। कः कोऽत्र भोः?

शिष्यः—(प्रविश्य) भगवन्! अयमस्मि।

मारी—गालव! इदानीमेव विहायसा गत्वा मम वचनात् तत्रभवते कण्वाय प्रियमावेदय यथा—'पुत्रवती शकुन्तला दुर्वाससः शापनिवृत्तौ स्मृतिमता दुष्यन्तेन प्रतिगृहीता'—इति।

शिष्यः—यदाज्ञापयति भगवान्। (निष्क्रान्तः)

मारी—वत्स! त्वमपि स्वापत्यदारसहितः सख्युराखण्डलस्य रथमारुह्य ते राजधानीं प्रतिष्ठस्व।

ରାଜା— ମହାତ୍ମନ୍, ଏହାରି ଦ୍ୱାରା ହିଁ ମୋର ବଂଶ ପ୍ରତିଷ୍ଠିତ ହେବ ।

କଶ୍ୟପ— ଏ ପୁତ୍ର ଚକ୍ରବର୍ତ୍ତୀ ହେବ ବୋଲି ଜାଣ । ଦେଖ—

ଏହି ପୁତ୍ର ଅପ୍ରତିହତ ରଥରେ ଆରୋହଣ କରି, ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ସମୁଦ୍ର ଅତିକ୍ରମ କରି ସପ୍ତଦ୍ୱୀପା ପୃଥିବୀକୁ ପାଳନ କରିବ । ବର୍ତ୍ତମାନ ଏଠାରେ ପ୍ରାଣୀମାନଙ୍କୁ ବଳପୂର୍ବକ ଦମନ କରୁଥିବା ହେତୁ ଏହାର ନାମ ସର୍ବଦମନ । ସେତେବେଳେ ଜଗତର ଭରଣ-ପୋଷଣ କରିବ ବୋଲି ଏହାର ନାମ ହେବ ଭରତ । ୩୩

ରାଜା— ଆପଣ ଯାହାର ସଂସ୍କାର କରିଛନ୍ତି, ତା'ଠାରେ ଏ ସମସ୍ତ ସଫଳ ହେବାର ଆଶା ଆମର ଅଛି ।

ଅଦିତି— ଭଗବାନ୍, କନ୍ୟାର ଅଭିଳାଷ ପୂର୍ଣ୍ଣ ହୋଇଛି ବୋଲି କଣ୍ୱଙ୍କୁ ଏ ସମସ୍ତ ବୃତ୍ତାନ୍ତ ଜଣାଇ ଦିଅନ୍ତୁ । ଆଉ କନ୍ୟାବତ୍ସଳା ମେନକା ତ ଏଠାରେ ଆପଣଙ୍କୁ ସେବା କରି ରହିଛି ।

ଶକୁ— ( ସ୍ୱଗତ ) ମାନନୀୟା ଠିକ୍ ମୋ ମନକଥା କହିଛନ୍ତି ।

କଶ୍ୟପ— ତପଃପ୍ରଭାବରୁ ମହାତ୍ମା କଣ୍ୱଙ୍କୁ ସବୁ ଗୋଚର ।

ରାଜା— ତାହାହେଲେ ସେ ମୋ ଉପରେ ବେଶି କ୍ରୁଦ୍ଧ ହୋଇ ନ ଥିବେ ।

କଶ୍ୟପ-- ତଥାପି ଆମେ ଏ ଶୁଭ ସମ୍ବାଦ ତାଙ୍କୁ ଜଣାଇ ଦେବା । ଆହେ, କିଏ ଏଠାରେ ଅଛ ?

ଶିଷ୍ୟ-- ( ପ୍ରବେଶ କରି ) ଭଗବାନ୍, ମୁଁ ଅଛି ।

କଶ୍ୟପ-- ଗାଲବ, ବର୍ତ୍ତମାନ ତୁମେ ଆକାଶ ମାର୍ଗରେ ଯାଇ ମୋର କଥାନୁସାରେ ମହାତ୍ମା କଣ୍ୱଙ୍କୁ ଜଣାଇଦେବ ଯେ, ଦୁର୍ବାସାଙ୍କ ଶାପର ଅବସାନ ପରେ ଦୁଷ୍ୟନ୍ତଙ୍କର ସ୍ମୃତି ଉଦୟ ହୋଇଥିବାରୁ ସେ ପୁତ୍ର ସହିତ ଶକୁନ୍ତଳାଙ୍କୁ ଗ୍ରହଣ କରିଛନ୍ତି ।

ଶିଷ୍ୟ--- ଆପଣଙ୍କର ଯାହା ଆଜ୍ଞା । ( ଚାଲିଗଲା )

କଶ୍ୟପ--- ବତ୍ସ, ତୁମେ ମଧ୍ୟ ପୁତ୍ର ଏବଂ ପତ୍ନୀ ସହିତ ମିତ୍ର ଇନ୍ଦ୍ରଙ୍କର ରଥ ଆରୋହଣ କରି ରାଜଧାନୀକୁ ପ୍ରସ୍ଥାନ କର ।

राजा—यदाज्ञापयति भगवान् ।

मारी—संप्रति हि—

भवतु तव बिडौजाः प्राज्यवृष्टिः प्रजासु
त्वमपि विततयज्ञो वज्रिणं प्रीणयालम् ।
युगशतपरिवर्तैरेवमन्योन्यकृत्यैर्
भवतमुभयलोकानुग्रहश्लाघनीयौः ॥ ३४ ॥

राजा—भगवन् ! यथाशक्ति श्रेयसि प्रयतिष्ये ।

मारी—वत्स ! किं ते भूयः प्रियमुपकरोमि ?

राजा—अतः परमपि प्रियमस्ति ? यदि ह भगवान् प्रियं कर्तुमिच्छति तर्हि इदमस्तु—

( भरतवाक्यम् )

प्रवर्ततां प्रकृतिहिताय पार्थिवः
सरस्वती श्रुतिमहती महीयताम् ।
ममापि च क्षपयतु नीललोहितः
पुनर्भवं परिगतशक्तिरात्मभूः ॥ ३५ ॥

( निष्क्रान्ताः सर्वे )

॥॥ इति सप्तमोऽङ्कः ॥॥

॥ समाप्तमिदमभिज्ञानशाकुन्तलं नाम नाटकम् ॥

॥॥ श्री शुभमस्तु ॥॥



ରାଜା— ଯାହା ଆପଣଙ୍କର ଆଜ୍ଞା ।

କଶ୍ୟପ— ଆଉ ମଧ୍ୟ,

ଇନ୍ଦ୍ର ତୁମର ପ୍ରଜାମାନଙ୍କ ନିମନ୍ତେ ଯଥେଷ୍ଟ ଜଳବୃଷ୍ଟି କରନ୍ତୁ । ତୁମେ ମଧ୍ୟ ଯଜ୍ଞକର୍ମ ବିସ୍ତୃତ କରି ଇନ୍ଦ୍ରଙ୍କୁ ସନ୍ତୁଷ୍ଟ କର । ଏହିଭଳି ଉଭୟେ ଶତ ଶତ ଯୁଗ ପରସ୍ପରର କାର୍ଯ୍ୟ କରି ଉଭୟ ଜଗତର ହିତ ସାଧନ କର ଏବଂ ତଦ୍ଦ୍ୱାର ପ୍ରଶଂସାଭାଜନ ହୁଅ । ୩୪

ରାଜା— ଭଗବାନ୍, ଯଥାଶକ୍ତି ମଙ୍ଗଳକାର୍ଯ୍ୟରେ ବ୍ରତୀ ହେବି ।

କଶ୍ୟପ—ବତ୍ସ, ତୁମର ଆଉ ଅଧିକ କଅଣ ମଙ୍ଗଳ କରିବି ?

ରାଜା— ଏହାଠାରୁ ବଳି ଅଧିକ ମଙ୍ଗଳ ଆଉ କଅଣ ଅଛି ? ଯଦି ଆପଣ ପ୍ରସନ୍ନ ହୋଇ ମଙ୍ଗଳବିଧାନ କରିବାକୁ ଇଚ୍ଛା କରୁଛନ୍ତି, ତାହାହେଲେ ଏହା ହେଉ—

( ଭରତ ବାକ୍ୟ )

ସତତ ରଜନ ଦେଇଥାନ୍ତୁ ମନ
ପ୍ରଜାଜନ-ଉପକାରେ
ମହିମାମଣ୍ଡିତା ରହୁ ସଦା ବାଣୀ
ବେଦ ପ୍ରକଟିତ ଯାରେ ।
ଶକ୍ତି ସ୍ୱରୂପିଣୀ ଶିବାନୀ ସଙ୍ଗତେ
ସ୍ୱୟମ୍ଭବ ସଦାଶିବ
ମୋର ପୁନର୍ଜନ୍ମ ବନ୍ଧନ ଖଣ୍ଡନ
କରନ୍ତୁ ସେ ଦେବଦେବ । ୩୫

( ସମସ୍ତଙ୍କର ପ୍ରସ୍ଥାନ )

।। ସପ୍ତମ ଅଙ୍କ ସମାପ୍ତ ।।

।। ଅଭିଜ୍ଞାନ ଶାକୁନ୍ତଳ ନାଟକ ସମାପ୍ତ ।।

।। ଶ୍ରୀ ଶୁଭମସ୍ତୁ ।।